# ଉତ୍କଳ ପ୍ରସଙ୍ଗ

**The Utkal Prasanga**
**August 2011**

୬୮ ଭାଗ ୧ମ ସଂଖ୍ୟା ଶ୍ରାବଣ–ଭାଦ୍ର ଅଗଷ୍ଟ – ୨୦୧୧



**ପ୍ରତିଖଣ୍ଡ : ଟ.୫.୦୦**

---



ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ – ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର – ୭୫୧୦୦୧

ଇ–ମେଲ୍ : iprsec@rediffmail.com, iprsec.or@nic.in, ୱେବ୍‌ସାଇଟ୍ : www.orissagov.nic.in
ଫୋନ : ୦୬୭୪–୨୫୩୦୨୧୧

অগষ্ট ২০১১

# ସୂଚୀ


| | | | |
|---|---|---|---|
| • ଭାରତଛାଡ଼ ଆନ୍ଦୋଳନର ଶହୀଦ ବିପ୍ଳବୀ ଲକ୍ଷ୍ମଣ ନାୟକ | ଡ. ଅତୁଲ ଚନ୍ଦ୍ର ପ୍ରଧାନ | --- | ୧ |
| • ସ୍ୱାଧୀନତା ସଂଗ୍ରାମରେ ଭାରତୀୟ ବୀରା ରମଣୀମାନଙ୍କର ଅବଦାନ | ଜୟଶଙ୍କର ନାୟକ | --- | ୬ |
| • ଅସରନ୍ତି ଯାତ୍ରା (କବିତା) | ରବି ଶତପଥୀ | --- | ୧୨ |
| • ଏକବିଂଶ ଶତାବ୍ଦୀରେ ସ୍ୱାଧୀନତାର ସ୍ୱାଦ | ଡକ୍ଟର ତ୍ରିନାଥ ପଟ୍ଟନାୟକ | --- | ୧୩ |
| • ବିପ୍ଳବର ବିଗୁଲ ଓ ଅହିଂସାର ତରବାରୀ | କାଞ୍ଚନାରାୟଣ ମହାନ୍ତି | --- | ୧୫ |
| • ଅନନ୍ୟ ନାୟକ–ବକ୍ସି ଜଗବନ୍ଧୁ | ସୁପ୍ରଭା ମିଶ୍ର | --- | ୧୮ |
| • ଶହୀଦ ବାଜି ରାଉତ | ଶ୍ରୀନିବାସ ଆଚାର୍ଯ୍ୟ | --- | ୨୩ |
| • କଳା ଠାକୁର (କବିତା) | କମଳାକୃଷ୍ଣ ତ୍ରିପାଠୀ | --- | ୨୬ |
| • କର୍ମବୀର ଗୌରୀଶଙ୍କର – ଏକ ବିରଳ ବ୍ୟକ୍ତିତ୍ୱ | ଦୁଃଖିଶ୍ୟାମ ଦାସ | --- | ୨୭ |
| • ଭାରତର ସ୍ୱାଧୀନତା ସଂଗ୍ରାମକୁ ଶ୍ରୀ ଅରବିନ୍ଦ ଓ ଶ୍ରୀ ଅଭିରାମ ପରମହଂସଙ୍କ ଅବଦାନ | ତାରାକାନ୍ତ ମହାନ୍ତି | --- | ୩୨ |
| • ଭାରତୀୟ ମୁକ୍ତି ସଂଗ୍ରାମରେ ଗଣମାଧ୍ୟମର ଭୂମିକା | ମାନସ କୁମାର ମଲ୍ଲିକ | --- | ୩୫ |
| • ବାଲେଶ୍ୱର କଚେରୀ ହତାରେ ଲବଣ ସତ୍ୟାଗ୍ରହ | ଅଭୟ ବେହେରା | --- | ୩୯ |
| • ପୁଣ୍ୟମୟୀ ମୋ ଜନନୀ ଭାରତ (କବିତା) | ବ୍ରଜ ପାଇକରାୟ | --- | ୪୧ |
| • ଦାଣ୍ଡିମାଳରେ ଇଂରେଜ ବିରୋଧୀ ବିଦ୍ରୋହ | ଅଧ୍ୟାପକ ପବିତ୍ର ମୋହନ ବାରିକ | --- | ୪୨ |
| • କବି ମାନସରେ ସ୍ୱାଧୀନତା ସଂଗ୍ରାମର ଝଲକ | ଉମାଶଙ୍କର ପ୍ରସାଦ | --- | ୪୮ |
| • ବିସ୍ମୃତ ସ୍ୱାଧୀନତା ସଂଗ୍ରାମୀ ଡାଃ ଏକ୍ରାମ ରସୁଲ | ହୁସେନ ରବିଗାନ୍ଧୀ | --- | ୫୧ |
| • ନୟାଗଡ଼ ପୃଷ୍ଠଭୂମିରେ ଭଞ୍ଜଙ୍କ ସମୟସୀମା | ଗୀତା ଦେବୀ | --- | ୫୪ |
| • ତ୍ରିରଙ୍ଗା (କବିତା) | ଦିଲ୍ଲୀପ କୁମାର ବେହୁରା | --- | ୫୭ |
| • ସ୍ୱାଧୀନତାର ଅଧ୍ୟାୟ | ଲକ୍ଷ୍ମୀନାରାୟଣ ପାଠୀ | --- | ୫୮ |
| • ଅଗଷ୍ଟ କ୍ରାନ୍ତି | କୃଷ୍ଣ ଚନ୍ଦ୍ର ସୁଆର | --- | ୬୦ |
| • ସ୍ୱାଧୀନତା ସଂଗ୍ରାମର କିଛି ସ୍ମୃତି – କିଛି ଅନୁଭୂତି | କିଶୋର ଚନ୍ଦ୍ର ମହାପାତ୍ର | --- | ୬୨ |
| • ପାଇକ ବିଦ୍ରୋହର ଶେଷ ଝଲକ | ଡକ୍ଟର ହେମନ୍ତ କୁମାର ଛୋଟରାୟ | --- | ୬୪ |
| • ଦେଶର ମୁକ୍ତି ଆନ୍ଦୋଳନରେ ଓଡ଼ିଶାର ଭୂମିକା | ଅଧ୍ୟାପକ ବିକ୍ରମ କେଶରୀ ବର୍ମା | --- | ୬୭ |
| • ଶ୍ରୀଜଗନ୍ନାଥଙ୍କ ରଥର ଐତିହାସିକ ପୃଷ୍ଠଭୂମି | ଡାକ୍ତର ଦୀନବନ୍ଧୁ ମହାରଣା | --- | ୬୯ |
| • ଅଗଷ୍ଟ ପନ୍ଦର ଓ ଭାରତର ସ୍ୱାଧୀନତା | ହୃଦାନନ୍ଦ ବେହେରା | --- | ୭୧ |

# ଜାତୀୟ ସଙ୍ଗୀତ



ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

– ରବୀନ୍ଦ୍ରନାଥ ଠାକୁର



# ବନ୍ଦେ ମାତରମ୍

ସୁଜଳାମ୍, ସୁଫଳାମ୍, ମଳୟଜ ଶୀତଳାମ୍

ଶସ୍ୟ ଶ୍ୟାମଳାମ୍ ମାତରମ୍ ।

ଶୁଭ୍ରଜ୍ୟୋସ୍ନାଂ ପୁଲକିତ ଯାମିନୀମ୍

ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍

ସୁହାସିନୀମ୍ ସୁମଧୁର ଭାଷିଣୀମ୍

ସୁଖଦାଂ ବରଦାଂ ମାତରମ୍ ।।

ବନ୍ଦେ ମାତରମ୍ ।।।

x x x x

– ବଙ୍କିମଚନ୍ଦ୍ର ଚାଟାର୍ଜୀ



ଭାରତଛାଡ଼ ଆନ୍ଦୋଳନ ସମୟରେ ଗାନ୍ଧିଜୀ



ବ୍ରିଟିଶ ଶକ୍ତି ବିରୋଧରେ ଭାରତୀୟ ସିପାହୀମାନେ ଲଢ଼େଇ କରୁଥିବା ଦୃଶ୍ୟର ଏକ ଚିତ୍ର (୧୮୫୭)



**ଭିନ୍ନ ଏକ ଉନ୍ମାଦନା :** ସ୍ୱାଧୀନତା ଆନ୍ଦୋଳନ କାଳରେ ଆଜାଦ୍ ହିନ୍ଦ୍ ଫୌଜର ଏକ ପ୍ୟାରେଡରେ
ନେତାଜୀ ସୁଭାଷ ଚନ୍ଦ୍ର ବୋଷ



**ସେହି ଶୁଭ ମୁହୂର୍ତ୍ତ :** ୧୯୪୭ ଅଗଷ୍ଟ ୧୫ ତାରିଖ ପ୍ରତ୍ୟୁଷରେ ଦିଲ୍ଲୀ ଲାଲକିଲାର ଏକ ଦୃଶ୍ୟ

# ଲେଖକ/ଲେଖିକାମାନଙ୍କୁ ନିବେଦନ

ଉତ୍କଳ ପ୍ରସଙ୍ଗ ପ୍ରତ୍ୟେକ ମାସରେ ପ୍ରକାଶିତ ହୁଏ । ଏହାର ପ୍ରତ୍ୟେକଟି ସଂଖ୍ୟା ଗୋଟିଏ ଗୋଟିଏ ସ୍ୱତନ୍ତ୍ର ସଂଖ୍ୟା । ଯଥା– ଅଗଷ୍ଟ ମାସରେ ସ୍ୱାଧୀନତା ଦିବସ ସଂଖ୍ୟା, ଅକ୍ଟୋବର ମାସରେ ଦଶହରା ବା ଶକ୍ତି ଉପାସନା ସଂଖ୍ୟା, ନଭେମ୍ବର ମାସରେ ଶିଳ୍ପ ଓ ବାଣିଜ୍ୟ ସଂଖ୍ୟା, ଡିସେମ୍ବର ମାସରେ ପର୍ଯ୍ୟଟନ ଓ ସାଂସ୍କୃତିକ ଐତିହ୍ୟ ସଂଖ୍ୟା, ଜାନୁଆରୀ ମାସରେ ସାଧାରଣତନ୍ତ୍ର ସଂଖ୍ୟା, ଏପ୍ରିଲ ମାସରେ ଉତ୍କଳ ଦିବସ ସଂଖ୍ୟା, ମେ' ମାସରେ ଶ୍ରମିକ ଦିବସ ସଂଖ୍ୟା, ଜୁନ୍ ମାସରେ ରଜ ଓ ଓଡ଼ିଆ ପର୍ବପର୍ବାଣି ସଂଖ୍ୟା, ଜୁଲାଇ ମାସରେ ଶ୍ରୀଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ରଥଯାତ୍ରା ଓ ଜଗନ୍ନାଥ ସଂସ୍କୃତି ସଂଖ୍ୟା ନିୟମିତ ପ୍ରକାଶ ପାଏ ।

ଏଣୁ ଲେଖକ/ଲେଖିକାମାନଙ୍କୁ ଅନୁରୋଧ ଯେ, ଏ ସମ୍ପର୍କିତ ବୌଦ୍ଧିକ ପ୍ରବନ୍ଧମାନ ପଠାଇଲେ ପ୍ରକାଶନ ପାଇଁ ବିଚାର କରାଯିବ । ପ୍ରତ୍ୟେକଟି ଲେଖା ପାଇଁ ସରକାରଙ୍କ ତରଫରୁ ପାରିଶ୍ରମିକ ଦିଆଯିବାର ବ୍ୟବସ୍ଥା ଅଛି ।

ସମ୍ପାଦକ



# ସ୍ୱାଧୀନତା ଦିବସ -୨୦୧୧ ଅବସରରେ

## HÝÉæÀÿ þÜÿæþæœÿ¿ Àÿæf¿¨æÁÿ

## ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ

## ବାର୍ତ୍ତା

ପ୍ରିୟ ଭାଇ ଓ ଭଉଣୀମାନେ,

ଆମ ଦେଶର ସ୍ୱାଧୀନତା ଦିବସ ପାଳନର ଶୁଭ ଅବସରରେ, ମୁଁ ଆପଣମାନଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି।

୧୯୪୭ ମସିହା ଅଗଷ୍ଟ ୧୫ତାରିଖର ଏହି ପବିତ୍ର ଦିବସରେ ଆମ ଦେଶବାସୀଙ୍କର ବିଦେଶୀ ଶାସନ କବଳରୁ ମୁକ୍ତି ପାଇଁ ଥିବା ବହୁ ଦିନର ସ୍ୱପ୍ନ ସାକାର ହୋଇଥିଲା । ଆମେ ସେହି ମହାନ ସ୍ୱାଧୀନତା ସଂଗ୍ରାମୀ ଏବଂ ଦେଶପ୍ରେମୀମାନଙ୍କ ବଳିଦାନର ସ୍ମୃତିଚାରଣ କରି ସେମାନଙ୍କ ପ୍ରତି ଗଭୀର କୃତଜ୍ଞତା ଜ୍ଞାପନ କରୁଛୁ ।

ଅହିଂସା ଓ ଶାନ୍ତିର ପୂଜାରୀ ମହାତ୍ମା ଗାନ୍ଧୀଙ୍କର ପଥକୁ ଅନୁସରଣ କରି ଆମେ ହାସଲ କରିଥିବା ସ୍ୱାଧୀନତା ଆଜି ବିଶ୍ୱବାସୀଙ୍କ ଦ୍ୱାରା ଆଦୃତ ହୋଇଛି । ବିଶ୍ୱର ସାମ୍ପ୍ରତିକ ପରିସ୍ଥିତି ପରିପ୍ରେକ୍ଷୀରେ ବ୍ରିଟିଶ୍ ଶକ୍ତିକୁ ଦୋହଲାଇ ଦେଇଥିବା ଭାରତର ଏହି ଅହିଂସା ଆନ୍ଦୋଳନ ଅଧୁନା ସମଗ୍ର ବିଶ୍ୱର ଧ୍ୟାନ ଆକର୍ଷଣ କରିଛି । ଆମର ବୀର ଶହୀଦ ଯେଉଁମାନଙ୍କର ଜନ୍ମଭୂମି ପାଇଁ ବହୁମୂଲ୍ୟ ଅବଦାନ ଏବଂ ମହାନ୍ ତ୍ୟାଗ ରହିଛି, ଆଜିର ଏହି ଶୁଭ ଅବସରରେ ସେମାନଙ୍କୁ ଆମେ ଶ୍ରଦ୍ଧାର ସହ ସ୍ମରଣ କରୁଛୁ

ଜାତୀୟ ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଭୂମିକା ବାସ୍ତବିକ ଉଲ୍ଲେଖନୀୟ। ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ଚକ୍ରା ବିଷୋୟୀ, ବୀର ସୁରେନ୍ଦ୍ର ସାଏ, ଚାଖି ଖୁଣ୍ଟିଆ, ବିର୍ସା ମୁଣ୍ଡା, ଲକ୍ଷ୍ମଣ ନାଏକ, ବାଜି ରାଉତ, ରଘୁ-ଦିବାକର, ଉତ୍କଳମଣି ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ମିଶ୍ର, ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ରମାଦେବୀ, ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ ଏବଂ ଆହୁରି ଅନେକ ମହାନ ବୀରପୁତ୍ରଙ୍କର ଅଦମ୍ୟ ସାହସକୁ ଆମେ ଆଜି ସଶ୍ରଦ୍ଧ ସ୍ମରଣ କରୁଛୁ । ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଅନୁପ୍ରାଣିତ ହୋଇ ଓଡ଼ିଶାର ବହୁ ବୀର ତଥା ଜାତୀୟତାବାଦୀ ସାହସିକତାର ସହ ଜାତୀୟ ସଂଗ୍ରାମରେ ଯୋଗ ଦେଇଥିଲେ । ଆମେ ସେହି ସାହସୀ ଦେଶପ୍ରେମୀମାନଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ । ଆମ ଦେଶର ସୁରକ୍ଷା ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଥିବା ଆମର ବୀର ସୈନିକ ତଥା ପ୍ରତିରକ୍ଷା କର୍ମଚାରୀମାନଙ୍କୁ ଆମେ ଏହି ଅବସରରେ ସମ୍ମାନ ଜଣାଉଛୁ ।

ସ୍ୱାଧୀନତା ପ୍ରାପ୍ତିଠାରୁ ଓଡ଼ିଶାକୁ ଏକ ସମୃଦ୍ଧ ରାଜ୍ୟରେ ପରିଣତ କରିବା ପାଇଁ ଆମେ ନିରବଚ୍ଛିନ୍ନ ଉଦ୍ୟମ ଜାରି ରଖିଛୁ । ମୋ' ସରକାର ରାଜ୍ୟର ସର୍ବାଙ୍ଗୀନ ଉନ୍ନତି କଳ୍ପେ ନିରନ୍ତର ଉଦ୍ୟମ କରି ଆସୁଛନ୍ତି । ଦାରିଦ୍ର୍ୟ ହ୍ରାସ, ନିଯୁକ୍ତି ସୁଯୋଗ ବୃଦ୍ଧି ଏବଂ ଜନସାଧାରଣଙ୍କ ଜୀବନଧାରଣ ମାନରେ ଉନ୍ନତି ଆଣିବା ଲକ୍ଷ୍ୟରେ ବିକାଶମୂଳକ ପଦକ୍ଷେପମାନ ଜାରି ରହିଛି।

କୃଷି ହେଉଛି ଆମ ଅର୍ଥନୀତିର ମୁଖ୍ୟ ଆଧାର। ଆମ ରାଜ୍ୟର ପ୍ରାୟ ୭୦ ପ୍ରତିଶତ ଲୋକ କୃଷି ଉପରେ ନିର୍ଭରଶୀଳ। ତେଣୁ କୃଷିକ୍ଷେତ୍ର ଏବଂ କୃଷକର କଲ୍ୟାଣ ନିମନ୍ତେ ସରକାର ବିଭିନ୍ନ କାର୍ଯ୍ୟକ୍ରମ ରୂପାୟନ କରିବା ସହ ଏହା ଉପରେ ସର୍ବାଧିକ ଗୁରୁତ୍ୱାରୋପ

କରୁଛନ୍ତି । ଏହା ଆମ ପାଇଁ ଆନନ୍ଦର ବିଷୟ ଯେ, ଆମ ରାଜ୍ୟ ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ସଫଳତା ପାଇଁ ଜାତୀୟ ସ୍ତରରେ ପୁରସ୍କୃତ ହୋଇଛି ।

ଓଡ଼ିଶାର ଅର୍ଥନୈତିକ ବିକାଶ ପାଇଁ ଜଳସେଚନର ପ୍ରମୁଖ ଭୂମିକା ରହିଛି । ଜଳସେଚନ ସାମର୍ଥ୍ୟକୁ ବୃଦ୍ଧି କରିବା ପାଇଁ ରାଜ୍ୟ ସରକାର ଏକ ପ୍ରଗତିଶୀଳ ପଞ୍ଚବାର୍ଷିକ ଯୋଜନା ପ୍ରଣୟନ କରିଛନ୍ତି, ଯଦ୍ୱାରା ୨୦୧୪ ମସିହା ସୁଦ୍ଧା ଆଉ ଅଧିକ ୫.୬୧ ଲକ୍ଷ ହେକ୍ଟର ଚାଷ ଜମିକୁ ଜଳସେଚିତ କରାଯାଇପାରିବ ।

ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଗରିବ ଜନସାଧାରଣଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ରାଜ୍ୟ ସରକାର ପ୍ରତିଶ୍ରୁତିବଦ୍ଧ। ତଦନୁଯାୟୀ, ଦାରିଦ୍ର୍ୟ ହ୍ରାସ ନିମନ୍ତେ ଅନେକ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମମାନ ଆରମ୍ଭ କରାଯାଇଛି। ଏହା ମଧ୍ୟରେ ଗୋପବନ୍ଧୁ ଗ୍ରାମୀଣ ଯୋଜନା, ମଧୁବାବୁ ପେନ୍‌ସନ୍ ଯୋଜନା, ଅନ୍ନପୂର୍ଣ୍ଣା ଯୋଜନା, ମୋ' କୁଡିଆ ଯୋଜନା, କିଲୋ ୨ଟଙ୍କା ଦରରେ ଚାଉଳ ଯୋଗାଣ ବ୍ୟବସ୍ଥା ଏବଂ ଆହୁରି ଅନେକ ଜନହିତକାରୀ ଯୋଜନା ଅନ୍ତର୍ଭୁକ୍ତ ।

ରାଜ୍ୟର ଜନସାଧାରଣଙ୍କ ଜୀବନଧାରଣ ମାନରେ ଉନ୍ନତି ଆଣିବା ଏବଂ ଜୀବିକା ସହାୟତା ଯୋଗାଇ ଦେବା ଲକ୍ଷ୍ୟରେ ସରକାର ନିଜସ୍ୱ ସମ୍ବଳରୁ ବିଜୁ କେବିକେ ଯୋଜନା, ବିଜୁ କନ୍ଧମାଳ ଓ ଗଜପତି ଯୋଜନା, ବିଜୁ କୃଷକ ବିକାଶ ଯୋଜନା, ଜଳନିଧି ଯୋଜନା, ବିଜୁ ଗ୍ରାମ ଜ୍ୟୋତି ଯୋଜନା, ବିଜୁ ସହରାଞ୍ଚଳ ବିଦ୍ୟୁତିକରଣ ଯୋଜନା ଭଳି ବିଭିନ୍ନ କଲ୍ୟାଣମୂଳକ ଯୋଜନା କାର୍ଯ୍ୟକାରୀ କରିଛନ୍ତି।

ଆମ ରାଜ୍ୟର ଗ୍ରାମାଞ୍ଚଳ ତଥା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ବସବାସ କରୁଥିବା ଲୋକମାନଙ୍କୁ ଗୁଣାତ୍ମକ ମାନର ଏବଂ ଉନ୍ନତ ସ୍ୱାସ୍ଥ୍ୟସେବା ଯୋଗାଇଦେବା ଲକ୍ଷ୍ୟରେ ଜନନୀ ସୁରକ୍ଷା ଯୋଜନା, ଆଶା, ଜନନୀ ଏକ୍ସପ୍ରେସ୍, ଭ୍ରାମ୍ୟମାଣ ସ୍ୱାସ୍ଥ୍ୟସେବା ୟୁନିଟ୍, ସ୍ୱାସ୍ଥ୍ୟକାର୍ଡ ପରି ଯୋଜନା କାର୍ଯ୍ୟକାରୀ କରାଯାଇଛି ।

ଗ୍ରାମ୍ୟ ସମୃଦ୍ଧି ପାଇଁ ଗ୍ରାମ୍ୟ ସଂଯୋଗୀକରଣର ମୁଖ୍ୟ ଭୂମିକା ରହିଛି ଏଣୁ ରାଜ୍ୟ ସରକାର ଗ୍ରାମ୍ୟ ସଡ଼କ ଭିତ୍ତିଭୂମିର ସୁଦୃଢ଼ୀକରଣ, ଗ୍ରାମାଞ୍ଚଳରେ ସରକାରୀ କୋଠାବାଡି ନିର୍ମାଣ, ଗ୍ରାମ୍ୟ ଜଳଯୋଗାଣ ଏବଂ ପରିମଳ ବ୍ୟବସ୍ଥାକୁ ସର୍ବାଧିକ ଗୁରୁତ୍ୱ ଦେଉଛନ୍ତି ।

ରାଜ୍ୟ ସରକାର ମହିଳା, ବାଳିକା ଏବଂ ଛୋଟ ପିଲାମାନଙ୍କ ନିମନ୍ତେ ବିଭିନ୍ନ କଲ୍ୟାଣକାରୀ ତଥା ରୋଜଗାର ସୃଷ୍ଟିକାରୀ କାର୍ଯ୍ୟକ୍ରମମାନ କାର୍ଯ୍ୟକାରୀ କରୁଛନ୍ତି । ଏହିସବୁ କାର୍ଯ୍ୟକ୍ରମ ମଧ୍ୟରେ ମିଶନ ଶକ୍ତି ଯୋଜନା, ସମନ୍ୱିତ ଶିଶୁ ବିକାଶ କାର୍ଯ୍ୟକ୍ରମ, କିଶୋରୀ ଶକ୍ତି ଯୋଜନା, ବାଳିକା ସମୃଦ୍ଧି ଯୋଜନା ଇତ୍ୟାଦି ଅନ୍ତର୍ଭୁକ୍ତ। ଏତଦ୍‌ବ୍ୟତୀତ, ଅନୁସୂଚିତ ଜାତି ଓ ଜନଜାତି ବର୍ଗଙ୍କର ଉନ୍ନତି ନିମନ୍ତେ ସରକାର ଅଧିକ ପ୍ରାଧାନ୍ୟ ଦେଉଛନ୍ତି । ସେମାନଙ୍କୁ ଗୁଣାତ୍ମକ ମାନର ଶିକ୍ଷା ଯୋଗାଇ ଦେବା ନିମନ୍ତେ ହଷ୍ଟେଲ ସୁବିଧା, ମେଧାବୃତ୍ତି ଏବଂ ଷ୍ଟାଇପେଣ୍ଡ୍ ପ୍ରଦାନ ସୁବିଧାକୁ ସୁନିଶ୍ଚିତ କରାଯାଇଛି । ଜନଜାତି ପରିବାରଗୁଡିକର ଆୟବୃଦ୍ଧି ନିମନ୍ତେ ଓଡ଼ିଶା ଜନଜାତି ସଶକ୍ତିକରଣ ଓ ଜୀବିକା ନିର୍ବାହ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି ।

ସାମଗ୍ରିକ ଭାବେ, ପ୍ରତ୍ୟେକ କ୍ଷେତ୍ରରେ ଅଭୂତପୂର୍ବ ବିକାଶ ଆଣିବା ସହ ଓଡ଼ିଶାକୁ ଦେଶର ସବୁଠାରୁ ଅଧିକ ବିକଶିତ ରାଜ୍ୟରେ ପରିଣତ କରିବା ପାଇଁ ରାଜ୍ୟ ସରକାର ପ୍ରତିଶ୍ରୁତିବଦ୍ଧ ।

ଆସନ୍ତୁ, ଆଜିର ଏହି ପବିତ୍ର ଦିବସରେ, ଆମର ଲକ୍ଷ୍ୟ ହାସଲ ପାଇଁ ଦୃଢ ସଂକଳ୍ପ ଓ ପ୍ରତିଶ୍ରୁତିବଦ୍ଧ ହେବା ନିମନ୍ତେ ଶପଥ ନେବା।

ଜୟହିନ୍ଦ୍ ।



# ସ୍ୱାଧୀନତା ଦିବସ -୨୦୧୧ ଅବସରରେ

## HÝÉæÀÿ þæÿ¿ ¯ÿÀÿ þQ¿þ¦ê

## ଶ୍ରୀ ନବୀନ ପଟ୍ଟନାୟକଙ୍କ

## ବାର୍ତ୍ତା

ପ୍ରିୟ ଭାଇ ଓ ଭଉଣୀମାନେ,

ସ୍ୱାଧୀନତା ଦିବସ ପାଳନର ଶୁଭ ଅବସରରେ ମୁଁ ଆପଣମାନଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି । ଆଜି ଏହି ପବିତ୍ର ଦିବସରେ ଜାତିର ପିତା ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ପଣ୍ଡିତ ଜବାହରଲାଲ ନେହେରୁ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ବୀର ସୁରେନ୍ଦ୍ର ସାଏ, ମା ରମା ଦେବୀ, ସହିଦ୍ ଲକ୍ଷ୍ମଣ ନାୟକ, ଡଃ ହରେକୃଷ୍ଣ ମହତାବ ଏବଂ ବିଜୁ ପଟ୍ଟନାୟକଙ୍କ ପରି ମହାନ୍ ଦେଶଭକ୍ତ ଓ ସଂଗ୍ରାମୀମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଥିବା ଲକ୍ଷ ଲକ୍ଷ ସଂଗ୍ରାମୀ ଏବଂ ଦେଶର ସୁରକ୍ଷା ପାଇଁ ସହିଦ୍ ହୋଇଥିବା ବୀର ଜବାନମାନଙ୍କ ପ୍ରତି ମଧ ମୋର ସମ୍ମାନ ଜଣାଉଛି ।

ସ୍ୱାଧୀନତା ପରେ ଆମ ଦେଶ ବିଭିନ୍ନ କ୍ଷେତ୍ରରେ ସଫଳତା ଲାଭ କରିଛି । ବିଶ୍ୱ ଦରବାରରେ ଭାରତ ଏକ ସ୍ୱତନ୍ତ୍ର ସ୍ଥାନ ହାସଲ କରିଛି । ଆମ ରାଜ୍ୟ ଓଡ଼ିଶା ମଧ ଆଜି ବିକାଶ କ୍ଷେତ୍ରରେ ଏକ ନୂଆ ଯୁଗ ଆରମ୍ଭ କରିବାରେ ସଫଳ ହୋଇଛି । ବିଭିନ୍ନ କ୍ଷେତ୍ରରେ ଓଡ଼ିଶାକୁ ଆଗେଇ ନେଇ ଏକ ସମୃଦ୍ଧ ରାଜ୍ୟରେ ପରିଣତ କରିବା ପାଇଁ ଆମର ଉଦ୍ୟମ ଜାରି ରହିଛି । ଆମର ଅର୍ଥନୈତିକ ଅଭିବୃଦ୍ଧି ହାର ଶତକଡା ୯ଭାଗରୁ ଅଧିକ ରହିଛି । ରାଜ୍ୟରେ ମୁଣ୍ଡପିଛା ଆୟ ବଢିଛି । ଯୋଜନା ଆକାର ବଢିଛି । ଗରିବୀ କମିଛି । କୃଷି କ୍ଷେତ୍ରରେ ମଧ ଆମର ଅଭିବୃଦ୍ଧି ହାର ୭ପ୍ରତିଶତରେ ପହଞ୍ଚିଛି । ଅର୍ଥନୀତିର ଏହି ସୁଫଳକୁ ରାଜ୍ୟର ବିକାଶ ତଥା ଗରିବ ଲୋକଙ୍କ କଲ୍ୟାଣ କାର୍ଯ୍ୟରେ ଲଗାଇବା ପାଇଁ ଆମେ ବିଭିନ୍ନ ଯୋଜନା ହାତକୁ ନେଇଛୁ । ଆଜି ରାଜ୍ୟ ସରକାର ତାଙ୍କ ନିଜ ପାଣ୍ଠିରୁ ଗରିବ ଲୋକଙ୍କ କଲ୍ୟାଣ ପାଇଁ ଅନେକ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରୁଛନ୍ତି । କେଜି ୨ଟଙ୍କାରେ ଚାଉଳ, ମଧୁବାବୁ ପେନସନ୍ ଯୋଜନା, ମୋ' କୁଡିଆ କାର୍ଯ୍ୟକ୍ରମ ଲୋକଙ୍କ ମନରେ ଭରସା ସୃଷ୍ଟି କରିପାରିଛି । ନାରୀ ଶିକ୍ଷାର ପ୍ରସାର ପାଇଁ ଦଶମ ଶ୍ରେଣୀରେ ପଢୁଥିବା ସବୁ ଝିଅଙ୍କୁ ମାଗଣାରେ ସାଇକେଲ ଦେବା ପାଇଁ ଆମେ ସ୍ଥିର କରିଛୁ । ସେହିପରି ଅନୁସୂଚିତ ଅଞ୍ଚଳରେ ଝିଅଙ୍କ ସହିତ ଦଶମ ଶ୍ରେଣୀରେ ପଢୁଥିବା ସବୁ ଆଦିବାସୀ ଓ ଦଳିତ ପୁଅଙ୍କୁ ମଧ ସାଇକେଲ ଯୋଗାଇ ଦିଆଯିବ ।

ସାମାଜିକ କ୍ଷେତ୍ରରେ ମଧ ଆମ ରାଜ୍ୟ ବହୁତ ଭଲ କାମ କରିଛି । ଶିଶୁ ମୃତ୍ୟୁହାର ଗତ ଦଶବର୍ଷରେ ୯୬ରୁ ୬୫କୁ କମିଛି । ମାତୃମୃତ୍ୟୁ କ୍ଷେତ୍ରରେ ମଧ ଏହା ୩୫୮ରୁ ୨୫୮କୁ କମିଛି । ଅପୁଷ୍ଟି ରୋକିବା କ୍ଷେତ୍ରରେ ମଧ ଆମେ ସାରା ଦେଶରେ ଆଗରେ ରହିଛୁ । ଗତ ଦଶବର୍ଷରେ ଏହା ୧୦ପଏଣ୍ଟ କମିଛି । ଏହା ସାରା ଦେଶରେ ଏକ ଉଲ୍ଲେଖଯୋଗ୍ୟ ହ୍ରାସ । ଗତ ଦଶବର୍ଷ ଭିତରେ ଆମର ସାକ୍ଷରତା ହାର ବଢିଛି । ମହିଳା ସାକ୍ଷରତା ହାର ମଧ ବଢିଛି । ନାମଲେଖା ହାରରେ ବୃଦ୍ଧି ଘଟିଛି । ସାମାଜିକ କ୍ଷେତ୍ରରେ ଆମର ଏହି ଉନ୍ନତି ଆଗାମୀ ଦିନରେ ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦେଉଛି ।

ଗାଁରେ ରହୁଥିବା ଗର୍ଭବତୀ ମହିଳା ଓ ସେମାନଙ୍କ ଶିଶୁର ଯତ୍ନ ପାଇଁ ରାଜ୍ୟ ସରକାର ନିଜ ପାଣ୍ଠିରୁ ମମତା କାର୍ଯ୍ୟକ୍ରମ ଆରମ୍ଭ କରିବାକୁ ଯାଉଛନ୍ତି । ଆଗାମୀ ସେପ୍ଟେମ୍ବରରୁ ଏହି କାର୍ଯ୍ୟକ୍ରମ ସାରା ରାଜ୍ୟର ଗ୍ରାମାଞ୍ଚଳରେ କାର୍ଯ୍ୟକାରୀ କରାଯିବ । ଏହି ଯୋଜନାରେ ଗର୍ଭବତୀ ମହିଳାମାନଙ୍କୁ ଚାରୋଟି ଫେଜ୍‌ରେ ପାଞ୍ଚ ହଜାର ଟଙ୍କା ଦିଆଯିବ । ଶିଶୁ ମୃତ୍ୟୁହାର ଓ ମାତୃ ମୃତ୍ୟୁହାର ରୋକିବାରେ ଏହା ବିଶେଷ ସାହାଯ୍ୟ କରିବ ।

କୃଷି ଓ କୃଷକର ବିକାଶ, ଶିକ୍ଷା ପ୍ରସାର, ଭିତ୍ତିଭୂମିର ଉନ୍ନତି, ପଛୁଆ ଅଞ୍ଚଳର ବିକାଶ, ଗରିବ ଲୋକ, ଆଦିବାସୀ ଓ ଦଳିତମାନଙ୍କର କଲ୍ୟାଣ, ଗ୍ରାମାଞ୍ଚଳର ଉନ୍ନତି ଓ ମହିଳାମାନଙ୍କର ବିକାଶ ଉପରେ ମୋ' ସରକାର ସବୁବେଳେ ଗୁରୁତ୍ୱ ଦେଇଆସିଛି । ଗାଁ ହେଉଛି ଆମର

ବିକାଶର ମୁଖ୍ୟ କେନ୍ଦ୍ର । ତେଣୁ ଗାଁରେ କଂକ୍ରିଟ ରାସ୍ତା, ଭଲ ପିଇବା ପାଣି ଓ ବିଜୁଳି ସହିତ ଲୋକଙ୍କ ଜୀବନଧାରଣ ମାନରେ ଉନ୍ନତି ପାଇଁ ଆମେ ଅନେକ ଯୋଜନା କାର୍ଯ୍ୟକାରୀ କରୁଛୁ । ଚଳିତ ଅକ୍ଟୋବର ସୁଦ୍ଧା ଗାଁମାନଙ୍କରେ କଂକ୍ରିଟ ରାସ୍ତା ପାଇଁ ରାଜ୍ୟ ସରକାର ଏକ ହଜାର କୋଟି ଟଙ୍କା ବିନିଯୋଗ କରିବା ପାଇଁ ସ୍ଥିର କରିଛନ୍ତି ।

କୃଷିର ବିକାଶ ସହିତ ଗାଁର ବିକାଶ ଯୋଡି ହୋଇରହିଛି । କୃଷି କ୍ଷେତ୍ରରେ ହିଁ ଆମର ଅଧିକ ଲୋକ କାମ କରନ୍ତି । ତେଣୁ କୃଷିକୁ ଲାଭଜନକ କରିବା ପାଇଁ ଏବଂ ଏହି କ୍ଷେତ୍ରରେ ବିଶେଷ କରି ଖାଦ୍ୟ ପ୍ରକ୍ରିୟାକରଣ ଓ ସଂରକ୍ଷଣ ଆଦି କ୍ଷେତ୍ରରେ ଅଧିକ ପୁଞ୍ଜି ବିନିଯୋଗ ପାଇଁ ଆମେ ପଦକ୍ଷେପ ନେଇଛୁ । ସେହିପରି ଜଳସେଚନ ସୁବିଧାର ପ୍ରସାର ଉପରେ ଆମେ ସ୍ୱତନ୍ତ୍ର ଗୁରୁତ୍ୱ ଦେଉଛୁ । ଅଧିକରୁ ଅଧିକ ଜମିକୁ ଜଳସେଚନ ସୁବିଧା ଯୋଗାଇବା ପାଇଁ ଆମେ ନୂଆ ନୂଆ କାର୍ଯ୍ୟକ୍ରମ ହାତକୁ ନେଇଛୁ । ନିକଟରେ ଆମ ରାଜ୍ୟ କୃଷି ଉତ୍ପାଦନ ବୃଦ୍ଧି କ୍ଷେତ୍ରରେ ସଫଳତା ପାଇଁ ଜାତୀୟ ସ୍ତରରେ ସମ୍ମାନିତ ହୋଇଛି । ସବୁବେଳେ ପ୍ରାକୃତିକ ବିପର୍ଯ୍ୟୟର ଶିକାର ହେଉଥିବା ଓଡ଼ିଶାର ଚାଷ ଓ ଚାଷୀ ଭାଇମାନଙ୍କ ପାଇଁ ଏହା ଏକ ବଡ ସଫଳତା ।

ସ୍ୱାଧୀନତା ଦିବସ ଅବସରରେ ଏଥିପାଇଁ ମୁଁ ଆମର ଚାଷୀ ଭାଇ ଓ ଭଉଣୀମାନଙ୍କୁ ମୋର ବିଶେଷ ଅଭିନନ୍ଦନ ଜଣାଉଛି । ଆଶା କରୁଛି, ଆଗାମୀ ଦିନରେ ଏହା ଜାରି ରହିବ । କୃଷି ଓ କୃଷକମାନଙ୍କର କଲ୍ୟାଣ ପାଇଁ ରାଜ୍ୟ ସରକାରଙ୍କର ସବୁ ପ୍ରକାର ସହଯୋଗ ଜାରି ରହିବ । କୃଷି କ୍ଷେତ୍ରରେ ରାଜ୍ୟକୁ ସ୍ୱାବଲମ୍ବୀ କରିବା ଓ ଚାଷୀର ରୋଜଗାର ବଢାଇବା ଆମର କୃଷି ବିକାଶ କାର୍ଯ୍ୟକ୍ରମର ମୁଖ୍ୟ ଲକ୍ଷ୍ୟ । ତେଣୁ ଆମର ଛୋଟ ଛୋଟ ଚାଷୀଭାଇମାନଙ୍କ ପାଖରେ ବିକାଶର ସୁଫଳ ପହଞ୍ଚି ପାରିଲେ ହିଁ ଆମର ଲକ୍ଷ୍ୟ ପୂରଣ ହୋଇପାରିବ ।

ମହିଳାମାନଙ୍କ ବିକାଶ ମୋ ସରକାରର ଏକ ଗୁରୁତ୍ୱପୂର୍ଣ୍ଣ ଲକ୍ଷ୍ୟ । ମିଶନ ଶକ୍ତି କାର୍ଯ୍ୟକ୍ରମ ଆଜି ଆମ ରାଜ୍ୟର ୫୦ ଲକ୍ଷ ମହିଳାଙ୍କୁ ଏକାଠି କରିପାରିଛି ଓ ସେମାନଙ୍କର ପ୍ରତିଭା ଓ ଦକ୍ଷତାର ବିକାଶ ପାଇଁ ସୁଯୋଗ ସୃଷ୍ଟି କରିପାରିଛି । ତେଣୁ ଅଧିକରୁ ଅଧିକ ମହିଳା ଯେଭଳି ବିକାଶ କାର୍ଯ୍ୟକ୍ରମରେ ସାମିଲ ହେବେ, ସେଥିପାଇଁ ପଞ୍ଚାୟତିରାଜ ଅନୁଷ୍ଠାନମାନଙ୍କରେ ମହିଳାମାନଙ୍କର ସଂରକ୍ଷଣ ୫୦ ପ୍ରତିଶତକୁ ବଢାଯାଇଛି ।

ମାନବ ସମ୍ବଳର ଠିକ୍ ବିନିଯୋଗ ଉପରେ ଗୋଟିଏ ଜାତିର ଭବିଷ୍ୟତ ନିର୍ଭର କରେ । ଆଜି ଶିକ୍ଷା କ୍ଷେତ୍ରରେ ବିଶେଷକରି ବୈଷୟିକ ଓ ବୃତ୍ତିଗତ ଶିକ୍ଷା କ୍ଷେତ୍ରରେ ଆମ ରାଜ୍ୟରେ ଅନେକ ସୁଯୋଗ ସୃଷ୍ଟି ହୋଇଛି । ନିଯୁକ୍ତି ମିଶନ ଜରିଆରେ ପିଲାମାନଙ୍କର ଚାକିରି ପାଇବାର ସମ୍ଭାବନା ବଢାଇବା ସହିତ ଆତ୍ମନିଯୁକ୍ତି ପାଇଁ ସୁଯୋଗ ମଧ୍ୟ ସୃଷ୍ଟି କରାଯାଉଛି ।

ଶିଳ୍ପ କ୍ଷେତ୍ରରେ ଓଡ଼ିଶା ଆଜି ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ମୁଁ ସବୁବେଳେ ଶାନ୍ତିପୂର୍ଣ୍ଣ ଶିଳ୍ପାୟନ ଉପରେ ଜୋର ଦେଇଆସିଛି । ଲୋକଙ୍କୁ ସାଥିରେ ନେଇ କାମ କରିବାରେ ଆମେ ବିଶ୍ୱାସ କରୁ । ଆମର ପ୍ରାକୃତିକ ସମ୍ବଳର ମୂଲ୍ୟ ଅଭିବୃଦ୍ଧି କରି ଆମର ରାଜ୍ୟବାସୀଙ୍କ ପାଇଁ ରୋଜଗାରର ନୂଆ ନୂଆ ସୁଯୋଗ ସୃଷ୍ଟି କରିବା ଓ ରାଜ୍ୟକୁ ସମୃଦ୍ଧ କରିବା ଆମର ଲକ୍ଷ୍ୟ । ତେଣୁ ବୃହତ ଶିଳ୍ପ ସହିତ ଆନୁଷଙ୍ଗିକ ଶିଳ୍ପଗୁଡିକର ବିକାଶ ପାଇଁ ମଧ୍ୟ ରାଜ୍ୟ ସରକାର ଗୁରୁତ୍ୱ ଦେଇ କାର୍ଯ୍ୟ କରୁଛନ୍ତି । ଶିଳ୍ପ ବିକାଶ ସହିତ ରାସ୍ତା, ବନ୍ଦର ଆଦି ଭିତ୍ତିଭୂମିର ବିକାଶ ପାଇଁ ମଧ୍ୟ ସ୍ୱତନ୍ତ୍ର ଧ୍ୟାନ ଦିଆଯାଉଛି ।

ଆଦିବାସୀମାନଙ୍କୁ ଶୋଷଣରୁ ରକ୍ଷା କରିବା ସହିତ ସେମାନଙ୍କ ଅଧିକାରର ସୁରକ୍ଷା ଓ ସେମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ଆମର ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ । ଆଦିବାସୀ ପିଲାମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ପାଇଁ ନୂଆ ନୂଆ ହଷ୍ଟେଲ ତିଆରି କରାଯାଉଛି । ସେମାନଙ୍କୁ ଇଂଜିନିୟରିଂ ଓ ଡାକ୍ତରୀ ପଢିବା ସୁବିଧା ଦେବାପାଇଁ ସ୍ୱତନ୍ତ୍ର ତାଲିମର ବ୍ୟବସ୍ଥା କରାଯାଇଛି । ବିକାଶର ମୁଖ୍ୟ ଧାରାକୁ ଆଦିବାସୀ ଭାଇଭଉଣୀମାନଙ୍କୁ ଆଣିବା ପାଇଁ ଶିକ୍ଷା ହେଉଛି ସବୁଠାରୁ ଶକ୍ତିଶାଳୀ ମାଧ୍ୟମ । ଜଙ୍ଗଲ ଜମିର ପଟ୍ଟା ଦେବା କ୍ଷେତ୍ରରେ ଓଡ଼ିଶା ସାରା ଦେଶରେ ପ୍ରଥମ ହୋଇଥିବା ଖୁସିର କଥା । ଆଦିବାସୀ ଭାଇଭଉଣୀମାନଙ୍କର ବିକାଶ ଓ କଲ୍ୟାଣ ପାଇଁ ଆମର ଉଦ୍ୟମକୁ ଆହୁରି ଶକ୍ତିଶାଳୀ କରାଯିବ ।

ପଛୁଆ ଅଞ୍ଚଳର ବିକାଶ ଉପରେ ମୁଁ ସବୁବେଳେ ସ୍ୱତନ୍ତ୍ର ଗୁରୁତ୍ୱ ଦେଇଆସିଛି । କେ.ବି.କେ ଅଞ୍ଚଳର ବିକାଶ ପାଇଁ ରାଜ୍ୟ ସରକାର ନିଜ ପାଣ୍ଠିରୁ ବିଜୁ କେବିକେ ଯୋଜନା କରିଥିବାବେଳେ କନ୍ଧମାଳ ଓ ଗଜପତି ପାଇଁ ମଧ୍ୟ ବିଜୁ କନ୍ଧମାଳ ଓ ଗଜପତି ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ପଶ୍ଚିମ ଓଡ଼ିଶା ବିକାଶ ପରିଷଦ ପାଇଁ ଅଧିକ ଅର୍ଥର ମଧ୍ୟ ବରାଦ କରାଯାଇଛି ।

ଆମେ ଶାନ୍ତିରେ ବିଶ୍ୱାସ କରୁ । ବିକାଶ ପାଇଁ ହିଂସା ନୁହେଁ, ଶାନ୍ତି ହିଁ ଜରୁରୀ । ତେଣୁ ହିଂସାର ମାର୍ଗ ଛାଡି ଶାନ୍ତି ଓ ବିକାଶର ମୁଖ୍ୟ ଧାରାରେ ସାମିଲ ହେବା ପାଇଁ ମୁଁ ବାମପନ୍ଥୀ ଉଗ୍ରବାଦୀମାନଙ୍କୁ ଆହ୍ୱାନ ଜଣାଉଛି ।

ଅର୍ଥନୈତିକ ସ୍ୱାଧୀନତା ବିନା ରାଜନୈତିକ ସ୍ୱାଧୀନତାର କିଛି ମୂଲ୍ୟ ନାହିଁ । ଗରିବ ଲୋକଙ୍କର ଆର୍ଥିକ ସଶକ୍ତିକରଣ ଦ୍ୱାରା ହିଁ ଆମେ ସ୍ୱାଧୀନତାର ଲକ୍ଷ୍ୟ ହାସଲ କରିପାରିବା । ତେଣୁ ଆସନ୍ତୁ, ଆମେ ସମସ୍ତେ ଏକାଠି ହୋଇ ଗରିବି, ବେକାରୀ, ଅନ୍ୟାୟ ଓ ହିଂସା ବିରୋଧରେ ସଂଗ୍ରାମ ଜାରି କରିବା ଏବଂ ଗାନ୍ଧିଜୀଙ୍କ ସ୍ୱପ୍ନର ଭାରତ ଗଠନ ପାଇଁ କାମ କରିଚାଲିବା ।

ଜୟହିନ୍ଦ୍ ।



# ସ୍ୱାଧୀନତା ଦିବସ -୨୦୧୧ ଅବସରରେ

HÝÉæÀÿ þææÿ¿ ¯ÿÀÿ Àÿæ fÓ H ¯ÿ¨¨¾¿ß ¨Épæÿ F¯ÿó

Ó`ÿæÿæ H {àÿæLÿ Óó¨Lÿ þ¦ê

## ଶ୍ରୀ ସୂର୍ଯ୍ୟ ନାରାୟଣ ପାତ୍ରଙ୍କ

## ବାର୍ତ୍ତା

ଭାରତର ସ୍ୱାଧୀନତା ଦିବସ ପାଳନ ଅବସରରେ ଆପଣମାନଙ୍କୁ ଅଭିନନ୍ଦନ ଜଣାଇ ମୁଁ ନିଜକୁ ଗୌରବାନ୍ୱିତ ମନେକରୁଛି । ଦୀର୍ଘ ଦୁଇ ଶତାବ୍ଦୀ ଧରି ବ୍ରିଟିଶ ସାମ୍ରାଜ୍ୟବାଦ କବଳରୁ ଦେଶକୁ ମୁକ୍ତ କରିବାରେ ଅଗଣିତ ଦେଶପ୍ରେମୀଙ୍କର ଅପୂର୍ବ ତ୍ୟାଗକୁ ଆଜି ଆମେ ଏହି ପବିତ୍ର ଅବସରରେ ସ୍ମରଣ କରିବା । ସତ୍ୟ, ଅହିଂସା ଏବଂ ପରସ୍ପରକୁ ଭଲ ପାଇବାକୁ ପାଥେୟକରି ମହାତ୍ମାଗାନ୍ଧୀ ଅଗଣିତ ଦେଶପ୍ରେମୀଙ୍କର ନେତୃତ୍ୱ ନେଇଥିଲେ । ଆଜି ଆମେ ସେହି ଶାନ୍ତିର ପୂଜାରୀଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଉଛୁ, ଯାହାଙ୍କର ଶାନ୍ତି ଏବଂ ଅହିଂସା ନୀତି ସମଗ୍ର ବିଶ୍ୱବାସୀଙ୍କଦ୍ୱାରା ଆଦୃତ ।

ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଓଡିଶାର ଜନସାଧାରଣଙ୍କର ଉଲ୍ଲେଖନୀୟ ଅବଦାନ ରହିଛି । ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ବୀର ସୁରେନ୍ଦ୍ର ସାଏ, କୃଷ୍ଣଚନ୍ଦ୍ର ଗଜପତି, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ, ଉତ୍କଳଗୌରବ ମଧୁସୂଦନ ଦାସ, ନବକୃଷ୍ଣ ଚୌଧୁରୀ,ବିଜୁ ପଟ୍ଟନାୟକ ଏବଂ ଆହୁରି ଅନେକ ବୀର ସନ୍ତାନଙ୍କର ସାହସିକ ସଂଗ୍ରାମର ଫଳସ୍ୱରୂପ ଆମେ ଆମର ସ୍ୱାଧୀନତା ହାସଲ କରିଛେ । ବହୁ ନେତୃସ୍ଥାନୀୟ ବ୍ୟକ୍ତିଙ୍କର ଦୂରଦୃଷ୍ଟି ବିଶେଷ ଭାବେ ହରେକୃଷ୍ଣ ମହତାବ ଏବଂ ବିଜୁ ପଟ୍ଟନାୟକ ବିକଶିତ ଓଡିଶାର ଚିତ୍ରକୁ ବହୁ ଆଗରୁ କଳ୍ପନା କରିପାରିଥିଲେ । ଦଶନ୍ଧି ପରେ ଦଶନ୍ଧି ଧରି ଓଡିଶାର ପ୍ରଗତି ଓ ସମୃଦ୍ଧି ଘଟିଛି ଏବଂ ଓଡିଶାର ଜନସାଧାରଣ ବିଭିନ୍ନ କ୍ଷେତ୍ରରେ ରାଜ୍ୟ ପାଇଁ ଗୌରବ ହାସଲ କରିପାରିଛନ୍ତି । ତଥାପି କୃଷି, ଶିଳ୍ପ, ଶିକ୍ଷା, ସ୍ୱାସ୍ଥ୍ୟ, ଭିତ୍ତିଭୂମି, ଭୂ-ସଂସ୍କାର, ଶକ୍ତି ଏବଂ ପ୍ରାଣୀ ସଂପଦ ପରି ପ୍ରମୁଖ କ୍ଷେତ୍ରରେ ଆହୁରି ବହୁତ କିଛି କରିବାକୁ ଅଛି ।

ଯାହାହେଉ, ବିପୁଳ ଜନସମର୍ଥନ ହାସଲ କରି ଆମର ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କ୍ଷମତାକୁ ଆସିବା ପରେ ସମସ୍ତ କ୍ଷେତ୍ରରେ ପ୍ରଗତିର ଧାରା ଅଧିକ ତ୍ୱରାନ୍ୱିତ ହୋଇପାରିଛି । ଓଡିଶାବାସୀ ଚାହୁଁଥିବା ଉତ୍ତରଦାୟିତ୍ୱତା, ସ୍ୱଚ୍ଛତା ଏବଂ ସ୍ୱଚ୍ଛ ପ୍ରଶାସନକୁ ପ୍ରାଧାନ୍ୟ ଦିଆଯିବା ଫଳରେ ଆଜି ପ୍ରତ୍ୟେକ କ୍ଷେତ୍ରରେ ପରିବର୍ତ୍ତନ ଆସିଛି । ମୋଟାମୋଟି ଭାବେ ଓଡିଶାବାସୀଙ୍କର ଅଭୁତପୂର୍ବ ଉନ୍ନତି ଏବଂ ସଫଳତା ଲାଭ ହୋଇଛି । ଦୁର୍ନୀତି ଫଳପ୍ରଦ ଭାବେ ରୋକାଯାଇଛି । ସାଧାରଣ ଜନତାଙ୍କ ପାଇଁ ସୂଚନା ଅଧିକାର ଅଧିନିୟମ ପ୍ରଚଳନ କରାଯାଇ ପ୍ରଶାସନରେ ସ୍ୱଚ୍ଛତା ଅଣାଯାଇପାରିଛି ।

ଆଜିର ଏହି ପବିତ୍ର ଅବସରରେ ରାଜ୍ୟର ଉନ୍ନତି ଏବଂ ସମୃଦ୍ଧି ପାଇଁ କାର୍ଯ୍ୟ କରିବା ନିମନ୍ତେ ଆସନ୍ତୁ ଶପଥ ନେବା ।

ଜୟହିନ୍ଦ୍ ।

**ସଂପାଦକୀୟ**

# ସ୍ୱାଧୀନତାର ଅନୁଚିନ୍ତା

ଏଇ ଅଗଷ୍ଟ ୧୫– ଆମ ସ୍ୱାଧୀନତାର ୬୪ ବର୍ଷ ପୂର୍ତ୍ତିର ପ୍ରତୀକ – ଦୀର୍ଘ ବର୍ଷର ପରାଧୀନତାରୁ ମୁକୁଳି ଏକ ସ୍ୱାଧୀନ ରାଷ୍ଟ୍ରଭାବେ ପୃଥିବୀର ସାର୍ବଭୌମ ରାଷ୍ଟ୍ରସମୂହମାନଙ୍କ ମଧରେ ଆସନ ଗ୍ରହଣ କରିଥିବା ପ୍ରାଚୀନତମ ସଭ୍ୟତା ଓ ସଂସ୍କୃତିର ଭୂଖଣ୍ଡ ଭାରତବର୍ଷ, ତୁମର, ମୋର, ଆମ ସମସ୍ତଙ୍କର ପ୍ରିୟ ଭାରତବର୍ଷ ।

ଯାଉଁ ଯାଉଁ ମଧ ପାଜି ସାମ୍ରାଜ୍ୟବାଦୀମାନେ ଭାଇ–ଭାଇଙ୍କୁ ଲଢାଇ ଦେଲେ, ଗୋଟିଏ ଅଖଣ୍ଡ ଭୂଭାଗକୁ ଦ୍ୱିଖଣ୍ଡିତ କରି ଦେଇ– ଭାଇ–ଭାଇର ରକ୍ତରେ ଏହି ପୂତ ମାଟିକୁ ରଂଗେଇ ଦେଲେ । ଘୋର ଅଶାନ୍ତି, ହତ୍ୟା, ଲୁଣ୍ଠନ, ଧର୍ଷଣ ଓ ପାଗଳାମି ଭିତରୁ ୬୪ବର୍ଷ ତଳେ ଜନ୍ମ ନେଇଥିବା ମାଟି ତଥାପି ନିଜର ଗୌରବ ଓ ଅସ୍ମିତା ରକ୍ଷା କରିବାକୁ ଆପ୍ରାଣ ଉଦ୍ୟମ କରିଥିଲା, ଏବେ ବି କରି ଚାଲିଛି ନିରନ୍ତର ଭାବରେ

୬୪ ବର୍ଷ ତଳେ ଯେଉଁ ପାଷାଣ୍ଡ ବଣିକମାନେ ଯେଉଁମାନେ କି ଆସୁରିକ ଶକ୍ତିର ମୂଳାଧାର ଥିଲେ, ଏ ମାଟିରୁ ବିଦାୟ ଘେନିଥିଲେ। ଯେଉଁ ଶାସକ ଓ ପ୍ରଶାସକମାନେ ଦୈତ୍ୟରାଜର ପ୍ରତିନିଧି ଥିଲେ, ସେମାନଙ୍କ ଶାସନର ବିଲୟ ଘଟିଥିଲା। କିନ୍ତୁ ଖୁବ୍ ଅଳ୍ପ ଦିନରେ ଜଣା ପଡିଗଲା ଯେ, ଯେଉଁ ଅସୁର ଓ ଦୈତ୍ୟମାନେ ଭାରତଛାଡି ଚାଲି ଯାଇଥିଲେ – ପ୍ରକୃତ ପକ୍ଷରେ ସେମାନଙ୍କର ଶରୀର ଏ ମାଟିରୁ ବିଦାୟ ଘେନିଥିଲା। କିନ୍ତୁ ସେମାନଙ୍କର ଆତ୍ମା ଓ ଚିନ୍ତା ଭାରତଛାଡି ନଥିଲା । କଳାଲୋକଙ୍କ ଶରୀରରେ ସେହି ଭୁତଗୁଡିକ ପ୍ରବେଶ କରିଗଲେ । ଏହି କାୟା ପ୍ରବେଶ ହେତୁ ଆମ ନିଜ ଶାସକ ଓ ପ୍ରଶାସକମାନେ ସେହି ପାଷାଣ୍ଡ ଆସୁରିକ ବୃତ୍ତି ଓ ପ୍ରବୃତ୍ତିରୁ ମୁକ୍ତ ହୋଇ ପାରିଲେ ନାହିଁ।

ଫଳରେ ଭାରତର ସାଧାରଣ ମଣିଷ ନିକଟରେ ଏଇ ସ୍ୱାଧୀନତା ତଥାପି ଅବୁଝା ଓ ଅପହଞ୍ଚ ହୋଇ ରହିଗଲା। ତା'ପରେ ୧୯୯୧ରେ ଆମରି କଳା ମଣିଷଟି , ଯିଏ ସାମ୍ରାଜ୍ୟବାଦୀମାନଙ୍କ ଘରେ ଗୋଲାମଗିରି କରୁଥିଲା, ସିଏ ସେଇ ବିଦେଶୀଙ୍କ ଇଙ୍ଗିତରେ ଭାରତର ଅର୍ଥମନ୍ତ୍ରୀ ହୋଇ ଆସିଲା ଏବଂ ୧୯୯୨ରୁ ଆରମ୍ଭ ହେଲା ଅର୍ଥନୀତିର ଉଦାରୀକରଣର ଯୁଗ ବା ଅନ୍ୟ ଅର୍ଥରେ ଆମ ଅର୍ଥନୀତିକୁ ବାରାଙ୍ଗନା ସଜାଇ ବିଦେଶୀ ସେଠ ଓ ସାହୁକାରମାନଙ୍କ ମହଲକୁ ମନୋରଞ୍ଜନାର୍ଥେ ଜୋର୍ ଜବରଦସ୍ତ ଭାବେ ପଠାଗଲା। ଫଳରେ ଆମ ଅର୍ଥନୀତି ପାପଗର୍ଭ ଧାରଣ କରି କେବଳ ବର୍ଣ୍ଣଶଙ୍କର ବ୍ୟବସ୍ଥାକୁ ଦୀର୍ଘ ୧୯ବର୍ଷ ହେଲା ପ୍ରସବ କରି ଚାଲିଛି। ଶିଳ୍ପ, ସ୍ୱାସ୍ଥ୍ୟ, ଗମନାଗମନ, ଶିକ୍ଷା ଓ ମାନବ ସମ୍ବଳ ସମେତ ସମସ୍ତ ବିଭବକୁ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କର ସର୍ଦ୍ଦାର– ବିଶ୍ୱବଜାରର କଂସ ମାର୍କିନ ଯୁକ୍ତରାଷ୍ଟ୍ର ଆମେରିକା ଇଙ୍ଗିତରେ ପରିଚାଳିତ କରାଗଲା – ଯାହା ଏବେ ପ୍ରଚଣ୍ଡ ବେଗରେ ଦୌଡିବାକୁ ଆରମ୍ଭ କରିଛି । ବ୍ୟାଙ୍କ, ବୀମା, ବିଶ୍ୱବିଦ୍ୟାଳୟ, ଡାକ୍ତରଖାନା ଇତ୍ୟାଦି– କେହି ବି ଏଇ ଘରୋଇକରଣ ରୂପୀ ଶୁମ୍ଭ ନିଶୁମ୍ଭଙ୍କ କବଳରୁ ତ୍ରାହି ପାଇ ପାରୁନାହାନ୍ତି।

ସୁତରାଂ ଭାରତରେ ଛଟେଇ ସାଙ୍ଗକୁ ବେକାରୀ ବଢିଛି, ନିଯୁକ୍ତି ଉପରେ କଟକଣା ବୃଦ୍ଧି ପାଇଛି। ତତ୍‌ସହିତ ବଢିଛି ଲାଭର ଲୋଭ । ଏଣୁ ରାସ୍ତାକଡର ପନିପରିବା ବିକ୍ରେତା କି ପାମ୍ପଡ–ଆଚାର ତିଆରି କରି ଘର ଚଳାଉଥିବା ଦୁଃଖିନୀ ମହିଳାର ପେଟରେ ଶକ୍ତ ଲାତ୍ ମରାଗଲା ଓ ଦେଶୀ–ବିଦେଶୀ କମ୍ପାନୀମାନଙ୍କୁ ପନିପରିବା, ଦୁଧ, ଘିଅଠୁଁ ଆରମ୍ଭ କରି ଆଚାର–ପାମ୍ପଡ ପର୍ଯ୍ୟନ୍ତ ଶାଗ–ମୁଗଠାରୁ ନେଇ ଆୟୁର୍ବେଦ ଔଷଧ ଯାଏଁ ଏଇ ଏକଚାଟିଆ ବହୁଦେଶୀୟ କମ୍ପାନୀମାନେ କାରବାର କରିବାକୁ ଅନୁମତି ପାଇ ଆରାମ୍‌ରେ ଦେଶୀୟ ଲୋକଙ୍କ ବେକରେ ଛୁରୀ ଚଳାଉଛନ୍ତି।

ଅର୍ଥନୀତି ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି, ଏସୀୟ ବ୍ୟାଙ୍କ ଆଦି କିଛି ସଂସ୍ଥାଙ୍କ ନିର୍ଦ୍ଦେଶରେ ପରିଚାଳିତ। ଏହାକୁ ପରିଚାଳନା କରିବା ପାଇଁ ଓ ବିଦେଶୀ ବଣିକମାନଙ୍କୁ ଦେଶୀୟମାନଙ୍କ ଛାତିରେ ଚଢ଼ି ସୁବିଧା ସୁଯୋଗ ହାସଲ କରିବା ପାଇଁ ସମସ୍ତ ପ୍ରକାର ସୁବିଧା ତଥା ଅବସର ଦେବା ପାଇଁ ମନମୋହନ ସିଂହ, ଚିଦାମ୍ବରମ୍ ବା ପ୍ରଣବ ମୁଖାର୍ଜିଙ୍କ ପରି ଶିଖଣ୍ଡୀମାନଙ୍କର ଅଭାବ ନାହିଁ।

ମଝିରେ ଥୋକାଏ ଲୋକ ବାଜପାୟୀଙ୍କୁ ମୁଖା ରୂପେ ବ୍ୟବହାର କରି କ୍ଷମତାକୁ ପାଞ୍ଚବର୍ଷ ପାଇଁ ଆସି ସେଇ ସାମ୍ରାଜ୍ୟବାଦୀ ଅର୍ଥନୀତିର ଗୋଲାମଗିରିରେ ଆଉ ଦୁଇ ପାଦ ଆଗେଇ ଯାଇ ସାମ୍ରାଜ୍ୟବାଦୀ- ପୁଞ୍ଜିବାଦୀ-ଫାସିଷ୍ଟବାଦୀ ଶକ୍ତି (ମାର୍କିନ୍- ଇଂଲଣ୍ଡ-ଫ୍ରାନ୍ସ-ଇସ୍ରାଏଲ୍)ଙ୍କର ଜୋତା ସଫାକାରୀ ବୋଲି ପ୍ରମାଣିତ କରି ଦେଲେ । ଇସ୍ରାଏଲ୍‌କୁ ଗୁରୁକରି ଭାରତରେ ମଧ୍ୟ ସଂଖ୍ୟାଲଘୁ ଲୋକଙ୍କୁ ହତ୍ୟା କରିବାର ନୂଆ ନୂଆ ଉପାୟମାନ ଶିକ୍ଷା ଲାଭକଲେ। ପୁନରାୟ ଫେରିଲେ ଶ୍ୱେତାଙ୍ଗନାଙ୍କ ନେତୃତ୍ୱରେ ଯୁକ୍ତରାଷ୍ଟ୍ର ଆମେରିକା ଓ ୟୁରୋପୀୟ ସଂଘର ପଦଲେହନକାରୀ ସେଇ ମନମୋହନ-ପ୍ରଣବ-ଚିଦାମ୍ବରମ୍ । ଆରମ୍ଭ ହେଲା ଜନଗଣଙ୍କ ଉପରେ ଆକ୍ରମଣ । ଦେଶୀ-ବିଦେଶୀ ଲାଭଖୋର ସାଧବମାନଙ୍କ ମନୋରଞ୍ଜନ ପାଇଁ ଭାରତର ଜଳ, ଜମି, ଜଙ୍ଗଲ, ଖଣି, ସାଗର ସବୁ ମୁକୁଳା, ସବୁ ଖୋଲା।

ସାଧାରଣ ମଣିଷଙ୍କୁ ପୁଣି ସେଇ ଜାତି, ସମ୍ପ୍ରଦାୟ ଅନୁସାରେ ବାଣ୍ଟି ଦେବା ପାଇଁ ବିଦେଶୀ ଶାସକମାନଙ୍କ ପାଠର ପୁନରାବୃତ୍ତି ୯୯୨-୯୩ର ବମ୍ବେ, ୨୦୦୨ର ଗୁଜରାଟ, ୨୦୦୮ର କନ୍ଧମାଳ ଇତ୍ୟାଦି ଇତ୍ୟାଦି । ବାହାର ଦେଶର ଆତଙ୍କବାଦୀଙ୍କୁ ଧରିବା ଆଳରେ ଅନେକ ନିରୀହ ସ୍ୱଦେଶୀଙ୍କୁ ଫାଶୀ ଖୁଣ୍ଟରେ ଚଢାଇ ଆମ ଶାସକ ବାହାଦୂରୀ ନେବାରେ ଓସ୍ତାଦ୍ । କିନ୍ତୁ ବମ୍ବେ ଦଙ୍ଗାର ବିଚାର ବିଭାଗୀୟ ତଦନ୍ତ ପାଇଁ ବସାଯାଇଥିବା ବିଚାରପତି ଶ୍ରୀକୃଷ୍ଣ କମିଶନ୍‌ର ରିପୋର୍ଟ, ଗୋଧ୍ରା ଦଙ୍ଗା ପାଇଁ ରେଳବିଭାଗ ଦ୍ୱାରା କରାଯାଇ ଥିବା ବିଚାରପତିବାନାର୍ଜୀ କମିଶନଙ୍କ ରିପୋର୍ଟର ଦଶା କ'ଣ ହେଲା, କେହି ଜାଣନ୍ତି ନାହିଁ । ଏଠି ସର୍ବେ ଏକାକାର ଗୁଜରାଟର ମୋଦି ଓ ମହାରାଷ୍ଟ୍ରର କଂଗ୍ରେସ- ଉଭୟ ସରକାର ଭାଇ ଭାଇ।

ବନବାସୀମାନଙ୍କ ଜୀବନ, ଜୀବିକା ସହ ଖେଳ ଖେଳି, ସେମାନଙ୍କ ଭିଟାମାଟିକୁ ବଣିକମାନଙ୍କ ହାତରେ ଟେକି ଦେବାରେ ବି ବିଜେପି-କଂଗ୍ରେସ ଭାଇ ଭାଇ । ଦୁର୍ନୀତିକୁ ସୁନୀତିରେ ପରିଣତ କରିବା ପାଇଁ କାଲମାଡି, ଶୀଲା ଦୀକ୍ଷିତଙ୍କଠାରୁ ୟେଦୁରପ୍ପା ଯାଏଁ ସଭିଁଏ ଭାଇ-ଭଉଣୀ ତେଣୁ 'ତୁ ତ ମୁତୁରି ମୁଁ ତ ମୁତୁରି ହେଁସ କାହିଁ ପାଇଁ ଧୋଇବା' ନୀତିରେ ପୂରା ଭାରତବର୍ଷ ମସ୍‌ଗୁଲ୍ ।

ଏଇ ବାତାବରଣରେ ଅଗଷ୍ଟ ୧୫ର ଆଗମନ । କିପରି ସ୍ୱାଗତ କରିବା ସ୍ୱାଧୀନତାର ଏଇ ଦିବସକୁ? କବି ମନମୋହନ ମିଶ୍ରଙ୍କ ଭାଷାରେ 'ସିପାହୀରେ ଲଢେଇ ତୋ ହୋଇନି ପୂରା...' ।

ସତରେ ଯୁଦ୍ଧ ସରି ନାହିଁ, ଅରି ଫେରି ନାହିଁ । ଆସନ୍ତୁ ସମସ୍ତେ ମୁଷ୍ଟିବଦ୍ଧ ହୋଇ ସଂକଳ୍ପ କରିବା ଯେ, ପ୍ରକୃତ ସ୍ୱାଧୀନତା ପାଇଁ ପୁନରାୟ ଆମକୁ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ଲଢିବାକୁ ପଡିବ। ଏହି ସଂଗ୍ରାମର ଅୟମାରମ୍ଭ ବୋଧ ହୁଏ ଓଡ଼ିଶାରୁ ଆରମ୍ଭ ହେବା ନିୟତିର ଇଙ୍ଗିତ। ତେଣୁ ଓଡ଼ିଶାରେ ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଏହି ନୂଆ ଲଢେଇର ପ୍ରତୀକ, ଯିଏକି କେନ୍ଦ୍ରର ଓଡ଼ିଶା ବିରୋଧୀମନୋଭାବକୁ ପ୍ରତିହତ କରିବା ପାଇଁ ଅଙ୍ଗୀକାର ଘେନି କାର୍ଯ୍ୟରତ । ଆମେ ଓଡ଼ିଶାବାସୀ ନିଜ ଆତ୍ମସମ୍ମାନ ଓ ଅର୍ଥନୀତିର ସୁରକ୍ଷା ପାଇଁ ଆଜିର ଏହି ପୂତ ଦିବସରେ ସଂକଳ୍ପ ଘେନିଲେ ଆମ ଜାତିପ୍ରାଣତା ଉଜ୍ଜୀବିତ ହୋଇ ଅନିର୍ବାଣ ଦୀପଶିଖା ପରି ଚିର ଜାଜ୍ୱଲ୍ୟମାନ ହୋଇ ରହିଥିବ ।

ବନ୍ଦେ ଉତ୍କଳ ଜନନୀ ।

# ଭାରତଛାଡ଼ ଆନ୍ଦୋଳନର ଶହୀଦ ବିପ୍ଳବୀ ଲକ୍ଷ୍ମଣ ନାୟକ

ଡ. ଅତୁଲ ଚନ୍ଦ୍ର ପ୍ରଧାନ

ଭାରତବର୍ଷର ଅନ୍ୟସ୍ଥାନ ପରି ଓଡ଼ିଶାରେ ଭାରତଛାଡ଼ ଆନ୍ଦୋଳନ ସମୟରେ ପୋଲିସ୍ ଗୁଳି ଚାଳନାରେ କେତେକ ଲୋକ ପ୍ରାଣ ହରାଇଲେ । କିନ୍ତୁ ଏହି ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିବା ଏବଂ ନେତୃତ୍ୱ ନେଇଥିବା ହେତୁ ଇଂରେଜ ସରକାରଙ୍କ ବିଚାର ବିଭାଗ ଦ୍ୱାରା ଅନ୍ୟାୟରେ ହତ୍ୟା ଅପରାଧରେ ଦୋଷୀ ସାବ୍ୟସ୍ତ ହୋଇ ଫାଶି ଖୁଣ୍ଟରେ ଝୁଲିଥିଲେ କୋରାପୁଟର ଆଦିବାସୀ ସମ୍ପ୍ରଦାୟର ଲକ୍ଷ୍ମଣ ନାୟକ ।



ଭାରତଛାଡ଼ ଆନ୍ଦୋଳନ ଏକ ସ୍ୱତଃସ୍ଫୂର୍ତ୍ତ ଗଣ ବିପ୍ଳବ । ୧୯୪୨ ମସିହା ଅଗଷ୍ଟମାସ ୮ ତାରିଖରେ ବମ୍ବେରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ମହାତ୍ମା ଗାନ୍ଧୀ ଏହି ଆନ୍ଦୋଳନ ପାଇଁ ଡାକରା ଦେଇଥିଲେ । କିନ୍ତୁ ଏହି ଆନ୍ଦୋଳନ ପାଇଁ ଡାକରା ଦେବା ପରେ ଇଂରେଜ ସରକାର ସଙ୍ଗେ ସଙ୍ଗେ ଗାନ୍ଧିଜୀ ଏବଂ କଂଗ୍ରେସର ଜାତୀୟ ଓ ପ୍ରାଦେଶିକ ସ୍ତରର ନେତାମାନଙ୍କୁ ଗିରଫ କରି ନେଇଥିଲେ । ଏଭଳି ସ୍ଥିତିରେ ବିଭିନ୍ନ ଅଞ୍ଚଳରେ ସ୍ଥାନୀୟ ନେତାମାନଙ୍କ ନେତୃତ୍ୱରେ ଲୋକେ ସ୍ୱତଃ ବିଦ୍ରୋହ କରିଥିଲେ ଏବଂ ବିଭିନ୍ନ ପ୍ରକାର ଭଙ୍ଗାରୁଜା କାର୍ଯ୍ୟରେ ଲିପ୍ତ ହୋଇଥିଲେ । କୋରାପୁଟର ମାଲକାନଗିରି (ଯାହା ବର୍ତ୍ତମାନ ଏକ ଜିଲ୍ଲାର ମାନ୍ୟତା ପାଇଛି)ରେ ସ୍ୱଳ୍ପ ଶିକ୍ଷିତ କଂଗ୍ରେସ କର୍ମୀ ଓ ନେତା ଲକ୍ଷ୍ମଣନାୟକ ତାଙ୍କ ଅଞ୍ଚଳ (ବୈପାରୀଗୁଡ଼ା ଥାନା)ର ଲୋକମାନଙ୍କୁ ସଙ୍ଗଠିତ କରି ବିଭିନ୍ନ ପ୍ରକାର ବିପ୍ଳବାତ୍ମକ କାର୍ଯ୍ୟ କଳାପର ଆୟୋଜନ କରିଥିଲେ ।

ସ୍ୱାଧୀନତା ପୂର୍ବରୁ ବଣପାହାଡ଼ ଘେରା ମାଲକାନଗିରି ଜୟପୁର ଜମିଦାରୀର ଏକ ଅଂଶ ଥିଲା । ଏଠାରେ ବିଭିନ୍ନ ପ୍ରକାର ଆଦିବାସୀ ଓ ଅଣଆଦିବାସୀ ସମ୍ପ୍ରଦାୟର ଲୋକେ ବାସ କରୁଥିଲେ । ମୁଖ୍ୟ ଆଦିବାସୀ ସମ୍ପ୍ରଦାୟଗୁଡ଼ିକ ହେଲେ କୋୟା, ବଣ୍ଡା, ଗଦବା, ପରଜା ଓ ଭୂମିୟା । ଏହି ଆଦିବାସୀମାନଙ୍କର ଗ୍ରାମ୍ୟ ମୁଖିଆମାନେ ସେମାନଙ୍କଠାରୁ କର ଆଦାୟ କରି ଜମିଦାରଙ୍କୁ ଦେଉଥିଲେ । ଏହି ମୁଖିଆମାନେ ନିଷ୍କର ଜମି ଭୋଗ କରୁଥିଲେ । ଏମାନଙ୍କୁ ମୁସ୍ତାଦାର କୁହାଯାଉଥିଲା । ବନ୍ଦୋବସ୍ତ ଅନୁସାରେ ଭୋଗ କରୁଥିବା ଜମି ଉପରେ ଲୋକେ ଖଜଣା ଦେଉଥିଲେ । ଖଜଣା ବୋଝ ଏଡ଼ାଇବା ପାଇଁ ଆଦିବାସୀମାନେ ଦୁର୍ଗମ ଜଙ୍ଗଲରେ ଜମିରେ ପୋଡୁଚାଷ କରୁଥିଲେ । କର ଦେବାଛଡ଼ା ଆଦିବାସୀମାନଙ୍କଠାରୁ ତିନିଟି ବେଆଇନ୍ ପାଉଣା ଆଦାୟ କରାଯାଉଥିଲା – ବେଠି, ଗୋତି ଏବଂ ଗୁଦେମ୍ । ବିନା ପାରିଶ୍ରମିକରେ ମୁସ୍ତାଦାର ଓ ଜମିଦାରଙ୍କ କର୍ମଚାରୀମାନେ ଲୋକମାନଙ୍କଠାରୁ ଯେଉଁ ପରିଶ୍ରମ ଆଦାୟ କରୁଥିଲେ, ତାହାକୁ ବେଠି କୁହାଯାଉଥିଲା । ଖାଦ୍ୟ ଶସ୍ୟ କିମ୍ବା ଅର୍ଥ ଋଣ କରି ଶୁଝି ନପାରିବା ହେତୁ ଆଜୀବନ ମଜୁରି ଖଟିବା ପ୍ରଥାକୁ ଗୋତି ପ୍ରଥା କୁହାଯାଉଥିଲା। ଜମିଦାରଙ୍କ କର୍ମଚାରୀମାନେ ଗସ୍ତରେ ଗ୍ରାମମାନଙ୍କୁ ଗଲେ ସେମାନଙ୍କର ଖାଇବା ପିଇବା ଓ ଆବଶ୍ୟକ ସାମଗ୍ରୀ ଓ ସେବାର ଭାର ଆଦିବାସୀମାନଙ୍କୁ ବହନ

କରିବାକୁ ପଡୁଥିଲା । ଏହି ପ୍ରଥାକୁ ଗୁଦେମ୍ କୁହାଯାଉଥିଲା । ଏଥିପାଇଁ ସେମାନଙ୍କୁ ବହୁତ ଖର୍ଚ୍ଚାନ୍ତ ହେବାକୁ ପଡୁଥିଲା। ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ସେତେବେଳେ ପ୍ରଥମ ଲାଟ ସାର ଜନ ହବାକ୍ କୋରାପୁଟ ଗସ୍ତରେ ଯାଇଥିଲେ ଏବଂ ଆଦିବାସୀମାନଙ୍କ ଘରୁ ପନିପରିବା, ଦୁଧ ଓ କୁକୁଡ଼ା ଆଦି ଜବରଦସ୍ତି ଆଦାୟ କରାଯାଇଥିଲା । ଏହା ବିରୋଧରେ ଆଦିବାସୀମାନଙ୍କ ତରଫରୁ ଲକ୍ଷ୍ମଣ ନାୟକ ପ୍ରତିବାଦ କରିଥିଲେ । ଫଳରେ ସରକାର ନିଜର ଭୁଲ ସ୍ୱୀକାର କରି କ୍ଷତିଗ୍ରସ୍ତ ଆଦିବାସୀମାନଙ୍କୁ କ୍ଷତିପୂରଣ ଦେଇଥିଲେ । ମୁସ୍ତାଦାରମାନଙ୍କ ଜରିଆରେ ଜମିଦାର ଓ ତାଙ୍କ କର୍ମଚାରୀମାନେ ଆଦିବାସୀମାନଙ୍କୁ ଶୋଷଣ କରୁଥିଲେ । ମୁସ୍ତାଦାରମାନେ ମଧ୍ୟ ସେମାନଙ୍କ ଗ୍ରାମମାନଙ୍କରେ ବାସ କରୁଥିବା ଆଦିବାସୀମାନଙ୍କୁ ଶୋଷଣ କରୁଥିଲେ । ଜମିଦାରଙ୍କ କର୍ମଚାରୀମାନଙ୍କ ବ୍ୟତୀତ ଯେଉଁ ଓଡ଼ିଆ ଶୁଣ୍ଢି ଓ ତେଲଗୁ କୁମୁଟିମାନେ ସମତଳ ଅଞ୍ଚଳରୁ ମାଲକାନଗିରିକୁ ଆସୁଥିଲେ, ସେମାନେ ଋଣ ମାଧ୍ୟମରେ ଆଦିବାସୀମାନଙ୍କୁ ଶୋଷଣ କରୁଥିଲେ ।

ଜୟପୁରରୁ ମାଲକାନଗିରି ରାସ୍ତାରେ ପ୍ରାୟ ୧୪ ମାଇଲ ଦୂରତାରେ କୋଲାବ ନଦୀ କୂଳରେ ତେନ୍ତୁଳିଗୁମ୍ମା ଗ୍ରାମ ଅବସ୍ଥିତ। ଏହି ଗ୍ରାମରେ ୧୮୯୯ ମସିହା ନଭେମ୍ବର ମାସ ୨୨ ତାରିଖରେ ଲକ୍ଷ୍ମଣ ନାୟକ ଭୂମିଆ ସମ୍ପ୍ରଦାୟରେ ଜନ୍ମ ଗ୍ରହଣ କରିଥିଲେ । ଲକ୍ଷ୍ମଣଙ୍କ ବାପା ପଦଲାମ ନାୟକ ଜଣେ ମୁସ୍ତାଦାର ଥିଲେ । ଲକ୍ଷ୍ମଣଙ୍କ ପରିବାର ଏକ ଏକାନ୍ନବର୍ତ୍ତୀ ପରିବାର ଥିଲା । ତାଙ୍କ ପରିବାରର ପ୍ରାୟ ୭୦/୮୦ ଏକର ଜମିଥିଲା । ପରିବାରର ଅନ୍ୟ ସଦସ୍ୟମାନଙ୍କ ସହିତ ସେ ଜମି ଚାଷ କରୁଥିଲେ । ବାଲିରେ ଅକ୍ଷର ଲେଖି ସେ ଅଳ୍ପ ପାଠ ପଢ଼ିଥିଲେ । ୧୯ବର୍ଷ ବୟସରେ ଲକ୍ଷ୍ମଣ ମଙ୍ଗୁଳି ଭୂମିଆଙ୍କ କନ୍ୟା ଘାସିଙ୍କୁ ବିବାହ କରିଥିଲେ । ୧୯୩୦ ମସିହାରେ ଲକ୍ଷ୍ମଣ ବାପାଙ୍କଠାରୁ ମୁସ୍ତାଦାର ଦାୟିତ୍ୱ ଗ୍ରହଣ କରିଥିଲେ । ଲକ୍ଷ୍ମଣ ଅନ୍ୟ ମୁସ୍ତାଦାରମାନଙ୍କ ଭଳି ଶୋଷକ ନଥିଲେ କିମ୍ବା ଜମିଦାରଙ୍କ ହାତବାରିସୀ ହୋଇ କାର୍ଯ୍ୟ କରିବାକୁ ଚାହୁଁନଥିଲେ । ନିଜର ସ୍ୱାଧୀନ ମନୋବୃତ୍ତି ଓ ନ୍ୟାୟ ନିଷ୍ଠା ପାଇଁ ସେ ଶେଷରେ ମୁସ୍ତାଦାରୀ ହରାଇଥିଲେ । ସେ ଚାହିଁଥିଲେ ଅନ୍ୟ ମୁସ୍ତାଦାରମାନଙ୍କ ଭଳି ନିଷ୍କର ଜମି ଭୋଗ କରି ଏବଂ ଲୋକମାନଙ୍କୁ ଶୋଷଣ କରି ଆରାମରେ ଜୀବନ କଟାଇ ପାରିଥାନ୍ତେ ।

ଲକ୍ଷ୍ମଣ ବନ୍ଧୁ ବତ୍ସଳ ଓ ପ୍ରକୃତି ପ୍ରେମୀ ଥିଲେ । ତାଙ୍କର ସ୍ୱଭାବ ସମ୍ବନ୍ଧରେ ଔପନ୍ୟାସିକ ଗୋପୀନାଥ ମହାନ୍ତି ଲେଖିଛନ୍ତି – "ସେ ଶାନ୍ତ, ବିନୀତ, ଅମାୟିକ, ସରଳ ନିରାଡ଼ମ୍ବର ମଣିଷଟିଏ, ଖୁବ୍ ଜନପ୍ରିୟ ଥିଲେ ଓ ଜମିଦାରଙ୍କ କର୍ମଚାରୀମାନେ ବି ତାଙ୍କୁ ପ୍ରଶଂସା କରୁଥିଲେ । ଶ୍ରୀ ଲକ୍ଷ୍ମଣ ନାଏକ ମୂଳରୁ ହିଁ ପରୋପକାରୀ ଥିଲେ, ଲୋକଙ୍କ ଦୁଃଖ ଦେଖିଲେ ସହିପାରନ୍ତି ନାହିଁ, ସାହାଯ୍ୟ କରନ୍ତି । ସେ କିଛି ଚିକିତ୍ସା ବି ଶିଖିଥିଲେ ଓ ସୁବିଧା ପାଇଲେ ଜଡ଼ିବୁଟି ଔଷଧ ଦେଉଥିଲେ ।"

ଯୁବକ ଅବସ୍ଥାରୁ ସେ ଅନ୍ୟାୟ ଓ ଅତ୍ୟାଚାର ବିରୋଧରେ ଲଢ଼ିବା ଆରମ୍ଭ କରିଥିଲେ । ଆଦିବାସୀମାନେ କିପରି ଜମିଦାରଙ୍କ କର୍ମଚାରୀ, ସରକାରୀ କର୍ମଚାରୀ ଏବଂ ପୋଲିସବାଲାଙ୍କ ଅତ୍ୟାଚାର ଓ ଶୋଷଣର ଶିକାର ହେଉଛନ୍ତି, ତାହା ସେ ମୁସ୍ତାଦାର ଭାବରେ ପ୍ରତ୍ୟକ୍ଷ ଭାବରେ ଅନୁଭବ କରିଥିଲେ ।

କଂଗ୍ରେସ ଆନ୍ଦୋଳନ ପୂର୍ବରୁ ମାଲକାନଗିରିର ଆଦିବାସୀମାନେ ତିନୋଟି ବାହ୍ୟ ବିଦ୍ରୋହ (ଯଥା : ପୂର୍ବ ଗୋଦାବରୀ ଜିଲ୍ଲାର ରମ୍ପାର କୋୟାମାନଙ୍କର ୧୮୭୯-୮୦ ବିଦ୍ରୋହ, ୧୯୧୦-୧୧ ମସିହାର ବସ୍ତର ବିଦ୍ରୋହ ଏବଂ ୧୯୨୨-୨୪ରେ ରମ୍ପାରେ ଆଲୁରି ସୀତାରାମ ରାଜୁଙ୍କ ନେତୃତ୍ୱରେ ବିଦ୍ରୋହ) ଦ୍ୱାରା ପ୍ରଭାବିତ ହୋଇଥିଲେ । ସୀତାରାମ ରାଜୁ ମାଲକାନଗିରି ଆସିଥିଲେ । ତାଙ୍କର ଜଣେ ସହଯୋଗୀ ରାମଚନ୍ଦ୍ର କୁଟିଆଙ୍କ ସହିତ ଲକ୍ଷ୍ମଣ ବନ୍ଧୁତା ସ୍ଥାପନ କରିଥିଲେ । ସୀତାରାମ ରାଜୁଙ୍କୁ ଜ୍ୟୋତିଷ ବିଦ୍ୟା ଓ ଦେଶାରୀ ଚିକିତ୍ସା ଜଣାଥିଲା । ତେଣୁ ୧୯୨୨-୨୪ ମସିହାର ରମ୍ପା ବିଦ୍ରୋହୀମାନଙ୍କ ସହିତ ସମ୍ପର୍କ ଫଳରେ ଲକ୍ଷ୍ମଣ ଏହି ଦୁଇଟି ବିଦ୍ୟା ଶିଖିଥିଲେ ବୋଲି ଅନୁମାନ କରାଯାଏ ।

୧୯୨୯ ମସିହାଠାରୁ କୋରାପୁଟ ଜିଲ୍ଲାରେ କଂଗ୍ରେସ ଆନ୍ଦୋଳନ ଆରମ୍ଭ ହେଲା । ରାଧାକୃଷ୍ଣ ବିଶ୍ୱାସ ରାୟ ସରକାରୀ ଚାକିରି ଛାଡ଼ି ଏହି ଜିଲ୍ଲାରେ କଂଗ୍ରେସ ସଙ୍ଗଠନ କାର୍ଯ୍ୟରେ ଲାଗିପଡ଼ିଲେ । ୧୯୩୬ ମସିହାରୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । କୋରାପୁଟ ଓଡ଼ିଶାର ଏକ ଜିଲ୍ଲା ହେଲା । କୋରାପୁଟ ଜିଲ୍ଲା କଂଗ୍ରେସ କମିଟି ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିରେ ସାମିଲ ହେଲା । ଏହାପରେ ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀଙ୍କ ଉଦ୍ୟମ ଫଳରେ କଂଗ୍ରେସ ଦଳ କୋରାପୁଟରେ ଲୋକପ୍ରିୟ ହେଲା । କଂଗ୍ରେସ ଲୋକମାନଙ୍କୁ

ଅନ୍ୟାୟ, ଅତ୍ୟାଚାର ଓ ଶୋଷଣରୁ ରକ୍ଷା କରିପାରିବ ବୋଲି ସାଧାରଣ ଆଦିବାସୀମାନଙ୍କ ମଧ୍ୟରେ ବିଶ୍ୱାସ ସୃଷ୍ଟି ହେଲା । ଫଳରେ ୧୯୩୭ ମସିହାର ବିଧାନସଭା ନିର୍ବାଚନରେ ତିନିଜଣ କଂଗ୍ରେସ ପ୍ରାର୍ଥୀ – ରାଧାକୃଷ୍ଣ ବିଶ୍ୱାସ ରାୟ, ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀ ନିର୍ବାଚିତ ହେଲେ ଏବଂ ଜମିଦାରଙ୍କ ସମର୍ଥିତ ପ୍ରାର୍ଥୀମାନେ ହାରିଗଲେ ।

୧୯୩୬ରେ ଲକ୍ଷ୍ମଣ ନାୟକ କଂଗ୍ରେସ ଦଳରେ ଚାରିଅଣିଆ ସଦସ୍ୟ ହୋଇଥିଲେ । କଂଗ୍ରେସ ପ୍ରତି ଆଗ୍ରହ ହେତୁ ତାଙ୍କୁ ତେନ୍ତୁଳିଗୁମ୍ମା ଗ୍ରାମର ପ୍ରାଥମିକ କଂଗ୍ରେସ କମିଟିର ସଭାପତି କରାଗଲା । ୧୯୩୬ରେ ମାତିଲି ହାଟରେ ବେଆଇନ୍ ଖଜଣା ଆଦାୟ ବିରୋଧରେ ପ୍ରତିବାଦ କରି ଲକ୍ଷ୍ମଣ ଗିରଫ ହୋଇଥିଲେ ।

ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେବା ପରେ କୋରାପୁଟର ଆଦିବାସୀମାନେ ଅଧିକ ଉତ୍ସାହିତ ହୋଇ ଜମି ଜବରଦଖଲ କରିବାରେ ଲାଗିପଡ଼ିଲେ । ଫଳରେ ୧୯୩୭–୩୮ରେ ପୋଡୁ ଚାଷର ପରିମାଣ ପ୍ରାୟ ହଜାର ଏକର ଅଧିକ ବୃଦ୍ଧି ପାଇଲା । ୧୯୩୭ ସେପ୍ଟେମ୍ବର ୧୨ ତାରିଖରେ ରାଜସ୍ୱ ମନ୍ତ୍ରୀ ବିଧାନ ସଭାରେ ଘୋଷଣା କଲେ ଯେ ଜୟପୁର ଜମିଦାରୀରେ ସବୁପ୍ରକାର ବେଆଇନ୍ ଆଦାୟ ବନ୍ଦ କରାଯିବ । ଆଦିବାସୀ ଲୋକଙ୍କର ଧାରଣା ହେଲା ଯେ ସ୍ୱରାଜ ଆସିଲେ ଆଉ ଖଜଣା ଦେବାକୁ ପଡ଼ିବ ନାହିଁ ଏବଂ ଜଙ୍ଗଲ ବ୍ୟବହାର ଉପରେ କଟକଣା ରହିବ ନାହିଁ । ଫଳରେ କଂଗ୍ରେସ ଦଳର ସଭ୍ୟ ସଂଖ୍ୟା ବୃଦ୍ଧି ପାଇଲା । ୧୯୩୮ ମସିହା ଅକ୍ଟୋବର ମାସରେ କୋରାପୁଟ ଜିଲ୍ଲାରେ କଂଗ୍ରେସ ଦଳର ପ୍ରାଥମିକ ସଭ୍ୟ ୫୦୦୪୮କୁ ବୃଦ୍ଧି ପାଇଲା । ଏହା ଓଡ଼ିଶାର ଜିଲ୍ଲାମାନଙ୍କ ମଧ୍ୟରେ ଦ୍ୱିତୀୟ ଥିଲା । କଟକ ଜିଲ୍ଲା ପ୍ରଥମ ଥିଲା, ଏହାର ସଭ୍ୟ ସଂଖ୍ୟା ୫୮୮୭୮ ଥିଲା ।

୧୯୩୭ ମସିହା ଡିସେମ୍ବର ମାସରେ ଜୟପୁର ସହରଠାରୁ ପାଞ୍ଚମାଇଲ ଦୂରରେ ନୂଆପାଟଠାରେ କଂଗ୍ରେସ ଦଳ ତରଫରୁ ଏକ ତାଲିମ୍ ଶିବିର ଖୋଲା ଗଲା । ଏହା ତିନି ମାସ ଚାଲିଲା । ଓଡ଼ିଶାର ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ଏହି ଶିବିର ପାଇଁ ସାହାଯ୍ୟ ଦେଲେ । ଶିବିରର ଉଦ୍ଦେଶ୍ୟ ଥିଲା କଂଗ୍ରେସ କାର୍ଯ୍ୟକ୍ରମ ଓ ଆଦର୍ଶ ସମ୍ବନ୍ଧରେ କର୍ମୀମାନଙ୍କୁ ତାଲିମ ଦେବା । ଏହି ତାଲିମ ଶିବିରରେ ୩୫୦ ଜଣ କର୍ମୀ ଯୋଗ ଦେଲେ । ସେମାନଙ୍କ ମଧ୍ୟରେ ପଚାଶ ଜଣ ଆଦିବାସୀ କର୍ମୀ ଯୋଗ ଦେଇଥିଲେ । ଲକ୍ଷ୍ମଣ ନାୟକ ତାଲିମ ଶିବିରରେ ଯୋଗ ଦେଇଥିଲେ ।

ଶିବିରରେ କର୍ମୀମାନଙ୍କୁ ଅହିଂସା ନୀତି, ଖଦଡ଼ ଓ ଗଠନମୂଳକ କାର୍ଯ୍ୟକ୍ରମ ସମ୍ବନ୍ଧରେ ତାଲିମ ଦିଆଗଲା । ଶିବିରରୁ ବାହାରିଲା ପରେ ଲକ୍ଷ୍ମଣ ନାୟକ ଶିକାର କରିବା ଓ ମାଂସ ଖାଇବା ଛାଡ଼ିଦେଲେ । ସେ ଗ୍ରାମେ ଗ୍ରାମେ ବୁଲି କଂଗ୍ରେସ କାର୍ଯ୍ୟକ୍ରମ ପ୍ରଚାର କଲେ । କଂଗ୍ରେସ କାର୍ଯ୍ୟକ୍ରମ ପ୍ରଚାର ସଙ୍ଗେ ସଙ୍ଗେ ଜମିଦାରୀ ତରଫରୁ ଲୋକମାନଙ୍କୁ ଯେଉଁଭଳି ଶୋଷଣ କରାଯାଉଛି, ସେ ବିଷୟରେ ଲୋକମାନଙ୍କୁ ସେ ସଚେତନ କରାଇବା ପାଇଁ ଉଦ୍ୟମ କଲେ । ସେ ଗାନ୍ଧୀଙ୍କ ଆଦର୍ଶ ଅନୁକରଣ କରି ସବୁପ୍ରକାର ଅତ୍ୟାଚାର ଓ ଶୋଷଣର ବିରୋଧ କରିବା ପାଇଁ ଆହ୍ୱାନ ଦେଲେ । ସେ କେତେଗୁଡ଼ିଏ ଗଠନମୂଳକ କାମ ହାତକୁ ନେଲେ । ତେନ୍ତୁଳିଗୁମ୍ମାଠାରୁ ହଲଗୁଡ଼ା ପର୍ଯ୍ୟନ୍ତ ୬ମାଇଲ ମାଟି ରାସ୍ତା ସେ ଲୋକଙ୍କ ଦ୍ୱାରା କରାଇଲେ । କୋଲାବ ଓ ସପ୍ତଧାରା ନଦୀ ଉପରେ ସେ ବାଉଁଶ ପୋଲ କରାଇଲେ । ଆଦିବାସୀ ପିଲାମାନଙ୍କ ପାଇଁ ସେ ବିଦ୍ୟାଳୟମାନ ଖୋଲିଲେ । ଏହିସବୁ କାର୍ଯ୍ୟ ପାଇଁ ଲକ୍ଷ୍ମଣ ଜମିଦାରଙ୍କ ବିଷ ଦୃଷ୍ଟିରେ ପଡ଼ିଲେ ଏବଂ ମୁସ୍ତାଦାରପଦ ଓ ନିଷ୍କର ଜମି ହରାଇଲେ । କିନ୍ତୁ ସେ ନିଜ ଆଦର୍ଶରୁ ବିଚ୍ୟୁତ ହେଲେ ନାହିଁ ।

ଲକ୍ଷ୍ମଣ କଂଗ୍ରେସ ସଙ୍ଗଠନରେ କାର୍ଯ୍ୟକରି ଏହାର ସଭ୍ୟ ସଂଖ୍ୟା ବଢ଼ାଇବା ପାଇଁ ଉଦ୍ୟମ କଲେ । ୧୯୪୧–୪୨ ବେଳକୁ ତେନ୍ତୁଳିଗୁମ୍ମାରେ ଦୁଇଶହ ଲୋକ କଂଗ୍ରେସ ଦଳର ଚାନ୍ଦା ଦିଆ ସଦସ୍ୟ ହୋଇଥିଲେ । ଇତିମଧ୍ୟରେ ତାଙ୍କୁ ରାଧାମୋହନ ସାହୁଙ୍କ ଦ୍ୱାରା ଗଠିତ ମାତିଲି ପ୍ରାଥମିକ କଂଗ୍ରେସ କମିଟିର ସଭାପତି କରାଗଲା । ୧୯୩୯ରେ ସେ ମାତିଲିରେ ଖଜଣା ଛାଡ଼ ଆନ୍ଦୋଳନ ଚଳାଇ ଗିରଫ ହୋଇଥିଲେ । ୧୯୪୦–୪୧ରେ ସେ ଦୁଇଟି ସ୍ଥାନ (ରାମଗିରି ଆଉଟ୍ ପୋଷ୍ଟ ପରିସର ଓ ମାତିଲି ଥାନା ପରିସର)ରେ ବ୍ୟକ୍ତିଗତ ଆଇନ୍ ଅମାନ୍ୟ ଆନ୍ଦୋଳନ ଚଳାଇ ଦୁଇଥର ଛଅମାସ ଲେଖାଏଁ ଜେଲ୍‌ଦଣ୍ଡ ଭୋଗିଥିଲେ ଏବଂ ୩୦୦ଟଙ୍କା ଜୋରିମାନା ଦେଇଥିଲେ । ଲକ୍ଷ୍ମଣଙ୍କ ଆନ୍ଦୋଳନ ଇଂରେଜ ସରକାର ଓ ଜୟପୁର ଜମିଦାରୀର ଶୋଷଣ ଏବଂ

ଆଦିବାସୀଙ୍କ ପ୍ରତି ଅନ୍ୟାୟ ବିରୋଧରେ ଉଦ୍ଦିଷ୍ଟ ଥିଲା । ସେ ଭାବୁଥିଲେ ସ୍ୱରାଜ (ତାଙ୍କ ଭାଷାରେ ରାଇଜ) ଆସିଲେ ଶୋଷଣ ଓ ଅତ୍ୟାଚାରର ବିନାଶ ଘଟିବ । ନିଃସ୍ୱାର୍ଥ ଏବଂ ନିର୍ଭୀକ ଜନସେବା ଯୋଗୁଁ ସେ ଲୋକଙ୍କ ଭିତରେ ବହୁତ ପ୍ରିୟ ହୋଇ ଉଠିଲେ । ଲୋକେ ତାଙ୍କୁ ମାଲକାନଗିରିର ଗାନ୍ଧୀ ଆଖ୍ୟା ଦେଲେ ।

୧୯୪୨ର ଭାରତଛାଡ଼ ଆନ୍ଦୋଳନ ପୂର୍ବରୁ ଜୟପୁରରେ ଜୁଲାଇ ୩୧ ତାରିଖ ଦିନ କୋରାପୁଟ ଜିଲ୍ଲାର କଂଗ୍ରେସ କର୍ମୀମାନଙ୍କର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଲକ୍ଷ୍ମଣ ନାୟକ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ସମ୍ମିଳନୀରେ ବମ୍ବେ କଂଗ୍ରେସ ଅଧିବେଶନରେ ଯୋଗ ଦେବା ପାଇଁ କୋରାପୁଟ ଜିଲ୍ଲା କଂଗ୍ରେସ କମିଟି ତରଫରୁ ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ବଛାଗଲା । ବମ୍ବେରୁ ଫେରିବା ରାସ୍ତାରେ ସେ ଗିରଫ ହେଲେ । ଇତିମଧ୍ୟରେ ସାରା ଦେଶରେ କଂଗ୍ରେସ ନେତାମାନେ ଗିରଫ ହେଲେ । ଅଗଷ୍ଟ ୯ତାରିଖ ଦିନ କୋରାପୁଟ ଜିଲ୍ଲା କଂଗ୍ରେସ କମିଟିକୁ ବେଆଇନ୍ ଘୋଷଣା କରାଗଲା । ଅଗଷ୍ଟ ୧୪ତାରିଖ ସୁଦ୍ଧା କୋରାପୁଟ ଜିଲ୍ଲାର ଅଧିକାଂଶ କଂଗ୍ରେସ ନେତା ଗିରଫ ହୋଇସାରିଥିଲେ । ଲକ୍ଷ୍ମଣ ନାୟକ ଗିରଫ ହୋଇନଥିଲେ । ସେ ବଳରାମ ପୂଜାରୀ ଓ ତାଙ୍କର ଅନ୍ୟ ସହଯୋଗୀମାନେ ଲୋକମାନଙ୍କୁ ସରକାର ବିରୋଧୀ କାର୍ଯ୍ୟକଳାପରେ ମତାଇବା ପାଇଁ ଲାଗିପଡ଼ିଲେ। ଲାଠି, ଡାଳ ଓ କଂଗ୍ରେସ ପତାକାଧରି ଲକ୍ଷ୍ମଣଙ୍କ ନେତୃତ୍ୱରେ ତାଙ୍କର ସହକର୍ମୀମାନେ ଶୋଭାଯାତ୍ରା ଆୟୋଜନ କଲେ । ସଭାସମିତି କଲେ, ଥାନା ଘେରାଉ କଲେ, ମଦ, ଅଫିମ ଦୋକାନ ବନ୍ଦ କଲେ, ଶୋଷକ ଲୋକଙ୍କ ଘର ଉପରେ ଚଢ଼ାଉ କଲେ ।

୧୯୪୨ ଅଗଷ୍ଟ ୧୩ ତାରିଖ ଦିନ କଂଗ୍ରେସ ପତାକାଧାରୀ ଦୁଇଜଣ ଯୁବକ ଜୟପୁରରେ ଏକ ସାଧାରଣ ସଭାରେ ଗାନ୍ଧୀଙ୍କ ବାର୍ତ୍ତା ପଢି ଶୁଣାଇଲେ । ଅଗଷ୍ଟ ୧୬ତାରିଖ ଦିନ ବଧିଗରରେ କଂଗ୍ରେସ କର୍ମୀମାନେ ସଦାଶିବ ଚୌଧୁରୀ ନାମଧେୟ ଅଫିମ ଦୋକାନୀଙ୍କୁ ଦୋକାନ ବନ୍ଦ କରିବା ପାଇଁ ଏବଂ ଗଚ୍ଛିତ ଅଫିମ ସମର୍ପଣ କରିବା ପାଇଁ ବାଧ୍ୟ କଲେ ।

ତା'ପରେ ସେମାନେ ଜବରଦସ୍ତ ଓ ବଳପୂର୍ବକ ଖଜଣା ଆଦାୟ କରୁଥିବା ମୁସ୍ତାଦାର କେଶବ ପାତ୍ରଙ୍କ ଘରେ ପହଞ୍ଚିଲେ । କେଶବ ଘରେ ନଥିଲେ । ବିକ୍ଷୋଭକାରୀମାନେ ସେଠାରୁ ଯାଇ ଖୋଗାନଠାରେ ପଦମ୍ ବିଶୋୟିଙ୍କ ମଦ ଦୋକାନ ବନ୍ଦ କଲେ । ଅଗଷ୍ଟ ୧୭ ତାରିଖ ଦିନ ଲକ୍ଷ୍ମଣଙ୍କ ନେତୃତ୍ୱରେ କଂଗ୍ରେସ କର୍ମୀମାନେ କଙ୍ଗ୍ରାବେଡା ଓ କୁଣ୍ଡିପଲିଠାରେ ମଦ ଦୋକାନ ଧ୍ୱଂସ କଲେ । ଅଗଷ୍ଟ ୧୮ତାରିଖ ଦିନ ସେମାନେ ସିନ୍ଧାବେଡାରେ ମଦଦୋକାନ ଉପରେ ଆକ୍ରମଣ କଲେ । ତହିଁ ପରଦିନ ମାଲକାନଗିରି ଥାନା ପରିସରରେ ଅବସ୍ଥିତ ପୁଷାପଲ୍ଲିରେ ମଦଦୋକାନ ଉପରେ ଆକ୍ରମଣ ହେଲା ।

ଶେଷରେ ଲକ୍ଷ୍ମଣଙ୍କ ନେତୃତ୍ୱରେ ଅଗଷ୍ଟ ୨୧ ତାରିଖରେ ଜୟପୁର-ମାଲକାନଗିରି ରାସ୍ତାରେ ଅବସ୍ଥିତ ମାଲକାନଗିରି ତହସିଲ ଅନ୍ତର୍ଭୁକ୍ତ ମାତିଲି ଥାନା ଘେରାଉ କରିବା ସ୍ଥିର ହେଲା । ସେଦିନ ପ୍ରାୟ ତେତିଶଟି ଗ୍ରାମର ପ୍ରାୟ ଏକ ହଜାର ଲୋକ କଂଗ୍ରେସ ପତାକା ଧରି ରାମଧୁନ ଗାଇ ଏବଂ ମହାତ୍ମା ଗାନ୍ଧୀକି ଜୟ ଧ୍ୱନି ଦେଇ ସକାଳ ୯.୩୦ରେ ମାତିଲିରେ ପହଞ୍ଚିଲେ । ଥାନାରୁ ଦୁଇଶହ ହାତ ଦୂରରେ ପୋଲିସ୍ ସେମାନଙ୍କୁ ଅଟକାଇଲେ । ପୋଲିସ ସହିତ ବଚସା ପରେ ଲୋକେ କିଛି ଦୂରରେ ଅବସ୍ଥିତ ହାଟକୁ ଶୋଭାଯାତ୍ରାରେ ଗଲେ ଏବଂ ସେଠାରେ ସଭାକଲେ । ପୋଲିସ ଇନ୍‌ସ୍ପେକ୍ଟରଙ୍କ ବିବରଣୀ ଅନୁସାରେ ଲକ୍ଷ୍ମଣ ନାୟକ ସମବେତ ଜନତାକୁ କହିଲେ '' ଭାଇମାନେ, ଆମେ ସବୁ ଯୋଦ୍ଧା । ଇଂରେଜ ଶାସନର ଅବସାନ ଘଟିଛି । ମହାତ୍ମା ଗାନ୍ଧୀ ଆମର ରାଜା । ଜୟପୁର ମହାରାଜା ମୃତ । ମାଡିଚାଲ । ପ୍ରଥମେ ଥାନା ଲୁଟ କରିବା ଏବଂ ପୋଡିଦେବା, ସରକାରୀ କର୍ମଚାରୀମାନଙ୍କୁ ହତ୍ୟା କରିବା ଏବଂ ମାଲକାନଗିରି ଯାଇ ରାଜକୋଷ ଲୁଣ୍ଠନ କରିବା ।'' ଏହି ପ୍ରକାର ଭାଷଣରେ ହିଂସାଭାବ ରହିଛି । କିନ୍ତୁ ଲକ୍ଷ୍ମଣ ନାୟକ କୁଆଡେ ଲୋକଙ୍କୁ ଶାନ୍ତିପୂର୍ଣ୍ଣ ରହିବାକୁ ଉପଦେଶ ଦେଉଥିଲେ । ସରକାରୀ ରିପୋର୍ଟ ଅନୁସାରେ ଲୋକେ ଶାନ୍ତିପୂର୍ଣ୍ଣ ଥିଲେ । କେହି କେହି କହନ୍ତି ଲକ୍ଷ୍ମଣ ନାୟକଙ୍କ ପ୍ରକୃତ ଉଦ୍ଦେଶ୍ୟ ଥିଲା ସରକାରୀ ବାରଣ ଅମାନ୍ୟ କରି ସଭା କରିବା, ଥାନାରେ କଂଗ୍ରେସ ପତାକା ଉଡାଇବା ଏବଂ ଗିରଫ ହେବା । ପ୍ରାୟ ଦିନ ୧୨ଟା ବେଳକୁ ସମବେତ ଜନତା ପୁଣି ଥାନା ଆଡକୁ ମାଡି ଚାଲିଲେ । ପୋଲିସ ଓ ଉତ୍ତ୍ୟକ୍ତ ଜନତା ମଧ୍ୟରେ ଧସ୍ତାଧସ୍ତି ହେଲା । କର୍ତ୍ତବ୍ୟରତ ମାଜିଷ୍ଟ୍ରେଟ୍ ମଜିବର ରହମନ୍ ପ୍ରଥମେ ଲାଠି ଚାଳନା ଏବଂ ତା'ପରେ ଗୁଳି ଚାଳନା ହୁକୁମ ଦେଲେ । ଲକ୍ଷ୍ମଣ ନାୟକ ପୋଲିସ ମାଡ଼ରେ ବେହୋସ ହେଲେ ଓ ଚେତା ହରାଇଲେ । ସରକାରୀ ରିପୋର୍ଟ ଅନୁସାରେ ପୋଲିସ୍‌ଗୁଳିରେ ପାଞ୍ଚଜଣ ମୃତ ଓ ସତର ଜଣ ଆହତ ହୋଇଥିଲେ । ଲକ୍ଷ୍ମଣ ନାୟକଙ୍କ ସଂଜ୍ଞାହୀନ ଶରୀର ପାର୍ଶ୍ୱରେ ଜଙ୍ଗଲ ଜଗୁଆଳୀ ରାମାୟାଙ୍କ ମୃତ ଶରୀର ପଡିଥିଲା ।

ରାମାୟା ଜଣେ ଅଫିମଖୋର ଲୋକ । ଉତ୍ତ୍ୟକ୍ତ ଜନତାକୁ ନିୟନ୍ତ୍ରଣ କରିବାକୁ ଆସି ସେ ପୋଲିସ୍ ଗୁଳିରେ ପ୍ରାଣ ହରାଇଥିଲେ ।

ଦୀର୍ଘ ସମୟ ପରେ ଚେତା ଫେରିବାରୁ ଲକ୍ଷ୍ମଣ ନାୟକ ବହୁତ କଷ୍ଟରେ ଚାଲି ଚାଲି ଜୟପୁରରେ ପହଞ୍ଚିଲେ । ପ୍ରାୟ ଏକ ସପ୍ତାହ ଆତ୍ମଗୋପନ କରି ଶେଷରେ ସେ ନିଜ ଗାଁରେ ପହଞ୍ଚିଲେ । ସେପ୍ଟେମ୍ବର ୨ତାରିଖ ଦିନ ପୋଲିସ ଲକ୍ଷ୍ମଣ ଓ ତାଙ୍କର ପୁଅ ରଘୁନାଥଙ୍କୁ ଗିରଫ କଲା । ଅନ୍ୟମାନେ ମଧ ଗିରଫ ହେଲେ । ତେନ୍ତୁଳିଗୁମ୍ମା ଗାଁରେ ସରକାର ଓ ଜମିଦାର ତରଫରୁ ଜୁଲୁମ ଚାଲିଲା ।

କୋରାପୁଟର ଅତିରିକ୍ତ ଶେସନ ଜଜ୍ ଭି. ରାମନାଥନ୍ଙ୍କ ଅଦାଲତରେ ଲକ୍ଷ୍ମଣ ନାୟକ ଓ ତାଙ୍କର ତେପନ ଜଣ ସହଯୋଗୀଙ୍କ ବିଚାର ହେଲା । ଏମାନଙ୍କ ବିରୋଧରେ ସରକାରଙ୍କ ତରଫରୁ ନରହତ୍ୟା, ଲୁଟ୍, ପୋଡାପୋଡି ଓ ହିଂସାକାଣ୍ଡର ଅଭିଯୋଗ ଅଣାଗଲା । ବିଚାର ବେଳେ ୩୩ଜଣ ସରକାରୀ ଓ ଜମିଦାରୀ କର୍ମଚାରୀଙ୍କଠାରୁ ସାକ୍ଷ୍ୟ ଗ୍ରହଣ କରାଗଲା । ମାଜିଷ୍ଟ୍ରେଟ୍ ମଜିବର ରହମନ, ପୋଲିସ୍ ଇନ୍ସପେକ୍ଟର ବି.ଏସ୍. ନନ୍ଦ, ପୋଲିସ ସବ୍‌ଇନ୍ସପେକ୍ଟର ଜଗନ୍ନାଇକୁଲୁ ଦୋରା ଏବଂ କେ. ରାମମୂର୍ତ୍ତି, ଜୟପୁର ରାଜାଙ୍କ ରେଭିନ୍ୟୁ ଇନ୍ସପେକ୍ଟର ନରସିଂହମ୍ ଇତ୍ୟାଦି ନଅଜଣ ଲକ୍ଷ୍ମଣ ନାୟକ ଜଙ୍ଗଲ ଜଗୁଆଳୀ ରାମାୟାଙ୍କୁ ହତ୍ୟା କରିଛନ୍ତି ବୋଲି ସାକ୍ଷ୍ୟ ଦେଲେ । ରାମନାଥନ୍ ତାଙ୍କ ରାୟରେ ରାମାୟା ହତ୍ୟା ଅପରାଧରେ ଲକ୍ଷ୍ମଣ ନାୟକଙ୍କୁ ଫାଶି ଦଣ୍ଡ ଦେଲେ, ବଳରାମ ପୂଜାରୀ ଆଦି ଅଣଚାଶ ଜଣଙ୍କୁ ଆଜୀବନ କାରାଦଣ୍ଡ ଦେଲେ ଏବଂ ଚାରିଜଣଙ୍କୁ ନିର୍ଦ୍ଦୋଷରେ ଖଲାସ କଲେ ।

ରାୟ ବାହାରିଲା ପରେ ଲକ୍ଷ୍ମଣଙ୍କୁ ବ୍ରହ୍ମପୁର ଜେଲ୍‌କୁ ପଠାଗଲା । ଜେଲରୁ ଲକ୍ଷ୍ମଣ ତଳକୋର୍ଟର ଦଣ୍ଡାଦେଶ ବିରୋଧରେ ପାଟନା ହାଇକୋର୍ଟରେ ଅପିଲ କଲେ । ଆଇନଜ୍ଞ ପୀତାମ୍ବର ମିଶ୍ର ଲକ୍ଷ୍ମଣଙ୍କ ପାଇଁ ଲଢିଲେ । ତଳକୋର୍ଟର ଦଣ୍ଡାଦେଶ ହାଇକୋର୍ଟରେ କାଏମ୍ ରହିଲା ।

ପ୍ରକୃତରେ ରାମାୟା ପୋଲିସ୍ ଗୁଳିରେ ପ୍ରାଣ ହରାଇଥିଲେ । ଲକ୍ଷ୍ମଣ ପୋଲିସ୍ ମାଡ଼ରେ ଅଚେତ ହୋଇ ପଡ଼ିବା ପରେ ରାମାୟାଙ୍କ ମୃତ୍ୟୁ ଘଟିଥିଲା । ଲକ୍ଷ୍ମଣ ଅହିଂସା ନୀତିରେ ଦୃଢ ଭାବରେ ବିଶ୍ୱାସ କରୁଥିଲେ। ତେଣୁ ମିଥ୍ୟା ସାକ୍ଷ୍ୟ ଦ୍ୱାରା ତାଙ୍କୁ ରାମାୟାଙ୍କ ହତ୍ୟାକାରୀ ବୋଲି ଅଦାଲତରେ ପ୍ରମାଣ କରି ମୃତ୍ୟୁଦଣ୍ଡ ଦିଆଗଲା ।

୧୯୪୩ ମସିହା ମାର୍ଚ୍ଚ ମାସ ୨୯ତାରିଖ ଦିନ ଭୋର ପାଞ୍ଚଟାରେ ଜେଲରଙ୍କ ଉପସ୍ଥିତିରେ ବ୍ରହ୍ମପୁର ଜେଲ୍‌ରେ ଲକ୍ଷ୍ମଣ ନାଏକଙ୍କୁ ଫାଶି ଦିଆଗଲା । ମୃତ୍ୟୁବେଳକୁ ସେ ଭାଗବତ ପଢୁଥିଲେ ଏବଂ ନିଜ କଥା ନଭାବି ଦେଶର ସ୍ୱରାଜ କଥା ଚିନ୍ତା କରୁଥିଲେ । ସେତେବେଳେ ବ୍ରହ୍ମପୁର ଜେଲ୍‌ରେ ଓଡ଼ିଶା କଂଗ୍ରେସର କେତେଜଣ ତୁଙ୍ଗ କଂଗ୍ରେସନେତା ବନ୍ଦୀ ଥିଲେ । ସେମାନଙ୍କ ମଧ୍ୟରେ କୋରାପୁଟର ରାଧାକୃଷ୍ଣ ବିଶ୍ୱାସ ରାୟ, ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀ ଅନ୍ତର୍ଭୁକ୍ତ । ଫାଶି ପୂର୍ବଦିନ ସଦାଶିବ ତ୍ରିପାଠୀ ତାଙ୍କୁ ଦେଖା କରିଥିଲେ । ମନମୋହନ ଚୌଧୁରୀଙ୍କ କହିବାନୁସାରେ ଲକ୍ଷ୍ମଣ ତାଙ୍କୁ କହିଲେ, ''ବାବୁ, ମୁଁ ତ ଯାଉଛି, ସ୍ୱରାଜ ସତରେ ହେବ ନା ? ଲୋକେ ସୁଖରେ ଶାନ୍ତିରେ ରହିବେ ନା !

ସଦାଶିବବାବୁ ବାଷ୍ପରୁଦ୍ଧ କଣ୍ଠରେ ଜବାବ ଦେଲେ, ''ନିଶ୍ଚୟ ହେବ । ଏଥିରେ ଆଉ ସନ୍ଦେହ ଅଛି ?' ନାୟକ କହିଲେ – ''ହଉ ! ଗାନ୍ଧୀ ମହାତ୍ମାଙ୍କ ଜୟ !''

୨୯ ତାରିଖ ଭୋର ତିନିଟା ବେଳକୁ ବ୍ରହ୍ମପୁର ଜେଲ୍‌ର କଂଗ୍ରେସ ବନ୍ଦୀମାନେ ଉଠି ପଡ଼ିଲେ, ପ୍ରାର୍ଥନା କଲେ ଏବଂ ଧ୍ୱନି ଦେଲେ – ଇନ୍‌କିଲାବ୍ ଜିନ୍ଦାବାଦ୍ ।

ଶେଷକୁ ଗୋପବନ୍ଧୁ ଚୌଧୁରୀ କହିଲେ–

''ଆଉ କାହିଁକି ? ଯାହା ପାଇଁ କହୁଥିଲ ସେ ଆଉ ଶୁଣିବ ନାହିଁ ।''

ଅବସରପ୍ରାପ୍ତ
ଇତିହାସ ଅଧ୍ୟାପକ
ଏମ୍.ଆଇ.ଜି–୬୮
ବରମୁଣ୍ଡା ହାଉସିଂବୋର୍ଡ କଲୋନୀ, ଭୁବନେଶ୍ୱର

# ସ୍ୱାଧୀନତା ସଂଗ୍ରାମରେ ଭାରତୀୟ ବୀରା ରମଣୀମାନଙ୍କର ଅବଦାନ

ଜୟଶଙ୍କର ନାୟକ

ସ୍ୱାଧୀନତା ସଂଗ୍ରାମରେ ଭାରତୀୟ ବୀରା ରମଣୀମାନଙ୍କର ଭୂମିକା ଅବିସ୍ମରଣୀୟ । ସେମାନେ ନିଜର ସୁଖ, ସ୍ୱାଚ୍ଛନ୍ଦ୍ୟ, ଘର, ପରିବାରକୁ ପରିତ୍ୟାଗ କରି ଦେଶ ମାତୃକାର ସେବାରେ ନିଜକୁ ତିଳ ତିଳ କରି ଉତ୍ସର୍ଗ କରିଛନ୍ତି । ନାରୀ ଶବ୍ଦର ଅକ୍ଷର ଦୁଇ ମାତ୍ର ରୂପ ତିନି । ଜନନୀ, ଭଗିନୀ ଓ ଜାୟା । ପୁରୁଷ ନିଜର ମନୋମୁଖୀ ଈର୍ଷାକୁ ପରିହାର କରି ନାରୀକୁ ପୂର୍ଣ୍ଣ ସ୍ୱାଧୀନତା, ସ୍ୱତନ୍ତ୍ର ମର୍ଯ୍ୟାଦା ଓ ସମ୍ମାନ ଦେଲେ ଏହି ତିନି ରୂପର ସ୍ୱପ୍ନ ସାର୍ଥକ ହେବ । ନାରୀ ଅବଳା ହୋଇପାରେ, ମାତ୍ର ଦୁର୍ବଳା ନୁହେଁ । ନାରୀ ହେଉଛି ପବିତ୍ରତାର ଗଙ୍ଗା, ଶାନ୍ତିର ଯମୁନା, ସହିଷ୍ଣୁତାର ହିମାଳୟ । ନାରୀ ଅବଳା, ଦୁର୍ବଳା, ପୁରୁଷ ହସ୍ତରେ କ୍ରୀଡା ପୁତ୍ତଳିକା ବା ପୁରୁଷର କେବଳ ଭୋଗ୍ୟ ବସ୍ତୁ ନୁହେଁ । ଏ କଥାକୁ ସ୍ୱାଧୀନତା ସଂଗ୍ରାମରେ ଭାରତୀୟ ବୀରା ରମଣୀ ସମାଜ ମିଥ୍ୟା ପ୍ରମାଣିତ କରି ଦେଇଛନ୍ତି । ସେ ସ୍ନେହମୟୀ ଜନନୀ, ଆଦରଣୀୟା ଭଗିନୀ, ସେବା ଓ ତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ । ତା'ର ସ୍ନେହ, ଆଦର ଓ ମମତାର ପଟାନ୍ତର ନାହିଁ । ସେମାନେ ପୁରୁଷର ସମକକ୍ଷ, ସଂଗ୍ରାମ କରି ଜାଣନ୍ତି, ବଜ୍ରଠାରୁ କଠିନ ହୋଇପାରନ୍ତି । ଭାରତବର୍ଷର ସୁଦୀର୍ଘ ଇତିହାସରେ ଅଗଣିତ ନାରୀ ନିଜ ନିଜର କାର୍ଯ୍ୟକଳାପ ଦ୍ୱାରା ସମସାମୟିକ ସମାଜରେ ପୁରୁଷମାନଙ୍କ ଅପେକ୍ଷା ଅଧିକ ସମ୍ମାନିତା ହୋଇଛନ୍ତି । ଏହି ବୀରା ରମଣୀମାନେ ନିଜ ନିଜର ଅପୂର୍ବ ସାହସ, ଶକ୍ତି, ନିଷ୍ଠା ଓ ପରାକାଷ୍ଠା ବଳରେ ଇଂରେଜମାନଙ୍କର ଗୋଳା, ବାରୁଦ, ବନ୍ଧୁକ ଆଗରେ ଛାତି ପତେଇ ଦେଇଛନ୍ତି । ସେମାନଙ୍କୁ ଚିରଦିନ ପାଇଁ ଇତିହାସର ଅମର ପୃଷ୍ଠାରେ ସେମାନଙ୍କର ଯଶକୀର୍ତ୍ତି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିଛି । ଆଉ କେତେ ଜଣଙ୍କର ଇତିହାସ ପୃଷ୍ଠାରେ ଅଧିକାଂଶ ମହିଳାଙ୍କ ନାମ ନାମାଙ୍କିତ ହୋଇନାହିଁ, ତଥାପି ଏମାନେ ଏ ଦେଶ ଓ ଏ ଜାତି ପାଇଁ ସମାଜର ସକଳ ବାଧାକୁ ଛିନ୍ନ କରି ଯେଉଁ ଆତ୍ମୋତ୍ସର୍ଗ କରି ଯାଇଛନ୍ତି, ତାହା ଅତୁଳନୀୟ । ଭାରତମାତାକୁ ପରାଧୀନ ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ଏହି ଜାତୀୟ ଆନ୍ଦୋଳନରେ ଭାରତୀୟ ବୀରା ରମଣୀମାନଙ୍କ ଭୂମିକା ଅଦ୍ୱିତୀୟ । ଗାନ୍ଧିଜୀଙ୍କ ମହାନ ଆଦର୍ଶ ଓ ତ୍ୟାଗପୂତ ଭାବଧାରାରେ ଗଭୀର ଭାବରେ ଉଦ୍‌ବୁଦ୍ଧ ହୋଇ ଏମାନେ ଇଂରେଜ ଶାସନ ବିରୋଧରେ ସଂଗ୍ରାମ କରି ଆଜି ଚିରସ୍ମରଣୀୟା ହୋଇଛନ୍ତି ।

ବିଦେଶୀ ଶାସନର ଦାରୁଣ ନିର୍ଯାତନା ଏ ଦେଶର ଅଧିବାସୀଙ୍କର ଅନ୍ତରରେ ପ୍ରଜ୍ଜ୍ୱଳିତ କଲା ସ୍ୱାଭିମାନୀ ଭାବ । ଏ ଦେଶର ପ୍ରତ୍ୟେକ ନାଗରିକ ଅନ୍ତରରେ ସୃଷ୍ଟି ହେଲା ଦେଶ ମାତୃକାର ମୁକ୍ତି ପାଇଁ ଦୁର୍ବାର ଲାଳସା । ଜୀବନ ବିନିମୟରେ ଦେଶ ମାତୃକାର ମୁକ୍ତି ପାଇଁ ସେମାନେ ହେଲେ ଦୃଢ ପରିକର । ଜୀବନ ବିନିମୟରେ ଦେଶର ମୁକ୍ତି ପାଇଁ ଏ ଦେଶର ଜନତା ହେଲେ ଐକ୍ୟବଦ୍ଧ । ଇଂରେଜ ଶାସନର ଗୁଳିଗୁଳା ବନ୍ଧୁକ ମୁକ୍ତିକାମୀ ଜନତାଙ୍କୁ ଲକ୍ଷ୍ୟଚ୍ୟୁତ କରିପାରିଲା ନାହିଁ । ସ୍କୁଲ, କଲେଜ ପରିତ୍ୟାଗ କରି ଛାତ୍ର ସମାଜ ଏହି ଆନ୍ଦୋଳନରେ ଯୋଗଦେଲେ । ପୁରପଲ୍ଲୀର କୃଷକ ସମାଜ ମଧ୍ୟ ଗଭୀର ମନୋବଳ ନେଇ ମୁକ୍ତି ଯୁଦ୍ଧରେ ଶହୀଦ୍ ହେବାକୁ ବାହାରି ଆସିଲେ । ଖୁଦିରାମ, ଲକ୍ଷ୍ମଣ ନାୟକ, ଭଗତ୍ ସିଂହ, ଉଦ୍ଧାମ ସିଂ ହସି ହସି ଝୁଲି ପଡିଛନ୍ତି ବ୍ରିଟିଶ ଶାସନର ଫାଶି ଖୁଣ୍ଟରେ । ''ଝଣ୍ଡା ଉଞ୍ଚା ରହେ ହମାରା'' ଧ୍ୱନି ଦେଉ ଦେଉ ପଚସ୍ତରୀ ବର୍ଷର ବୃଦ୍ଧା ମାତଙ୍ଗିନୀ ହାଜାରା ଲୋଟି ପଡିଛନ୍ତି ମାତୃଭୂମିର କୋଳରେ । ବୀରାଙ୍ଗନା ଝାନ୍‌ସୀରାଣୀ ଲକ୍ଷ୍ମୀବାଈ ସମର କ୍ଷେତ୍ରରେ ଯୁଦ୍ଧ କରୁ କରୁ ଶତ୍ରୁ ପକ୍ଷର ଅସ୍ତ୍ରାଘାତରେ ହୋଇଛନ୍ତି ଧରାଶାୟୀ । ବାର ବର୍ଷ ବାଳକ ବାଜି ରାଉତ ଓ ଦଶ ବର୍ଷର ଝିଅ କଲ୍ୟାଣୀ ଛାତି ପାତି ଦେଇଛନ୍ତି ବ୍ରିଟିଶ ଶକ୍ତିର ଗୁଳିରେ । ଅନୈକ୍ୟ ମଧ୍ୟରେ ଐକ୍ୟ, ବୈଶାଦୃଶ୍ୟ ମଧ୍ୟ ସାଦୃଶ୍ୟ

ଏବଂ ବୈଷମ୍ୟ ଭିତରେ ସାମ୍ୟ ସୃଷ୍ଟି କରିବା ହିଁ ଭାରତୀୟ ସଂସ୍କୃତିର ମୂଳମନ୍ତ୍ର ଅଟେ । ବ୍ରିଟିଶ ଶାସନର ଅଧୀନରେ ରହି ଗୋଲାମି କରି ଜୀବନ ଅତିବାହିତ କରିବାକୁ ସେମାନେ କୁଣ୍ଠାବୋଧ ପ୍ରକାଶ କଲେ । ମହାମାନବ ମହାତ୍ମା ଗାନ୍ଧୀ ଭାରତୀୟ ମୁକ୍ତି ଆନ୍ଦୋଳନର ଭଗୀରଥ । ସେ ହେଲେ ଭାରତର ଅତ୍ୟାଚାର ବିଦଳିତ ଅଗଣିତ ଜନତାର ମୁକୁଟହୀନ ସମ୍ରାଟ । ପରାଧୀନ ଭାରତବର୍ଷକୁ ବ୍ରିଟିଶ ଶାସନର ରଥଚକ୍ର ତଳୁ ଉଦ୍ଧାର କରିବାକୁ ସେ ହେଲେ ବଦ୍ଧପରିକର । ଏହି ଆନ୍ଦୋଳନକୁ ରୂପରେଖ ଦେଲେ ମହାମାନବ ମହାତ୍ମା ଗାନ୍ଧୀ ।

ଆମ ପାଇଁ ସ୍ୱାଧୀନତା ଏକ ଦାନ ସ୍ୱରୂପ ନଥିଲା । ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଆମ ଦେଶବାସୀଙ୍କୁ କଠୋର ସଂଗ୍ରାମ ଓ ଅସୀମ ତ୍ୟାଗ ସ୍ୱୀକାର କରିବାକୁ ପଡିଛି । ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ଆତ୍ମୋତ୍ସର୍ଗ କରିଛନ୍ତି, ସେମାନେ ଆମର ଚିର ନମସ୍ୟ । ସେମାନଙ୍କୁ ସ୍ମରଣ କରି ରଖିବା ପାଇଁ ଆଜି ଦିନଟି ଆମକୁ ସୁଯୋଗ ଦେଇଥାଏ । ବିଶେଷକରି ମହାତ୍ମା ଗାନ୍ଧୀ, ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ପଟେଲ, ମୌଲାନା ଆଜାଦ୍, ସୀମାନ୍ତ ଗାନ୍ଧୀ, ସରୋଜିନୀ ନାଇଡୁ, ଗୋପବନ୍ଧୁ ଦାସ, ସୁଭାଷ ଚନ୍ଦ୍ର ବୋଷ ଓ ସ୍ୱାଧୀନତା ଆନ୍ଦୋଳନର ଅନ୍ୟ ବହୁ ନେତା, ଯେଉଁମାନଙ୍କ ତ୍ୟାଗ ତଥା ଆତ୍ମୋତ୍ସର୍ଗ ବିନା ଭାରତବର୍ଷ ସ୍ୱାଧୀନତାର ଆଲୋକ ଦେଖିବା ସମ୍ଭବପର ହୋଇପାରିନଥାନ୍ତା । ସେମାନଙ୍କ ନିକଟରେ ଆମ ଦେଶ ଚିର କୃତଜ୍ଞ । ଆଜି ତାଙ୍କରି ଯୋଗୁଁ ଭାରତବାସୀ ଅନ୍ୟ ବିଦେଶୀ ରାଷ୍ଟ୍ରଭଳି ତା'ର ବିଜୟୀ ପତାକା ଫର୍ ଫର୍ ହୋଇ ଉଡାଇ ପାରିଛି । ଏହା ବହୁଦିନ ଧରି ବ୍ରିଟିଶ ଶାସନାଧୀନ ହୋଇ ରହିବା ପରେ ଆମଦେଶ ଏହି ଦିବସରେ ବିଦେଶୀ କବଳରୁ ମୁକ୍ତିଲାଭ କରି ଏକ ସ୍ୱାଧୀନ ଓ ସାର୍ବଭୌମ ରାଷ୍ଟ୍ରରେ ପରିଣିତ ହୋଇଛି । ସୁଜଳା, ସୁଫଳା, ଶସ୍ୟ ଶ୍ୟାମଳା ବୀରପ୍ରସୂ ଭରତଭୂମି ବହୁବର୍ଷ ଧରି ପରାଧୀନତାର ନାଗଫାଶରେ ଆବଦ୍ଧ ହୋଇ ହରାଇ ବସିଥିଲା ତା'ର ସକଳ ଐତିହ୍ୟ ଓ ସକଳ ଗୌରବ । ଆକୁମାରୀ ହିମାଞ୍ଚଳ ଭାରତବର୍ଷର ଅଗଣିତ ଜନତାର ହୃଦୟରେ ସ୍ୱାଭିମାନୀ ଜାତୀୟ ଭାବ ଜାଗ୍ରତ କରି ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଏ ଦେଶ ହେଲା ସ୍ୱାଧୀନ । ଏହା ଧର୍ମ ନିରପେକ୍ଷ ସାର୍ବଭୌମ ଗଣତାନ୍ତ୍ରିକ ସମାଜବାଦୀ ରାଷ୍ଟ୍ର ଭାବରେ ଏ ଦେଶ ସମଗ୍ର ବିଶ୍ୱରେ ନିଜର ଗୌରବ ବୃଦ୍ଧି କଲା ।

ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ଏହି ସଂଗ୍ରାମରେ ଅହିଂସା ଓ ସତ୍ୟାଗ୍ରହ ଉପରେ ଆଧାରିତ ବିଶେଷ ଭୂମିକା ଗ୍ରହଣ କରିଥିଲା ସ୍ୱାଧୀନତା ସଂଗ୍ରାମରେ ଭାରତୀୟ ବୀରା ରମଣୀମାନଙ୍କର ଅବଦାନ । କାରଣ ଏହି ସଂଗ୍ରାମ ନିମନ୍ତେ ଆବଶ୍ୟକ ଥିଲା ନୈତିକ ଶକ୍ତି । ନାରୀ ହିଁ ଏହି ଶକ୍ତିର ଆଧାର । ତେଣୁ ଗାନ୍ଧିଜୀ କହିଥିଲେ ନାରୀମାନଙ୍କୁ ଅବଳା ବା ଦୁର୍ବଳା ବୋଲି ଭାବିବା କେବେବି ଉଚିତ ନୁହେଁ । ଯଦି ଶକ୍ତିର ଅର୍ଥନୈତିକ ଶକ୍ତି ତେବେ ପୁରୁଷମାନଙ୍କଠାରୁ ନାରୀମାନଙ୍କ ସ୍ଥାନ ଯେ ଉଚ୍ଚରେ, ଏହା ନିଃସନ୍ଦେହ । ଏହି ମାତୃ ଶକ୍ତିର ଅଭ୍ୟୁଦୟ ଘଟିଥିଲା ଭାରତର ସ୍ୱାଧୀନତା ସଂଗ୍ରାମରେ । ଘରର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ନରହି ଦେଶର ସ୍ୱାଧୀନତା ନିମନ୍ତେ ପ୍ରାଣବଳି ଦେବା ପାଇଁ ସେମାନେ ଆଗେଇ ଆସିଥିଲେ ।

ନାରୀ ଅବଳା, ଦୁର୍ବଳା, ପୁରୁଷ ହସ୍ତରେ କ୍ରୀଡା ପୁତ୍ତଳିକା ବା ପୁରୁଷର କେବଳ ଭୋଗ୍ୟ ବସ୍ତୁ ନୁହେଁ, ଏକଥାକୁ ଭାରତୀୟ ନାରୀ ସମାଜ ମିଥ୍ୟା ପ୍ରମାଣିତ କରିଦେଇଛି । ନାରୀ ଅବଳା ହୋଇପାରେ, ମାତ୍ର ଦୁର୍ବଳା ନୁହେଁ । ଏହି ସତ୍ୟତାକୁ ଭାରତୀୟ ନାରୀ ସମୟର କଷଟି ପଥରରେ ବାରମ୍ବାର ପରୀକ୍ଷିତ କରାଯାଇଛି । ସୁସ୍ଥ ସମାଜ ଗଠନ ନିମନ୍ତେ ଉଭୟ ନାରୀ ଏବଂ ପୁରୁଷର ଐକାନ୍ତିକ ଉଦ୍ୟମ ଆବଶ୍ୟକ । ନାରୀ ବିନା ପୁରୁଷ ଜୀବନରେ ପୂର୍ଣ୍ଣତା ଆସେନାହିଁ । ନାରୀ ଓ ପୁରୁଷ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ସଦୃଶ । ଆଗ କାଳରେ ନାରୀ ସମାଜର ସାମାଜିକ ଚଳଣିରେ ଚାରିକାନ୍ଥ ମଧ୍ୟରେ ସୀମିତ ରହୁଥିଲେ । କିନ୍ତୁ ଜୀବନର ବିନିମୟରେ ଦେଶର ମୁକ୍ତି ପାଇଁ ଅଗଣିତ ନରନାରୀ ଐକ୍ୟବଦ୍ଧ ହୋଇ ପ୍ରବଳ ପରାକ୍ରମୀ ବ୍ରିଟିଶମାନଙ୍କ ବିରୋଧରେ ଆନ୍ଦୋଳନ କରିଥିଲେ । ଭାରତମାତାକୁ ପରାଧୀନ ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ଏହି ଜାତୀୟ ଆନ୍ଦୋଳନରେ ଭାରତୀୟ ବୀରା ରମଣୀମାନଙ୍କର ଅବଦାନ ଅଦ୍ୱିତୀୟ । ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେବାର ବହୁ ପୂର୍ବରୁ ଓଡ଼ିଶାରେ ଆଦିବାସୀ ମହିଳାମାନେ ଇଂରେଜ ସରକାର ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ହୋଇଥିବା ପାରଳା ବିଦ୍ରୋହ ଏହାର ଅନ୍ୟତମ ଦୃଷ୍ଟାନ୍ତ । ୧୭୬୬ ମସିହାରେ ଗଞ୍ଜାମ ଯେତେବେଳେ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ପୁରସ୍କାର ସ୍ୱରୂପ ପ୍ରଦତ୍ତ ହେଲା, ଏହାର ପ୍ରଶାସନିକ କାର୍ଯ୍ୟ ସମ୍ଭାଳିବା ପାଇଁ କୀଟସ୍ ଫୋର୍ଡ ଗଞ୍ଜାମ ଆସିଥିଲେ । କିନ୍ତୁ ପାରଳାର ସ୍ୱାଧୀନଚେତା ରାଜା ନାରାୟଣ ଗଜପତି ଦେବ ଇଂରେଜମାନଙ୍କର ଅଯଥା ହସ୍ତକ୍ଷେପକୁ ସ୍ୱୀକାର ନକରି ଯୁଦ୍ଧ ଘୋଷଣା କରି ପରାସ୍ତ ହୋଇଥିଲେ । ପାରଳା ରାଜାଙ୍କ ପରାସ୍ତ ସତ୍ତ୍ୱେ ସ୍ୱାଧୀନଚେତା ପାଇକଗଣ ଦୀର୍ଘ ସତୁରି ବର୍ଷ ଯାଏ ଇଂରେଜ ସେନାଙ୍କୁ ପ୍ରତିହତ କରିଥିଲେ । ସ୍ୱାମୀଙ୍କ

ଆକସ୍ମିକ ମୃତ୍ୟୁ ପରେ ମଧ୍ୟ ହାରାମଣୀ ଦେବୀ ଇଂରେଜମାନଙ୍କ ବିରୋଧରେ ସଂଗ୍ରାମ ଅବ୍ୟାହତ ରଖିଥିଲେ । ଏହି ସମୟରେ ମାଲକାନଗିରିର କୋୟାରାଣୀ ବାଙ୍ଗରା ଦେବୀ କୋରାପୁଟର ଘଞ୍ଚ ଅରଣ୍ୟରେ ଇଂରେଜ ସେନା ସହିତ ଯୁଦ୍ଧ କରି ଇଂରେଜମାନଙ୍କୁ ବ୍ୟତିବ୍ୟସ୍ତ କରିଥିଲେ ।

ଭାରତର ବିଭିନ୍ନ ପ୍ରାନ୍ତରେ ଇଂରେଜ ବିରୋଧୀ ବିଦ୍ରୋହ ଆରମ୍ଭ ହେଲା । କିନ୍ତୁ ଏକତାର ଅଭାବରୁ ବିଦ୍ରୋହ ବିରାଟ ରୂପ ନେଇପାରୁନଥାଏ । ସେହିପରି ଏକ ଘଟଣା କିତୁର ଆଧୁନିକ କର୍ଣ୍ଣାଟକ ରାଜ୍ୟରେ ଘଟିଥିଲା । ନିଜ ରାଜ୍ୟକୁ ଇଂରେଜ ଆକ୍ରମଣରୁ ରକ୍ଷା କରିବା ପାଇଁ ରାଣୀ ଚିନ୍ନାମା ଇଂରେଜ ସୈନିକଙ୍କ ସହ ଲଢେଇ କରି ବନ୍ଦୀ ହେଲେ ଏବଂ ୧୮୨୪ ମସିହା ନଭେମ୍ବର ୩୦ ତାରିଖରେ ଦୁଃଖ ଓ ଯନ୍ତ୍ରଣାରେ ରାଣୀ ଦେହ ତ୍ୟାଗ କଲେ । ସେ ହେଉଛନ୍ତି ଭାରତର ପ୍ରଥମ ମହିଳା ଶହୀଦ୍ । ୧୮୫୭ ମସିହାରେ ଐତିହାସିକ ସିପାହୀ ବିଦ୍ରୋହରେ ଝାନ୍‌ସୀର ରାଣୀ ଲକ୍ଷ୍ମୀବାଈ ନିଜର ବୀରା ରମଣୀ ରୂପରେ ସଜାଇ ଫିରିଙ୍ଗି ଶାସନକୁ ଉପଯୁକ୍ତ ଜବାବ ଦେଇପାରିଥିଲେ । ଦେହରେ ସାଞ୍ଜୁ, ହାତରେ ଢାଲ ଓ ଖଣ୍ଡା ଧରି ସମର କ୍ଷେତ୍ରରେ ଯୁଦ୍ଧ କରିବାକୁ ଆଗେଇ ଯାଇଥିଲେ । ଶେଷ ପର୍ଯ୍ୟନ୍ତ ଲଢେଇ କରି ଇଂରେଜମାନଙ୍କ ଗୁଳିରେ ଆହତ ହେଲେ । ତାଙ୍କ ଦେହରକ୍ଷୀ ସାହସିନୀ ଝଲାକାରୀଙ୍କ ଅବଦାନ ମଧ୍ୟ କିଛି କମ୍ ନୁହେଁ । ଲକ୍ଷ୍ମୀବାଈଙ୍କୁ ନିଜ ପୋଷାକରେ ରାଜ୍ୟବାହାରକୁ ପଠାଇଦେଇ ଇଂରେଜମାନଙ୍କ ସହ ଲଢେଇ କରି ଫାଶୀ ପାଇଥିଲେ । ଉତ୍ତର ପ୍ରଦେଶର ରାୟବରେଲୀ ରାଜ୍ୟର ରାଜା ନାରାୟଣ ରାଓଙ୍କ କନ୍ୟା ତପସ୍ୱିନୀ ଅଳ୍ପ ବୟସରୁ ସ୍ୱାମୀହରା ଏବଂ ପିତୃହରା ହେବା ପରେ ବ୍ରିଟିଶ ସରକାରଙ୍କର ଚକ୍ଷୁଶୂଳ ହୋଇ ତ୍ରିଚିନା ପଲ୍ଲୀରେ ଫିରିଙ୍ଗି ସରକାର ଦ୍ୱାରା ନଜରବନ୍ଦୀ ହୋଇ ରହିଲେ । ସେଠାରୁ ଖଲାସ ହେବାପରେ ରାଣୀ ଲକ୍ଷ୍ମୀବାଈଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ନିଜକୁ ସିପାହୀ ବିଦ୍ରୋହର ମହାଯଜ୍ଞରେ ଝାସ ଦେବାକୁ ଆଗେଇ ଆସିଲେ । ଏହି ବୀରାରମଣୀ ନେପାଳରେ ଆତ୍ମଗୋପନ କରିବାଠାରୁ ଆରମ୍ଭ କରି କୋଲକାତାରେ ବିଦ୍ରୋହୀମାନଙ୍କୁ ଗୁପ୍ତରେ ଅସ୍ତ୍ରଶସ୍ତ୍ର ଯୋଗାଇବା ଆଦି କାର୍ଯ୍ୟମାନ କରି ବ୍ରିଟିଶ ସରକାରଙ୍କୁ ଚକିତ କରି ପକାଉଥିଲେ ।

ଯୁଗ ପୁରୁଷ ସ୍ୱାମୀ ବିବେକାନନ୍ଦଙ୍କର ଅନ୍ୟତମ ପ୍ରଧାନ ଶିଷ୍ୟା ଭଗିନୀ ନିବେଦିତା ଜଣେ ବିଦେଶିନୀ ମହିଳା ହେଲେ ମଧ୍ୟ ମାତ୍ର ୨୮ ବର୍ଷ ବୟସରେ ଭାରତ ଭୂମିରେ ପଦାର୍ପଣ କରି ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ନିଜକୁ ସାମିଲ କରାଇ ଜଣେ ବିପ୍ଲବିନୀର ପରିଚୟ ଦେଇପାରିଥିଲେ । ସେ ଅରବିନ୍ଦ ଘୋଷଙ୍କ ଦ୍ୱାରା ଗଠିତ ପଞ୍ଚବିପ୍ଳବୀ ପାର୍ଟିରେ ଜଣେ ପ୍ରମୁଖ ସଭ୍ୟ ଭାବେ କାର୍ଯ୍ୟ କରୁଥଲେ । ଭଗିନୀ ନିବେଦିତା ୧୯୦୫ ମସିହାରେ ବନାରସଠାରେ ଅନୁଷ୍ଠିତ ହୋଇଥିବା ଜାତୀୟ କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ । କେବଳ ଭଗିନୀ ନିବେଦିତା ନୁହଁନ୍ତି, ତାଙ୍କ ସହିତ ବୀଣା ଦାସ, କଳ୍ପନା ଯୋଶୀ, ଉଜ୍ଜ୍ୱଳା, ପ୍ରୀତିଲତା, ଓ୍ୱାଡେକର, ମାଡାମ କାମାଙ୍କ ପରି ବିପ୍ଳବିନୀଙ୍କର ବୈପ୍ଳବିକ କାହାଣୀମାନ ମନରେ ଅପୂର୍ବ ଜାଗରଣ ସୃଷ୍ଟି କରିଥାଏ । ଗୋଟିଏ ଦରିଦ୍ର ପରିବାରରେ ଜନ୍ମ ହୋଇ ମଧ୍ୟ ପ୍ରୀତିଲତା ଓ୍ୱାଡେକରଙ୍କ ମନ କେତେବେଳେ ଦରିଦ୍ର ନଥାଏ । ଏହା ତାଙ୍କର ଛାତ୍ରୀ ଅବସ୍ଥାରୁ ଜଣା ପଡିଥିଲା । ନିଷ୍ଠାର ସହିତ ଦେଶ ମାତୃକାର ସେବା କରିବା ଥିଲା ତାଙ୍କ ଜୀବନର ଲକ୍ଷ୍ୟ । ୧୯୧୧ ମସିହାରେ ଚିଟାଗଙ୍ଗଠାରେ ଜନ୍ମଲାଭ କରିଥିବା ପ୍ରୀତିଲତା ଢାକା ବିଶ୍ୱବିଦ୍ୟାଳୟରୁ ଉଚ୍ଚଶିକ୍ଷା ଲାଭ କରିବା କାଳରେ ସେଠାରେ ଗଢି ଉଠିଥିବା ସଂଘ "ଦୀପାଳି ସଂଘ"ର ଜଣେ ସକ୍ରିୟ ସଭ୍ୟା ଭାବରେ ନାନା ବୈପ୍ଳବିକ କାର୍ଯ୍ୟମାନ ସଙ୍ଗଠିତ କରୁଥିଲେ । ଏପରିକି ବ୍ରିଟିଶ ଶାସନର କ୍ରୁର ଦୃଷ୍ଟିରେ ପଡି ତାଙ୍କୁ ଧରାଇଦେଲେ ପାଞ୍ଚଶହ ଟଙ୍କା ପୁରସ୍କାର ଦିଆଯିବ ବୋଲି ଘୋଷଣା କରାଯାଇଥିଲା । ସେହିପରି ସୋଭିଏତ୍ ଦେଶର ନେହେରୁ ପୁରସ୍କାର ବିଜୟିନୀ ଭାରତର ପ୍ରଖ୍ୟାତ ସାମ୍ୟବାଦୀ ଶ୍ରୀ ପି.ସି. ଯୋଶୀଙ୍କର ସହଧର୍ମିଣୀ ଶ୍ରୀମତୀ କଳ୍ପନା ଯୋଶୀ ମାତ୍ର ୧୪ବର୍ଷ ବୟସରୁ ବିଭିନ୍ନ ଉଗ୍ରବାଦୀ କାର୍ଯ୍ୟ କଳାପ ସହିତ ସମ୍ପୃକ୍ତ ରହି ନାନା ଚମକପ୍ରଦ ଘଟଣାମାନ ଘଟାଇଥିଲେ । ଗାନ୍ଧିଜୀଙ୍କ ଆହ୍ୱାନରେ ସମସ୍ତଙ୍କୁ ଉଦ୍‌ବୁଦ୍ଧ ହୋଇ ଆବାଳ ବୃଦ୍ଧ ବନିତା ଏହି ସଂଗ୍ରାମରେ ଝାସ ଦେଲେ । ନାରୀ ସମାଜ ସାମାଜିକ ବନ୍ଧନ ତଥା ରକ୍ଷଣଶୀଳତାର ବେଡିକୁ ଛିନ୍ନ କରି ସଂଗ୍ରାମର ଲେଲିହାନ ଅଗ୍ନିଶିଖାରେ ଡେଇଁ ପଡିଲେ । ବୀରଙ୍ଗନା ଝାନ୍‌ସୀ ରାଣୀ ଲକ୍ଷ୍ମୀବାଈ, ଭଗିନୀ ନିବେଦିତା, ସରୋଜିନୀ ନାଇଡୁ, ବିଜୟ ଲକ୍ଷ୍ମୀ ପଣ୍ଡିତଙ୍କ ଭଳି ବୀରା ରମଣୀମାନେ ବ୍ରିଟିଶ୍ ଶାସନ ବିରୋଧରେ ସଂଗ୍ରାମ ଡାକରା ଦେଇଥିଲେ । ଓଡ଼ିଶାର କୋରାପୁଟ ଜିଲ୍ଲା ଖର ପାର୍ବତୀ ନାମକ ଜଣେ ସ୍ୱାଧୀନଚେତା ବଣ୍ଡା ମହିଳା ଇଂରେଜମାନଙ୍କ ସହିତ ଗରିଲା ଯୁଦ୍ଧ କରି ଇଂରେଜମାନଙ୍କୁ ଅନେକ ଅସୁବିଧାରେ ପକାଇଥିଲେ । ପରିଶେଷରେ ସେ ୧୯୧୬ ମସିହାରେ ଦେଶ ପାଇଁ ଶହୀଦ୍ ହୋଇଥିଲେ ।

ରମାଦେବୀଙ୍କ ସହ ଓଡ଼ିଶାରେ ସମାଜ ସଂସ୍କାର ଓ ସ୍ୱାଧୀନତା ସଂଗ୍ରାମ ପାଇଁ କାର୍ଯ୍ୟରତା ଅନ୍ୟ ଜଣେ ମହିୟସୀ ମହିଳା ଥିଲେ ମାଳତୀ ଚୌଧୁରୀ । ସେ ଥିଲେ ଓଡ଼ିଶାର ଅନ୍ୟତମ କଂଗ୍ରେସ ନେତା ନବକୃଷ୍ଣ ଚୌଧୁରୀଙ୍କ ସହଧର୍ମିଣୀ । ୧୯୧୭ ମସିହାରେ ଋଷିଆରେ ସଂଘଟିତ ହୋଇଥିବା 'ବଲ୍‌ସେଭିକ୍ ବିପ୍ଳବ' ମାଳତୀଦେବୀଙ୍କୁ ବହୁଭାବରେ ପ୍ରଭାବିତ କରିଥିଲା । ନିଜର କୌଣସି ବ୍ୟକ୍ତିଗତ ସମ୍ପତ୍ତି ନରଖିବାକୁ ସେ ଶପଥ ନେଇଥିଲେ । ସେ ତାଙ୍କର ଅଳଙ୍କାର ଓ ଅଧିକ ଲୁଗାପଟା ଦେଶ ପାଇଁ ଦାନ କରିଦେଇଥିଲେ । ୧୯୨୧ ମସିହା ମାର୍ଚ୍ଚ ୨୧ ତାରିଖରେ ଗାନ୍ଧିଜୀ ଯେତେବେଳେ ଓଡ଼ିଶା ଆସିଲେ ସେହି ମାର୍ଚ୍ଚ ମାସ ୨୪ ତାରିଖରେ କାଠଯୋଡି ନଦୀ କୂଳରେ ଏକ ସଭାରେ ଜନସାଧାରଣଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ ଦେଶ ମାତୃକାର ସେବାରେ ନାରୀମାନେ ନିଜକୁ ଉତ୍ସର୍ଗ କରନ୍ତୁ । ନାରୀ ଶକ୍ତି ଏକ ବୃହତ ଶକ୍ତି, ସେମାନେ ସ୍ୱାଧୀନତାକୁ ଓଡ଼ିଶା ମାଟିରେ ଆଗେଇ ନିଅନ୍ତୁ ବୋଲି ଆହ୍ୱାନ ଦେଇଥିଲେ ଏବଂ ନାରୀମାନେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ଖଦୀ ପିନ୍ଧିବା ପାଇଁ ତଥା ସେମାନଙ୍କର ଗହଣାଗାଣ୍ଠି ଦେଶସେବା ନିମନ୍ତେ ଦାନ କରିବା ପାଇଁ ଆହ୍ୱାନ ଦେଇଥିଲେ । ତାଙ୍କ ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ବହୁଳ ଭାବରେ ଅନୁପ୍ରାଣିତ ହୋଇ ରମାଦେବୀ, ସରଳାଦେବୀ, ଶୈଳବାଳା ଦେବୀ, ରେବା ରାୟ, କୁନ୍ତଳା କୁମାରୀ ସାବତ ପ୍ରମୁଖ ଅଣ୍ଟା ଭିଡ଼ିଥିଲେ । ଏକ ମହିଳା ବନ୍ଧୁ ସମିତି ଗଠନ କଲେ । ପରେ ସରଳାଦେବୀଙ୍କ ପ୍ରଚେଷ୍ଟାରେ ଉତ୍କଳ ସମ୍ମିଳନୀ ଗଢିଉଠିଥିଲା। କିଶୋରମଣି ଦେବୀ, ହୈମବତୀ ଦେବୀ ଓ ରସାମଣୀ ଦେବୀ ଏଥିରେ ଅଂଶଗ୍ରହଣ କରିଥିଲେ । ସେତେବେଳେ ଓଡିଶା ପ୍ରଥା ତୀବ୍ର ଭାବରେ ପ୍ରଚଳିତ ଥିଲା । ରକ୍ଷଣଶୀଳତା ପ୍ରଥା କଡାକଡି ଥିଲା । ତଥାପି ସେମାନେ ଘରୁବାହାରି ରମାଦେବୀ ଓ ସରଳାଦେବୀଙ୍କ ନେତୃତ୍ୱରେ ପ୍ରାୟ ୫୦ ଜଣ ମହିଳା ସ୍ୱାଧୀନତା ସଂଗ୍ରାମରେ ଝାସ ଦେବା ପାଇଁ ଶପଥ ନେଇଥିଲେ । ଗାନ୍ଧିଜୀଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ନାରୀ କବି କୁନ୍ତଳା କୁମାରୀ ଦେଶାତ୍ମବୋଧ କବିତା ରଚନା କରି ନାରୀ ସଂଗ୍ରାମୀମାନଙ୍କ ମନୋବଳ ଦୃଢ କରିଥିଲେ ।

ଭାରତର ସ୍ୱାଧୀନତା ସଂଗ୍ରାମରେ ଆଦିବାସୀ ଅଧ୍ୟୁଷିତ ଫୁଲବାଣୀ, କୋରାପୁଟରେ ବିଶେଷ ଭାବେ ପଡିଥିଲା କନ୍ଧ ରମଣୀମାନେ ବ୍ରିଟିଶ ସୈନ୍ୟମାନଙ୍କ ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ସେମାନେ ନିଜେ କଳାରେ ନିଆଁଚେକ ଦେଇ ମୁହଁ ବିକୃତ କରି ସତୀତ୍ୱ ରକ୍ଷା କରୁଥିଲେ । କନ୍ଧମାଳ, କୋରାପୁଟରେ ସେହି ଆଦିବାସୀ ନାରୀ ଜାତିର ଶୌର୍ଯ୍ୟ ତଥା ବଳିଦାନର କାହାଣୀ ଆଜି ମଧ୍ୟ ଲୋକଲୋଚନର ଅନ୍ତରାଳରେ ରହିଯାଇଛି । ୧୯୨୧ ମସିହାରେ ମହାମାନବ ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇ ଇଂରେଜମାନଙ୍କୁ କୌଣସି କ୍ଷେତ୍ରରେ ସହଯୋଗ ନକରିବା ଏ ଆନ୍ଦୋଳନର ମୁଖ୍ୟ ଉଦ୍ଦେଶ୍ୟ । ଆନ୍ଦୋଳନର ପ୍ରଚାର ଓ ପ୍ରସାର ପାଇଁ ଗାନ୍ଧିଜୀ ୧୯୨୧ ମସିହା ମାର୍ଚ୍ଚମାସରେ ଓଡ଼ିଶା ଆସି ତାଙ୍କ ସ୍ତ୍ରୀ କସ୍ତୁରବା ଗାନ୍ଧୀଙ୍କ ସହିତ ଛଅଦିନ ରହଣି ଅବସରରେ କଟକର କଦମ୍ ରସୁଲଠାରେ ସ୍ୱତନ୍ତ୍ର ଭାବେ ଓଡ଼ିଶାର ମହିଳାମାନଙ୍କୁ ଏକ ସଭାରେ ଉଦ୍‌ବୋଧନ ଦେଇଥିଲେ । ଗାନ୍ଧିଜୀଙ୍କ ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ରମାଦେବୀ ଏକ କିଲୋ ଓଜନର ସ୍ୱର୍ଣ୍ଣ ଅଳଙ୍କାର ସତ୍ୟାଗ୍ରହ ଆନ୍ଦୋଳନ ପାଇଁ ଦାନ କରିଥିଲେ । ୧୯୨୪ ମସିହାରେ ଓଡିଶାର ପ୍ରାଦେଶିକ କଂଗ୍ରେସ କମିଟିର ଅଧିବେଶନରେ ସରୋଜିନୀ ଚୌଧୁରୀ, ହୈମବତୀ ଦେବୀ ଓ ରମାଦେବୀ ପ୍ରମୁଖ ମହିଳାଙ୍କ ଉପସ୍ଥିତିରେ ଓଡ଼ିଶାର ମହିଳାମାନଙ୍କର ଗଭୀର ପ୍ରଭାବ ପକାଇଥିଲା। ଏଥିରେ ପ୍ରେରିତ ହୋଇ ରାସମଣି ଦେଈ ଓ ବ୍ରହ୍ମପୁର ସ୍ୱରାଜ ଆଶ୍ରମରେ ଉତ୍କଳନାରୀ ସମ୍ମିଳନୀର ପ୍ରଥମ ଅଧିବେଶନ ଡକାଇଥିଲେ । ଗଞ୍ଜାମରେ ନାରୀମାନଙ୍କ ମଧ୍ୟରେ ଏକ ନବଜାଗରଣ ଦେଖାଦେଇଥିଲା । ୧୯୨୫ ମସିହାରେ ନଭେମ୍ବର ୭ତାରିଖରେ ଗାନ୍ଧିଜୀଙ୍କ ଶିଷ୍ୟତ୍ୱ ଗ୍ରହଣ କରିବା ପାଇଁ ବ୍ରିଟିଶ ଆଡମିରାଲ କନ୍ୟା ମାଜେଲିନ ସ୍ଲେଜ ଅହମ୍ମଦାବାଦ୍‌କୁ ଆସିଥିଲେ । ଗାନ୍ଧିଜୀ ତାଙ୍କୁ ମୀରା ବୋଲି ସମ୍ବୋଧନ କରିବା ପରେ ସେ ମୀରା ନାମରେ ହିଁ ପରିଚିତ ହୋଇଥିଲେ ।

୧୯୨୭ ମସିହାରେ ଗାନ୍ଧିଜୀ ଓଡ଼ିଶା ପରିଦର୍ଶନରେ ଆସିଥିବା ବେଳେ ଉତ୍କଳୀୟ ମହିଳାଗଣ ଅତ୍ୟନ୍ତ ସକ୍ରିୟ ଭାବରେ ତାଙ୍କ ସହିତ ଯୋଗ ଦେଇଥିଲେ । ୧୯୩୦ ମସିହା ଜାନୁଆରୀ ୨୬ ତାରିଖ ପୂର୍ଣ୍ଣ ସ୍ୱରାଜ ଦିବସ ପାଳନ ପାଇଁ ଇଂରେଜ ସରକାର ଅନୁମତି ନଦେବାରୁ ରମାଦେବୀ ଏଥିପ୍ରତି ଭ୍ରୂକ୍ଷେପ ନକରି ନିଜ ବାସଭବନରେ ଏହି ସଭା ଆଗତ କରିଥିଲେ । ୧୯୩୦ ମସିହାରେ ବ୍ରିଟିଶ ସରକାରଙ୍କର ଲୁଣ ଆଇନ୍ ପ୍ରତ୍ୟାଖାନ କରି ଗାନ୍ଧିଜୀ ଅହମଦାବାଦର ସାବରମତି ଆଶ୍ରମଠାରୁ କେତେକ ଭାରତୀୟଙ୍କୁ ନେଇ ବମ୍ବେ (ମୁମ୍ବାଇ) ନିକଟବର୍ତ୍ତୀ ସମୁଦ୍ରକୂଳରେ ଦାଣ୍ଡି ନାମକ ସ୍ଥାନରେ ପହଞ୍ଚିଥିଲେ । ଓଡ଼ିଶାରେ ମଧ ଏହି ଆନ୍ଦୋଳନରେ ପ୍ରଭାବ ପଡିଥିଲା । ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡି ଲବଣ ସତ୍ୟାଗ୍ରହ ସମଗ୍ର ଦେଶରେ ଦ୍ୱିତୀୟ ସ୍ଥାନ ଅଧିକାର

କରିଥିଲା । ଏଥିରେ ବହୁ କର୍ମୀ ଓ ନାରୀ ସଂଗ୍ରାମୀ ଅଂଶ ଗ୍ରହଣ କରି କାରାବରଣ କରିଥିଲେ । ୧୯୩୦ ମସିହା ଏପ୍ରିଲ ୨୭ ତାରିଖ ଦିନ ନାରୀ ସତ୍ୟାଗ୍ରହୀମାନେ ସମୁଦ୍ର କୂଳରୁ ଲୁଣ ନେଇ ବାଲେଶ୍ୱରରେ ପହଞ୍ଚି ଥିଲେ । ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡି ଓ ଶ୍ରୀଜଙ୍ଗାଠାରେ ଲବଣ ସତ୍ୟାଗ୍ରହର ସଫଳତା ପରେ ଅବିଭକ୍ତ କଟକ ଜିଲ୍ଲାର କୁଜଙ୍ଗ ଓ କାଳୁଆପାଟଣାଠାରେ ମଧ୍ୟ ଲୁଣ ମରାଯାଇଥିଲା । ଗଞ୍ଜାମ ଜିଲ୍ଲାର ହୁମ୍ମା, ରମ୍ଭା, ଗୋପାଳପୁର, ଗଞ୍ଜାମ, ପୁରୀ ଜିଲ୍ଲାର ଅସ୍ତରଙ୍ଗ ଓ ମରିଚପୁରଠାରେ ମଧ୍ୟ ଲବଣ ସତ୍ୟାଗ୍ରହ ଆନ୍ଦୋଳନ ଦେଖାଦେଇଥିଲା । ଓଡ଼ିଶା ସମସ୍ତ ଉପକୂଳବର୍ତ୍ତୀ ଅଞ୍ଚଳରେ ଲବଣ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇ ବହୁତ କାରବାରଣ କଲେ ଓ ଅନେକ ବ୍ୟକ୍ତି ଇଂରେଜ ପୋଲିସମାନଙ୍କ ନିର୍ମମ ମାଡରେ ମୃତ୍ୟୁବରଣ କଲେ । ୧୯୩୦-୩୧ ମସିହାରେ ହରିଜନ ଆନ୍ଦୋଳନ ଚାଲିଲା । ଗାନ୍ଧିଜୀଙ୍କ ଆହ୍ୱାନରେ ଓଡ଼ିଶାର ରମାଦେବୀ, ମାଳତୀ ଚୌଧୁରୀ, ଅନ୍ନପୂର୍ଣ୍ଣା ଦେବୀ ହରିଜନ ବସ୍ତିକୁ ଯାଇ ନାରୀମାନଙ୍କ ହୃଦୟରେ ଦୃଢତା ଓ ବିଶ୍ୱାସ ଆଣିବା ପାଇଁ ଚେଷ୍ଟା ଚଳାଇଥିଲେ । ଜଗତସିଂହପୁରରେ ନିଶାମଣି ଦେବୀ ଗାନ୍ଧିଜୀଙ୍କ 'ଖଟି ଖାଅ କାଟି ପିନ୍ଧ' ଆହ୍ୱାନରେ ଅନୁପ୍ରାଣିତ ହୋଇ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । କଣ୍ଟିଲୋରେ ଗାନ୍ଧିଜୀ ପ୍ରଥମ କରି ସୂତାକଟା କେନ୍ଦ୍ର ସ୍ଥାପନ କରି ସୂତାକାଟି ଅନ୍ୟମାନଙ୍କୁ କାଟି ପିନ୍ଧିବା ପାଇଁ ଉତ୍ସାହିତ କରିଥିଲେ । ବାଲେଶ୍ୱର ଜିଲ୍ଲାର ଗୋଦାବରୀ ଦେବୀ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଗାନ୍ଧିଜୀଙ୍କୁ ଓଡ଼ିଆ ଶିକ୍ଷା ଦେଇଥିଲେ । ପଶ୍ଚିମ ଓଡ଼ିଶାର ମା' ପାର୍ବତୀ ଗିରି ଓ ପ୍ରଭାବତୀ ଦେବୀଙ୍କ ଅବଦାନ ମଧ୍ୟ କିଛି କମ୍ ନୁହେଁ । ୧୯୩୧ ମସିହା ମାର୍ଚ୍ଚ ୪ତାରିଖ ଦିନ ଗାନ୍ଧିଜୀ ଇରଉଇନ ଚୁକ୍ତିପରେ ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରଖାଗଲା । ସତ୍ୟାଗ୍ରହୀ ବନ୍ଦୀମାନଙ୍କୁ ମୁକ୍ତି କରି ଦିଆଗଲା ।

ଭାରତର ମୁକ୍ତି ସଂଗ୍ରାମରେ ଅନେକ କିଶୋରୀ ମଧ୍ୟ ଅଂଶଗ୍ରହଣ କରିଥିଲେ । ୧୯୩୨ ମସିହା ଡିସେମ୍ବର ୨୪ ତାରିଖରେ ବଙ୍ଗଳା ଚଟ୍ଟଗ୍ରାମର ଶାନ୍ତି ଓ ସୁନୀତି ଦୁଇଜଣ ପନ୍ଦର ବର୍ଷୀୟା ବାଳିକା ଛଦ୍ମବେଶରେ ନୁହେଁ ଯାଇ ଗୋରା ମାଜିଷ୍ଟ୍ରେଟ ସିଜିବି ଷ୍ଟିଭେନ୍ସଙ୍କୁ ଗୁଳି କରି ହତ୍ୟା କରିଥିଲେ । ସେହି ଦୋଷରେ ସେମାନଙ୍କୁ ବୟସ କମ୍ ଥିବାରୁ ଫାଶିଦଣ୍ଡ ନଦେଇ ଆବଜୀବନ କାରାଦଣ୍ଡରେ ଦଣ୍ଡିତ କରାଯାଇଥିଲା । ୧୯୩୨ ମସିହାରେ ପୁରୀଠାରେ ଅନୁଷ୍ଠିତ ଅଖିଳ ଭାରତ କଂଗ୍ରେସ ଅଧିବେଶନରେ ଶ୍ରୀମତୀ ହେମଲତା ଦେବୀ ଯୋଗଦେଇଥିଲେ । ବୋଇରାଣୀଠାରେ ଆଇନ୍ ଅମାନ୍ୟ କରି ସେ ଗିରଫ ହୋଇଥିଲେ । ତା'ପରେ ସରଳା ଦେବୀଙ୍କୁ ଗିରଫ କରାଯାଇ ଭେଲୋର ଜେଲ୍‌କୁ ନିଆଯାଇଥିଲା । ଶହୀଦ୍ ଖୁଦିରାମଙ୍କ ପରି ବଙ୍ଗ ପ୍ରଦେଶର ବିପ୍ଳବିନୀ ବୀଣାଦାସ ୧୯୩୨ ମସିହା ଫେବୃଆରୀ ମାସ ୬ତାରିଖ ଦିନ ତତ୍କାଳୀନ ରାଜ୍ୟପାଳ ଏକ ସାଂସ୍କୃତିକ କାର୍ଯ୍ୟକ୍ରମରେ ଯୋଗଦେଇ ସମବେତ ଦର୍ଶକଙ୍କୁ ଉଦ୍‌ବୋଧନ ଦେବାକୁ ଆରମ୍ଭ କଲାବେଳେ ପୂର୍ବ ନିର୍ଦ୍ଧାରିତ ଯୋଜନା ଅନୁଯାୟୀ ରାଜ୍ୟପାଳଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ତାଙ୍କୁ ଲକ୍ଷ୍ୟ କରି ନିଜର ଅଙ୍ଗବାସ ମଧ୍ୟରେ ଲୁକାୟିତ ରଖିଥିବା ବନ୍ଧୁକରୁ ଗୁଳି ଫୁଟାଇବାକୁ ଆରମ୍ଭ କଲେ । ଅବଶ୍ୟ ବୀଣା ଦାସଙ୍କର ଲକ୍ଷ୍ୟଭେଦ ହୋଇପାରି ନଥିଲା । ଏହି ଘଟଣାରେ ଅଭିଯୁକ୍ତ ହୋଇ ତାଙ୍କୁ ୯ବର୍ଷ ସଶ୍ରମ କାରାଦଣ୍ଡ ଭୋଗ କରିବାକୁ ପଡିଥିଲା । ବ୍ରହ୍ମପୁରରେ ଜେଭି ନାରାୟଣଙ୍କ ନେତୃତ୍ୱରେ କେତେଜଣ ମହାତଳ ସତ୍ୟାଗ୍ରହୀ ମଦ ଦୋକାନ ସମ୍ମୁଖରେ ପିକେଟିଂ କରି ଇଂରେଜମାନଙ୍କ ଦ୍ୱାରା ଗିରଫ ହୋଇଥିଲେ । ୧୯୩୪ ମସିହାରେ ଗାନ୍ଧିଜୀଙ୍କର ଓଡ଼ିଶାରେ ଯେଉଁ ଐତିହାସିକ ପଦଯାତ୍ରା ହୋଇଥିଲା, ସେଥିରେ ରମାଦେବୀ ଅଗ୍ରଣୀ ଥିଲେ ମଧ୍ୟ ତାଙ୍କୁ ଚେମି, ମଙ୍ଗଳା, ସୁଶୀଳ, ଗୋଦାବରୀ, ଶୋଭା ଓ ତୁଳସୀ ଦେବୀ ପ୍ରମୁଖ ନାରୀଗଣ ସହଯୋଗ କରିଥିଲେ । ୧୯୪୧ ମସିହାରେ ବ୍ୟକ୍ତିଗତ ସତ୍ୟାଗ୍ରହ ହୋଇଥିଲା । ଭାରତବର୍ଷର ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଇଂରେଜମାନଙ୍କ ସପକ୍ଷରେ ନାହାନ୍ତି ବୋଲି ସୂଚାଇ ଦେବା ବ୍ୟକ୍ତିଗତ ସତ୍ୟାଗ୍ରହର ଉଦ୍ଦେଶ୍ୟ । ଏହି ବ୍ୟକ୍ତିଗତ ସତ୍ୟାଗ୍ରହର ପ୍ରଥମ ବ୍ୟକ୍ତିଭାବରେ ଗାନ୍ଧିଜୀ ବିନୋଭା ଭାବେଙ୍କୁ ମନୋନୀତ କରିଥିଲେ । ଯୁଦ୍ଧ ବିରୋଧରେ ପ୍ରଚାର କରି ବିନୋଭା ବ୍ୟକ୍ତିଗତ ନେତୃତ୍ୱ ନେଇ ଶେଷରେ କାରାଗାରାରେ ବନ୍ଦୀ ହେଲେ । ୧୯୪୨ ମସିହାରେ ଭାରତଛାଡ ଆନ୍ଦୋଳନ ହୋଇଥିଲା । ଇଂରେଜମାନଙ୍କୁ ଭାରତଛାଡି ଚାଲିଯିବା ପାଇଁ ଦାବି କରିଥିଲେ - ହେ ଇଂରେଜ ସରକାର ତୁମେ ଭାରତ ଛାଡି ଚାଲିଯାଅ । ଆମ କଥା ଆମେ ବୁଝିବୁ । ତତ୍‌ପରେ ଜାତୀୟ କଂଗ୍ରେସ ନେତାମାନେ ଇଂରେଜ ସରକାରଙ୍କ ଦ୍ୱାରା ବନ୍ଦୀ ହୋଇଥିଲେ । ନେତାଜୀ ସୁଭାଷ ଚନ୍ଦ୍ର ବୋଷ କଟକ ସହରରେ ଜନ୍ମଗ୍ରହଣ କରି ନିଜର ମେଧା ଓ ଧୀଶକ୍ତି ବଳରେ ଇଣ୍ଡିଆନ ସିଭିଲ୍ ପରୀକ୍ଷାରେ ଦକ୍ଷତାର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ ମଧ୍ୟ ଚାକିରିରେ ଯୋଗନଦେଇ ଦେଶ ମାତୃକାର ସେବା ପାଇଁ ନିଜକୁ ଉତ୍ସର୍ଗ କରିଥିଲେ । ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ନୀତିରେ କାର୍ଯ୍ୟକରି ଦେବା ପାଇଁ ସମସ୍ତ ତ୍ୟାଗ, କଷ୍ଟ, ଯନ୍ତ୍ରଣା

ସହ୍ୟ କରି ସଂଗ୍ରାମର ସଫଳତା ଉପରେ ବିଶ୍ୱାସ କରୁଥିଲେ । ଗାନ୍ଧୀଙ୍କ ନୀତି ଅହିଂସା ନିରସ୍ତ ହେଲେ ନେତାଜୀଙ୍କ ନୀତି ହିଂସାତ୍ମକ ସଶସ୍ତ୍ର । ନେତାଜୀ ନିଜର ବ୍ୟକ୍ତିତ୍ୱ ବଳରେ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ହୋଇପାରିଥିଲେ । ମାତ୍ର ଗାନ୍ଧିଜୀଙ୍କୁ ସମର୍ଥନ କରୁଥିବା ବ୍ୟକ୍ତିମାନେ ନେତାଜୀ ସମର୍ଥନ ନକରିବାରୁ ତ୍ରିପୁରା ଅଧିବେଶନରେ କଂଗ୍ରେସ ସଭାପତି ପଦରୁ ଇସ୍ତଫା ଦେଇଥିଲେ । ବ୍ରିଟିଶମାନେ ସତର୍କତା ଅବଲମ୍ବନ କରିବା ସତ୍ତ୍ୱେ ଗୋଟିଏ ଫାର୍ସୀ ମୁସଲମାନ ବେଶରେ ଭାରତ ଛାଡି ଚାଲିଯାଇଥିଲେ । ଭାରତର ସ୍ୱାଧୀନତା ପାଇଁ ଇଟାଲୀ, ଜର୍ମାନୀ ପ୍ରଭୃତି ବୈଦେଶିକ ସୈନ୍ୟଶକ୍ତିର ସାହାଯ୍ୟ ଚାହିଁଥିଲେ । ୧୯୪୩ ମସିହା ଜୁନ୍ ୪ତାରିଖରେ ସିଙ୍ଗାପୁରରେ ଆଜାଦ୍‌ହିନ୍ଦ୍ ଫୌଜର ନେତୃତ୍ୱ ନେଲେ । ପରେ ପ୍ରଥମେ ଭାରତର 'ଆଣ୍ଡାମାନ ଓ ନିକୋବର' ଦ୍ୱୀପପୁଞ୍ଜ ଅଧିକାର କରି 'ଶହୀଦ୍ ଓ ସ୍ୱରାଜ' ନାମରେ ନାମିତ କଲେ ।

ବିଶ୍ୱଶାନ୍ତି ପାଇଁ ଜୀବନ ସାରା ସଂଗ୍ରାମ କରି ଲେନିନ୍ ପୁରସ୍କାର ପ୍ରାପ୍ତ ତଥା ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଆସଫ ଅଲ୍ଲୀଙ୍କ ସହଧର୍ମିଣୀ ଅରୁଣା ଆସଫ ଅଲ୍ଲୀ ନିଜର ତ୍ୟାଗପୂତ ଜୀବନ ତଥା ନିରବଚ୍ଛିନ୍ନ ନିଃସ୍ୱାର୍ଥପର ସାଧନା ପାଇଁ କେବଳ ଭାରତୀୟ ଜନମାନସରେ ନୁହେଁ, ସମଗ୍ର ବିଶ୍ୱବାସୀଙ୍କ ନିକଟରେ ଆଦରଣୀୟା ତଥା ବନ୍ଦନୀୟା ହୋଇପାରିଛନ୍ତି । ଗାନ୍ଧିଜୀ ଆହ୍ୱାନରେ ନିଜକୁ ହଜାଇ ଦେଇଥିବା ଏହି ମହିୟସୀ ମହିଳା ୧୯୪୨ ମସିହା ଭାରତ ଛାଡ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଏହି ବିପ୍ଳବିନୀଙ୍କୁ ଜୀବନ୍ତ କିମ୍ବା ମୃତାବସ୍ଥାରେ ଧରାଇ ଦେଲେ ୫ହଜାର ଟଙ୍କା ପୁରସ୍କାର ଦିଆଯିବ ବୋଲି ତତ୍କାଳୀନ ପ୍ରଶାସନ ଘୋଷଣା କରିଥିଲେ । ଅରୁଣାଙ୍କର ଭଗ୍ନ ସ୍ୱାସ୍ଥ୍ୟ ଯୋଗୁଁ ସରକାରଙ୍କ ନିକଟରେ ଆତ୍ମସମର୍ପଣ କରିବା ପାଇଁ ଗାନ୍ଧିଜୀ ପ୍ରବର୍ତ୍ତାଇଥିଲେ ମଧ୍ୟ ମୃତ୍ୟୁ ଅପେକ୍ଷା ସମ୍ମାନକୁ ଅଧିକ ପସନ୍ଦ କରନ୍ତି ବୋଲି ନମ୍ରତାର ସହିତ କହି ବାପୁଜୀଙ୍କ ଉପଦେଶକୁ ଗ୍ରହଣ କରିନଥିଲେ । ୧୯୪୨ ମସିହା ଭାରତଛାଡ ଆନ୍ଦୋଳନର ମହାମନ୍ତ୍ର 'କର ବା ମର'ରେ ଦୀକ୍ଷିତ ହୋଇ ମାଳତୀ ଚୌଧୁରୀ ବମ୍ବେ (ମୁମ୍ବାଇ)ରୁ ଓଡ଼ିଶା ଫେରିବା ପରେ ଇଂରେଜ ସରକାର ତାଙ୍କୁ ଗିରଫ କରିଥିଲେ ।

ଭାରତ ବିଭିନ୍ନ ପ୍ରାନ୍ତରୁ ଆଉ କେତେଜଣ ମହିଳା ଦେଶ ସେବାରେ ଲିପ୍ତ ରହି ଶହୀଦ ହୋଇଛନ୍ତି । ସେହି ବୀରାଙ୍ଗନାମାନଙ୍କର ତ୍ୟାଗ ଓ ନିଷ୍ଠାର ତୁଳନା ନାହିଁ । ମହାରାଷ୍ଟ୍ରର ଶ୍ରୀମତୀ ଗଙ୍ଗୁବାଈ, ଲକ୍ଷ୍ମୀବାଈ, ଗୁଜରାଟର ଶ୍ରୀମତୀ କସ୍ତୁରବା ଗାନ୍ଧୀ ଲିଳାବତୀ ଜେଠା, ବଙ୍ଗର ଜ୍ୟୋତିର୍ମୟୀ ଗାଙ୍ଗୁଲି, ବୀଣା ଦାସ, ଉର୍ମିଳା ବାଳା ପରିୟା, କୁମାରୀ ପ୍ରତିଲତା, ମାତଙ୍ଗିନୀ ହାଜରା, ନବୀବାଳା ଦେବୀ ଓ ଦୁଇଜଣ ବାଳିକା ଶାନ୍ତି ଓ ସୁନୀତି । ପ୍ରୀତିଲତା ହେଉଛନ୍ତି କ୍ରାନ୍ତିକାରୀ ମହିଳାଙ୍କ ମଧ୍ୟରେ ସର୍ବପ୍ରଥମ ଶହୀଦ୍ । ଉତ୍ତରପ୍ରଦେଶର ଶ୍ରୀମତୀ ଜମୁନା ମାଲି, କାନପୁରର ନର୍ତ୍ତକୀ ଅଦିଜନ, ବିହାରର ଅଞ୍ଜଳି ଦେବୀ, ଫୁଲ କୁମାରୀ ଦେବୀ, ଜାନକୀ ମିଶ୍ର, ସମ୍ପତିଆ ଦେବୀ, କୁମାରୀ ଜୁଙ୍କେରୀ, ରାଜସ୍ଥାନର ରଧାଦେବୀ ପ୍ରମୁଖ ବୀରା ରମଣୀମାନେ ସ୍ୱାଧୀନତା ସଂଗ୍ରାମକୁ ଆଗେଇ ଆସିଥିଲେ । ୧୮୫୭ ମସିହାରେ ସିକନ୍ଦରାବାଦର ଜଣେ ଅପରିଚିତା ନାରୀ ୯ଜଣ ସିପାହୀ ଓ ତିନିଜଣ ଗୋରା ସାହେବଙ୍କୁ ଗୁଳି ଚଳାଇ ହତ୍ୟା କରିବା ପରେ ନିଜେ ପୋଲିସ ଗୁଳିରେ ଶିକାର ହୋଇଥିଲେ । ସେଠାରେ ସରକାର ୧୯୭୩ ମସିହାରେ ଅପରିଚିତା ନାରୀ ଶହୀଦ ଲେଖି ଏକ ମୂର୍ତ୍ତି ସ୍ଥାପନ କରିଛନ୍ତି । ପଞ୍ଜାବ ଆଶା ସିଂହ, ଅରୋଜା କନ୍ୟା ସିଂହ ଓ ହରକୌର, ଆସାମର କୁମାଲୀ ନାଥ, କନକ ଲତା ବରୁଆ ପ୍ରମୁଖ ବୀରଙ୍ଗନା ନାରୀମାନେ ଦେଶ ମାତୃକାର ମୁକ୍ତି ପାଇଁ ସଂଗ୍ରାମ କରିଯାଇଛନ୍ତି ।

ଯୁଗେ ଯୁଗେ ଭାରତବର୍ଷ ବିଦେଶୀମାନଙ୍କୁ ଆକର୍ଷିତ କରିଛି । କେତେକ ଶ୍ୱେତାଙ୍ଗ ନାରୀ ମଧ୍ୟ ଭାରତର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ସେମାନଙ୍କ ମଧ୍ୟରେ ଭଗିନୀ ନିବେଦିତା, ଆଗ୍ନେଶ ସ୍ମେଡ଼ିଲି, ଆନିବେଶାନ୍ତ, ଶ୍ରୀମା, ମୀନା ବେନ ଓ ସେବାମୟୀ ମଦର ଟେରେସା ପରି ବହୁ ବିଦେଶିନୀ ଲକ୍ଷ ଲକ୍ଷ ଭାରତୀୟଙ୍କ ଅନ୍ତର ଜୟ କରିପାରିଥିଲେ । ଆଗ୍ନେଶ ସ୍ମେଡ଼ିଲି ହେଉଛନ୍ତି ପ୍ରଥମ ବିଦେଶିନୀ ମହିଳା ଯିଏ ଭାରତର ସ୍ୱାଧୀନତା ପାଇଁ କାରାବରଣ କରିଥିଲେ । ଯାହାଫଳରେ ସେମାନଙ୍କର ଉଦାର ମନୋଭାବ, ସେବା ପରାୟଣତା ଓ ସଙ୍ଗଠିତ କାର୍ଯ୍ୟକଳାପ ଭାରତୀୟମାନଙ୍କୁ ଉଦ୍‌ବୁଦ୍ଧ ଓ ପ୍ରଭାବିତ କରିପାରିଥିଲା । ସୁତରାଂ ଅନେକ ବିଦେଶିନୀ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଜଡିତ ହୋଇପଡିଥିଲେ । ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ବୀରା ରମଣୀମାନଙ୍କର ତ୍ୟାଗର ପଟ୍ଟାନ୍ତର ନାହିଁ ।

ସ୍ୱାଧୀନତା ସଂଗ୍ରାମର ମହାନ ସ୍ରୋତରେ ଭାରତର ବୀରା ରମଣୀମାନଙ୍କର ଅବଦାନ ସମଗ୍ର ଦେଶରେ ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ ସୃଷ୍ଟି କରିଥିଲା । ଏହି ମହିୟସୀ ମହିଳାମାନେ ଭାରତର

ହୃତ ଗୌରବ ଫେରାଇ ଆଣିବା ପାଇଁ ବୀରତ୍ୱର ସହିତ କଳ, ବଳ, କୌଶଳ ଓ ଅହିଂସା ମାଧ୍ୟମରେ ଆମ ଦେଶକୁ ସ୍ୱାଧୀନ କରିଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ମହିଳାଙ୍କ ନାମ ନାମାଙ୍କିତ ହୋଇନାହିଁ । ଆଉ କେତେଜଣଙ୍କର ନାମ ନାମାଙ୍କିତ ହୋଇପାରିଛି ତଥାପି ଏମାନଙ୍କର ଦେଶ ଓ ଜାତି ପାଇଁ ସମାଜର ସକଳ ବାଧା ବନ୍ଧନକୁ ଛିନ୍ନ କରି ଯେଉଁ ଦେଶ ମାତୃକାର ମୁକ୍ତି ପାଇଁ ନିଜର ଜୀବନକୁ ଆତ୍ମୋତ୍ସର୍ଗ କରିଯାଇଛନ୍ତି, ସେମାନଙ୍କ ତ୍ୟାଗର କାହାଣୀ ସବୁଦିନ ପାଇଁ ଦେଶବାସୀଙ୍କୁ ଅନୁପ୍ରାଣିତ କରୁ ଏହା ହିଁ ମୋର କାମନା ।

ପୂର୍ବତନ ସଭାପତି,
ମୟୂରଭଞ୍ଜ ଜିଲ୍ଲା ଖାଉଟି ବିବାଦ ପ୍ରତିକାର ଅଦାଲତ,
ବାରିପଦା, ଖିଚିଂ, ମୟୂରଭଞ୍ଜ, ଓଡ଼ିଶା

# ଅସରନ୍ତି ଯାତ୍ରା

ରବି ଶତପଥୀ

କେଉଁ ଭକତମାନଙ୍କୁ
ଅସରାଏ କରୁଣାର ବର୍ଷାରେ
ଭିଜେଇ ଦେବ ବୋଲି
ବଡଦାଣ୍ଡକୁ ବାହାରି ପଡିଲ ସାଆନ୍ତେ ।
ଅପଲକ ନୟନ ଜ୍ୟୋତିରେ
କେଉଁ ପାପର ଅଧାରକୁ
ଦୂରେଇ ଦେବ ବୋଲି
ଚୁପ୍ କରି ବସି ପଡିଲ ନନ୍ଦିଘୋଷରେ ।
କେଉଁ ପତିତମାନଙ୍କୁ
କୋଳେଇ ନେବ ବୋଲି
ମହାବାହୁ ହୋଇ
କାହାକୁ ଅପେକ୍ଷା କରିଛ ସାଆନ୍ତେ ।
କେଉଁ ଭାବଗ୍ରାହୀର
ହୃଦୟକୁ ଟିକେ ଛୁଇଁ ଦେବ ବୋଲି
ଜାଣିଶୁଣି ଲମ୍ବେଇ ଦେଇଛ
ତୁମ ରଥର ଦଉଡି ।
ଯାହା କର ସାଆନ୍ତେ ।
ତମର ଏ ଅସରନ୍ତି ଯାତ୍ରାରେ ଆସି
ଆମ ସରିଯାଉଥିବା ଯାତ୍ରାର ଯାତ୍ରୀଙ୍କୁ ଟିକେ
ଥରେ ଆଉ ଆଖିରେ
ଚାହିଁ ଦିଅ ସାଆନ୍ତେ ।
ଥରୁଟିଏ ଚାହିଁ ଦିଅ ।

ଅଧ୍ୟାପକ ଓଡ଼ିଆ ବିଭାଗ
ନନ୍ଦପୁର କଲେଜ/କୋରାପୁଟ

# ଏକବିଂଶ ଶତାବ୍ଦୀରେ ସ୍ୱାଧୀନତାର ସ୍ୱାଦ

ଡକ୍ଟର ତ୍ରିନାଥ ପଟ୍ଟନାୟକ

ମଣିଷ ଯେତେ ସୁଖ ସ୍ୱାଚ୍ଛନ୍ଦ୍ୟରେ ରହିଲେ ସୁଦ୍ଧା, ଆଉ ଅଧିକ କିଛି ଚାହେଁ । ଦୁଃଖ ନଥିଲେ ସୁଖକୁ ଅନୁଭବ କରି ହୁଏନି ଅଭାବ ଆସିଲେ ନୂତନ ଚିନ୍ତା ଚେତନା ଓ ଆବିଷ୍କାରର ଉନ୍ମେଷ ଘଟେ । କୌଣସି ପଦାର୍ଥ ସମ୍ପୂର୍ଣ୍ଣ ନୁହନ୍ତି । କିଛି ଅଭାବବୋଧ ରହିବ । ଚନ୍ଦ୍ର ସୁନ୍ଦର ସୁଶୀତଳ ହେଲେ ମଧ୍ୟ କଳଙ୍କ ଯୁକ୍ତ । ସୂର୍ଯ୍ୟ ଜଗତର ସୃଷ୍ଟିକର୍ତ୍ତା ପ୍ରାଣୀ ସକଳର ଜୀବନସତ୍ତା ହେଲେ ମଧ୍ୟ ଅଂଶୁଘାତ ସୃଷ୍ଟି କରି ପ୍ରାଣୀମାନଙ୍କର ପ୍ରାଣଘାତକ ହୋଇଥାନ୍ତି । ଏକ ସ୍ୱାଧୀନ ରାଷ୍ଟ୍ର, ଗଣତନ୍ତ୍ର ଶାସନ ଓ ଜନସଂଖ୍ୟା ବହୁଳତା ପରିସ୍ଥିତିରେ କିଛିଟା ଅସୁବିଧା ରହିବ । ମାତ୍ର ସୁବିଧାର ପରିମାଣ ବେଶୀ । ଗଣତନ୍ତ୍ର ପରିଚାଳିତ ରାଷ୍ଟ୍ରରେ ଯାହାକିଛି ତ୍ରୁଟି ବିଚ୍ୟୁତି ଦେଖାଦିଏ, ତାହା ସାଧାରଣ ନାଗରିକମାନଙ୍କର ସଚେତନତା ଅଭାବରୁ । ଏଣୁ ନାଗରିକ ଶିକ୍ଷିତ ଓ ଦାୟିତ୍ୱଶୀଳ ହେଲେ ଅଯଥା ସରକାରଙ୍କୁ ଭୁଲ ଦେବାରୁ କ୍ଷାନ୍ତ ହୋଇପାରିବ । କାରଣ ସରକାର କୌଣସି ବ୍ୟକ୍ତି ବିଶେଷ ରାଜା ମହାରାଜା କିମ୍ବା ବଂଶାନୁକ୍ରମିକ ଭାବେ ଶାସନ କରୁଥିବା ସତ୍ତା ନୁହେଁ ଆମମାନଙ୍କର ପ୍ରତିନିଧିମାନେ ହିଁ ସରକାର । ଆମମାନଙ୍କର ସମ୍ମାନନୀୟ ବ୍ୟକ୍ତି । ଆମେ ଚାହିଁଲେ ସେଠାରେ ବସାଇପାରିବା, ଚାହିଁଲେ ହଟାଇ ଆଣିବା । ସରକାର ସର୍ବଦା ନାଗରିକମାନଙ୍କର ଶ୍ରଦ୍ଧାର ପାତ୍ର ହେବା ଉଚିତ୍।

ଯେତେବେଳେ ଆମ ଦେଶ ବିଦେଶୀମାନଙ୍କ ଅଧୀନରେ ଥିଲା, ସେତେବେଳେ ଆମର ବାକ୍ ସ୍ୱାଧୀନତା ବୋଲି କିଛି ନଥିଲା। ଜଣେ ସାଧାରଣ ଲୋକ ପକ୍ଷରେ କାହାକୁ ନିଜର ଅଭାବ ଅସୁବିଧାକୁ ଜଣାଇବା ଆଦୌ ସମ୍ଭବ ନଥିଲା । ଏଣୁ ପଶୁଭଳି ମନର ବେଦନା ଓ ଯନ୍ତ୍ରଣାକୁ ସହିନେବା ବ୍ୟତୀତ ଅନ୍ୟ ଉପାୟ ନଥିଲା । ଗାନ୍ଧୀ, ଗୋପବନ୍ଧୁ, ସୁଭାଷ, ନେହେରୁ ଭଳି ରାଷ୍ଟ୍ରଭକ୍ତ ମହାମନୀଷୀମାନେ ବହୁ ଦୁଃଖ ସହି ଦୁର୍ଲ୍ଲଭ ସ୍ୱାଧୀନତାକୁ ଆମ ହାତରେ ଟେକି ଦେଇ ଯାଇଛନ୍ତି। ସ୍ୱାଧୀନତାର ମହାନ ଆନ୍ଦୋଳନରେ ଗୁଳି ମାଡ ଖାଇ ଶହୀଦ ହେଲେ ଆଉ କେତେକ ଫାଶୀ ଖୁଣ୍ଟରେ ଝୁଲିଲେ । ସେମାନେ ବିଂଶ ଶତାବ୍ଦୀର ସୁନାର ଭାରତକୁ ଦେଖିପାରିଲେ ନାହିଁ ମାତ୍ର ଆମେ ସେମାନଙ୍କର କଷ୍ଟଲବ୍ଧ ଭାରତକୁ ଅନୁଭବ କରୁଛୁ ।

ଆଜି କେଉଁ ସୁଦୂର ମଫସଲରେ ବାସ କରୁଥିବା ସାଧାରଣ ଲୋକଟିଏ ଦେଶର ଶାସନ ମୁଖ୍ୟଙ୍କ ପାଖରେ ନିଜର କଥା ଉପସ୍ଥାପନ କରିପାରୁଛି । ଆବଶ୍ୟକ ହେଲେ ଧର୍ମଘଟ ସତ୍ୟାଗ୍ରହ ମାଧ୍ୟମରେ ମନରେ ଥିବା କ୍ଷୋଭକୁ ପରିପ୍ରକାଶ କରିପାରୁଛି। ଆମକୁ ପୂରାପୂରି ବାକ୍ ସ୍ୱାଧୀନତା ମିଳିଛି। ମାତ୍ର ଆମେ ସ୍ୱାଧୀନ ବୋଲି ବାକ୍ ସ୍ୱାଧୀନତାକୁ ବାକ୍ ବାଚାଳତା ଭାବେ ପ୍ରୟୋଗ କରିବା ଉଚିତ ନୁହେଁ । ବିରୋଧୀ ବୋଲି ବିରୋଧ କରି ଗଠନମୂଳକ କାର୍ଯ୍ୟଧାରାରେ ପ୍ରତିବନ୍ଧକ ସୃଷ୍ଟି କରିବା କଦାପି ଜାତୀୟ ଚେତନା ନୁହେଁ। ଜାତୀୟ ଚେତନା ଓ ଜାତୀୟ ଉନ୍ନତି ନିଜ ସ୍ୱାର୍ଥଠାରୁ ବହୁ ଉର୍ଦ୍ଧ୍ୱରେ। ସେଥିପାଇଁ ମଧୁବାବୁ କହିଥିଲେ –

ଜାତି–ପ୍ରେମ–ବହ୍ନି ପ୍ରଜ୍ୱଳିତ କର, ସ୍ୱାର୍ଥକୁ ଦିଅ ଆହୂତି
ସ୍ୱାର୍ଥ ମେଧ ଯଜ୍ଞ ଚାରିଆଡ଼େ ନାଚ, ଛାତିକୁ ମିଶାଇ ଛାତି।

ସ୍ୱାଧୀନ ରାଷ୍ଟ୍ରର ଜଣେ ସଚେତନ, ଶିକ୍ଷିତ ନାଗରିକ ଭାବେ ରାଷ୍ଟ୍ରହିତ ପାଇଁ ନିଜକୁ ନିୟୋଜିତ କର। ପରକୁ ଦୋଷ ନଦେଇ ନିଜେ ସୁଧୁରିଯାଅ, ପ୍ରତ୍ୟେକ କାର୍ଯ୍ୟ କରିବା ପୂର୍ବରୁ ଶହେଥର ଭାବ ଯାହା ମୁଁ କରୁଛି ତାହା ରାଷ୍ଟ୍ର ହିତ ପାଇଁ ପ୍ରଯୁଜ୍ୟ କି ନୁହେଁ, ତାହା ଦ୍ୱାରା କାହାରି କ୍ଷତି ହେବକି ? ଜାତୀୟ ସମ୍ମାନରେ କୌଣସି ଆଞ୍ଚ ଲାଗିବକି ? କାରଣ ଜାତୀୟ ସମ୍ମାନ ହିଁ ରାଷ୍ଟ୍ରରେ ବାସ କରୁଥିବା ପ୍ରତ୍ୟେକ ନାଗରିକର ସମ୍ମାନ । ଜାତି ପତିତ ହେଲେ ବ୍ୟକ୍ତି ପତିତ ହୋଇଯାଏ ।

ଆତ୍ମାହୀନ ଦେହସମ ପରାଧୀନ ଜାତି
ସ୍ୱାଧୀନତା ଲାଗି ଜାତି ସମ୍ମାନ ସୁଖ୍ୟାତି।
ତା ଲାଗି ଫୁଟିବ ଜାତି ପ୍ରତିଭା – ପରାଣ
ଜାତିଠାରୁ ମୂଲ୍ୟବାନ ଜାତୀୟ – ସମ୍ମାନ ।।

– କୁଞ୍ଜ ବିହାରୀ ଦାସ

ଜାତୀୟ ଚେତନା ମଧ୍ୟରୁ ଗୋଟିଏ ଉଦାହରଣ ନିଆଯାଉ । ବିପୁଳ ବୃକ୍ଷ ସମ୍ପଦ ବିଲୋପ ଫଳରେ ପରିବେଶ ନିୟନ୍ତ୍ରଣ ହରାଇ ବସିଛି । ବର୍ଷା-ବସନ୍ତ-ସୁଦୂରପରାହତ ହୋଇ କେବଳ ବୈଶାଖ ଓ କାଳ ବୈଶାଖୀରେ ପୃଥିବୀ ପରିପୂର୍ଣ୍ଣ ହୋଇଗଲାଣି । ଶୀତ ନାହିଁ । ସେଥିପାଇଁ ବୈଜ୍ଞାନିକମାନେ ବ୍ୟାକୁଳ ହୋଇ ଉଠିଲେ । ସରକାର କୋଟି କୋଟି ଟଙ୍କା ବ୍ୟୟ କରି ପରିବେଶକୁ ସଜାଡିବାକୁ ଯାଇ ସାମାଜିକ ବନିକରଣ ବ୍ୟବସ୍ଥା କରାଇଲେ । ସଚେତନତା ମଧ୍ୟ ଜନସାଧାରଣରେ ସୃଷ୍ଟି କଲେ । ରାସ୍ତା କଡରେ ଅନାବାଦୀ ଜମିମାନଙ୍କରେ କି ଗ୍ରାମ କି ସହରର ସର୍ବତ୍ର ବୃକ୍ଷରୋପଣ କରାଇଲେ । ଜଙ୍ଗଲ ସୃଷ୍ଟି ହୋଇ ପାରିଥିଲେ ସେହି ଅଞ୍ଚଳର ମଙ୍ଗଳ ହୋଇଥାନ୍ତା, ସେଠାର ଲୋକମାନେ ପତ୍ର, କାଠ ଓ ସୁଶୀଳତ ପବନ ପାଇଥାନ୍ତେ । ମାତ୍ର ଆମ ଜନସାଧାରଣ ତାହା ବୁଝିପାରିଲେ ନାହିଁ । ସେମାନେ ଭାବିଲେ ସରକାର ବୋଧେ କେହିଜଣେ ବ୍ୟକ୍ତି ଆଉ ତାର ଫାଇଦା ପାଇଁ ବୃକ୍ଷରୋପଣ କରିଛି । ଚାରାବେଳୁ ଗଛପତ୍ରକୁ ଗୋରୁଗାଈ ଛେଳି ଚରାଇଦେଲେ । ସୁରକ୍ଷା ଦେଲେନି । ଗଛ କିଛିଟା ବଢିଲା ପରେ ଡାଳକୁ ଭାଙ୍ଗି ଦାନ୍ତକାଠି କଲେ । ଗଛ କେତୋଟି ବହୁ ସଂଘର୍ଷରେ ବଡ ହେଲା, ତାକୁ ଜାଳେଣି କାଠ ରୂପେ କାଟି ନେଲେ । ସୁନ୍ଦର ଭାବେ ଉଠୁରୁ ଥିବା ଗ୍ରାମ୍ୟ ଜଙ୍ଗଲ ଧ୍ୱଂସ ହୋଇଗଲା, ସରକାରଙ୍କ ଯୋଜନା ଯୋଜନାରେ ହିଁ ରହିଗଲା । ହେଲେ ଏ ଧ୍ୱଂସ ବିଧ୍ୱଂସରୁ କ୍ଷତି କାହାର ହେଲା, ଆମେ ଭାବିଛେ କି ? ଆଜିର ଏକବିଂଶ ଶତାବ୍ଦୀରେ କ୍ଷୁଧାକୁ ନିୟନ୍ତ୍ରଣ କରାଯାଇଛି । ସେଥିପାଇଁ ବି.ପି.ଏଲ୍. ଚାଉଳ ବ୍ୟବସ୍ଥା ଅଛି । ସେଥିପାଇଁ ସ୍ଥାନୀୟ ଜନସାଧାରଣ ସଚେତନ ହେବା ଉଚିତ । ଯୋଜନାର କୌଣସି ଭୁଲ୍ ନାହିଁ । ସୁବିଧାବାଦୀକୁ ବିପ୍ଳବ ଦ୍ୱାରା ଚିହ୍ନଟ କରାଯାଉ । ନିଶ୍ଚିତ କର୍ମ ଯୋଜନାର ଅର୍ଥ ଖର୍ଚ୍ଚ ହେଉଛି ସେଥିପାଇଁ ଶ୍ରମିକ ସଙ୍ଗଠିତ ହୁଅନ୍ତୁ । ତେବେ ଆମର କଷ୍ଟଲବ୍ଧ ସ୍ୱାଧୀନତାର ମୂଲ୍ୟ ରହିବ । ଆମେ ସ୍ୱାଧୀନତାର ସ୍ୱାଦକୁ ଉପଭୋଗ କରିପାରିବା ।

ସରକାର ଗାଁ ଗଣ୍ଡା ସହର ସର୍ବତ୍ର ନଳକୂଅ ବସାଇଲେ । ମଣିଷର ସର୍ବନିମ୍ନ ଆବଶ୍ୟକ ଜଳ ଟିକେ କେମିତି ତାକୁ ମିଳୁ । ମାତ୍ର ଆମେ ତାକୁ ଠିକ୍ ରୂପେ ବ୍ୟବହାର କଲୁନି । ସାମାନ୍ୟ ସାମାନ୍ୟ ମରାମତି ଗାଁ ଲୋକଙ୍କ ତରଫରୁ ନକରାଇ ସରକାରଙ୍କ ହାତକୁ ଚାହିଁ ରହିଲୁ । ବର୍ଷ ବର୍ଷ ଧରି ଅଚଳ ନଳକୂପ ପଡିରହିଲା । ପାଣି ମୁନ୍ଦାକ ପାଇଁ ଆମେ ଡହଳ ବିକଳ ହେଲୁ । ସରକାରଙ୍କୁ କେବଳ ଦୋଷ ଦେଲୁସିନା କେମିତି ସଜଡା ହେବ ତା'ର ଉପାୟ ଚିନ୍ତା କଲୁନି, ଏହା କ'ଣ ସ୍ୱାଧୀନ ମଣିଷର ସ୍ୱାଧୀନ ଚିନ୍ତା ?

ଗାଁ ଡାକ୍ତରଖାନା, ଗାଁ ସ୍କୁଲ ପରିଚାଳନା ନିମନ୍ତେ ଗ୍ରାମ୍ୟ କମିଟି ଗଢାଗଲା । ଉଚିତ ଲୋକ ଆମେ ସଭ୍ୟ ବାଛି ପାରିଲୁନି । ସେମାନେ ସମୟ ଦେଇ ଚିନ୍ତା କଲେନି, କି ସହଯୋଗ ଦେଲେନି । ଏ କଥାର ସମାଧାନ ଆମେ ନକଲେ, ସରକାର କ'ଣ କରିପାରିବେ ? କେବଳ ସରକାରଙ୍କ ଉପରେ ଦୋଷ ଲଦି ଚୁପ ହୋଇ ବସିଗଲେ ହେବନାହିଁ । ଏହା କଦାପି ସ୍ୱାଧୀନ ନାଗରିକର ଉଚିତ ପଦକ୍ଷେପ ନୁହେଁ ।

ସରକାରୀ ବିଦ୍ୟାଳୟ ଅଛି, ଶିକ୍ଷକ ଅଛନ୍ତି ମାତ୍ର ପିଲାଏ ଛୁଟିଛନ୍ତି ଇଂରାଜୀ ମିଡିୟମ୍ ସ୍କୁଲକୁ । ବିଦେଶୀ ଚିନ୍ତା ଚେତନାରେ ପରିପୃଷ୍ଟ ହେବା ପାଇଁ । ଏଥିପାଇଁ କିଏ ଦାୟୀ ? ସ୍ୱାଧୀନ ଦେଶର ସ୍ୱାଧୀନ ନାଗରିକ ଏବେ ଚିନ୍ତାକର, ସବୁକଥା ସରକାରଙ୍କ ଉପରେ ଲଦି ନଦେଇ, ସରକାରୀ ଯୋଜନାର ଯେଉଁ ମଙ୍ଗଳକର କାର୍ଯ୍ୟାବଳୀ ତାହାକୁ ହୃଦୟଙ୍ଗମ କର, ଆବଶ୍ୟକ ପଡିଲେ ସଜାଡିବାରେ ସହାୟ ହୁଅ । ସ୍ୱାଧୀନତା ପାଇଛେ । ଜାତି ମଧ୍ୟ ଅଗ୍ରଗତି କରି ଚାଲିଛି । ଆମ ରାଜ୍ୟ ଏବେ ଆଉ ପଛରେ ନାହିଁ । ସବୁବେଳେ ନିଜକୁ ଦରିଦ୍ର ଦରିଦ୍ର ନକହି ଜାତୀୟ ସମ୍ପଦକୁ ଉପଯୋଗ କରି ଆତ୍ମନିର୍ଭରଶୀଳ ହେବାକୁ ଚେଷ୍ଟାକର । ଆମେ ବଳିଷ୍ଠ, ଆମ ଜାତିର ଐତିହ୍ୟ ଅଛି, ପରମ୍ପରା ଅଛି । କେବଳ କିଛି ସଚେତନତା ଆସିଗଲେ ବିଶ୍ୱର ଯେକୌଣସି ଜାତିଠାରୁ ଆମେ ନିଶ୍ଚୟ ଉନ୍ନତତର ହୋଇପାରିବା । ଏହିସବୁ କାରଣରୁ ସ୍ୱାଧୀନତା ପାଇ ସୁଦ୍ଧା ସ୍ୱାଧୀନତାର ସ୍ୱାଦକୁ ଆମେ ଆମର ତୁଣ୍ଡ ଖରାପରୁ ବାରି ପାରୁନେ । ତୁଣ୍ଡ ଓ ମୁଣ୍ଡକୁ ସଜାଡି ପାରିଲେ ଦେଶ ଓ ଜାତି ସଜାଡି ହୋଇଯିବ । ପରକୁ ଆକ୍ଷେପ ନକରି ନିଜେ ଠିକ୍ ତ ଦୁନିଆ ଠିକ୍ ନୀତିରେ ଆପଣାକୁ ସଂଶୋଧନ କର । ତେବେ ଏକବିଂଶ ଶତାବ୍ଦୀରେ ସ୍ୱାଧୀନତାର ପ୍ରକୃତ ସ୍ୱାଦକୁ ବାରିପାରିବା ।

ଆଲୋକ ନଗର, ନିଆଳୀ, ଜି- କଟକ,
ଫୋନ୍ -୯୯୩୭୮୪୦୩୮୭

# ବିପ୍ଳବର ବିଗୁଲ ଓ ଅହିଂସାର ତରବାରୀ

କାଞ୍ଚନାରାୟଣ ମହାନ୍ତି

ଭାରତବାସୀ ବୁଝିଥିଲେ ଜୀବନଠାରୁ ସ୍ୱାଧୀନତା ଅଧିକ ମୂଲ୍ୟବାନ ସମ୍ପଦ । ମହିମାମୟୀ ଭାରତ ଭୂଇଁର ଐଶ୍ୱର୍ଯ୍ୟରେ ପ୍ରଲୁବ୍ଧ ବିଦେଶୀ ବଣିକ ଦିନେ ବଣିକ ନାଁରେ ସାମ୍ରାଜ୍ୟ ଅଧିକାର କରିଚାଲିଲା । ଦିନେ ଅଧେ ନୁହେଁ ଦୀର୍ଘ ତିନିଶହ ବର୍ଷଧରି ଭାରତୀୟମାନେ ଶୋଷଣ, ଅତ୍ୟାଚାରର ପୈଶାଚିକ ଯନ୍ତ୍ରଣାରେ ଆର୍ତ୍ତଚିତ୍କାର କରୁଥିଲେ । ବୀର ପ୍ରସବିନୀ ସୁଜଳା ସୁଫଳା ଶସ୍ୟଶ୍ୟାମଳା ସ୍ୱର୍ଣ୍ଣପ୍ରସୂ ଭାରତମାତାର ଭାଗ୍ୟ ଆକାଶରୁ ଲିଭିଗଲା ସୁଖସୂର୍ଯ୍ୟ । ଭାରତୀୟମାନଙ୍କର ନିୟତିରେ ଘୋଟି ଆସିଲା ଦୁର୍ଦ୍ଦଶାର କଳାବାଦଲ । ଇଂରେଜ ଶାସକର କ୍ରମାଗତ ଅତ୍ୟାଚାରର ରଦ୍ଧ ଅସନ୍ତୋଷରୁ ଜନ୍ମ ନେଲା ୧୮୫୭ ମସିହାର ଆଦ୍ୟ ବିସ୍ଫୋରଣ ସିପାହୀ ବିଦ୍ରୋହ । ଦେଶପ୍ରେମର ଆଗ୍ନେୟ ମଶାଲ ଟେକି ଧରିଲେ ଝାନ୍‌ସୀର ରାଣୀ ଲକ୍ଷ୍ମୀବାଈ, ତାନ୍ତିଆଟୋପେ, ନାନା ସାହେବ ଗଣଚେତନାର ଆହ୍ୱାନ ଦେଲେ ଦ୍ୱାରକାନାଥ ଠାକୁର, ଦାଦାଭାଇ ନାରୋଜୀ, ସୁରେନ୍ଦ୍ର ନାଥ ବାନାର୍ଜୀ, ଫିରୋଜ ସାହା ମେହେଟ୍ଟା, ଗୋବିନ୍ଦ ରାନାଡେ ପ୍ରମୁଖ ନେତୃବୃନ୍ଦ । ଏଲେନ୍ ଅକ୍ଟୋଭିଆନ୍ ହ୍ୟୁମଙ୍କ ସହାୟତାରେ ୧୮୮୫ ମସିହାରେ 'ଭାରତୀୟ ଜାତୀୟ କଂଗ୍ରେସ' ଗଠନ ହେଲା । ଏହାର ଗମ୍ଭୀର ଧ୍ୱନି ପ୍ରତିଧ୍ୱନି ଆକୁମାରୀ ହିମାଳୟ ପର୍ଯ୍ୟନ୍ତ ଉଦ୍‌ବେଳିତ କଲା । ଐକ୍ୟବୋଧରେ ଉଦ୍‌ବୁଦ୍ଧ ହେଲେ ଅମାନୁଷିକ ଅନ୍ଧାରୀ ଶାସନର ଶିକାର ହୋଇଥିବା ଅସଂଖ୍ୟ ଜନତା ।

ଏଥିରେ ସାମିଲ ହୋଇଥିଲେ ସଂସ୍କାରବାଦୀ ଚେତନାର ଆଲୋକବର୍ତ୍ତିକା ସମ ନୂତନ ଦିଗ୍‌ଦ୍ରଷ୍ଟା ରାଜା ରାମମୋହନ ରାୟ, ସ୍ୱାମୀ ଦୟାନନ୍ଦ ସରସ୍ୱତୀ, ସ୍ୱାମୀ ବିବେକାନନ୍ଦ ରାମକୃଷ୍ଣ ପରମହଂସ ଏବଂ ବହୁ ମନୀଷୀଗଣ ।

ଦୁର୍ଦ୍ଧର୍ଷ ଭାରତୀୟମାନଙ୍କର ପ୍ରଥମ ସିଂହନାଦରେ ଭୟଭୀତ ହେଲା ଧୂର୍ତ୍ତ ଇଂରେଜ ଜାତି । ସାରା ଭାରତବର୍ଷରେ ସଞ୍ଚରିଗଲା । ଜାତୀୟତାର ନୂତନ ଜାଗରଣ । ଆରମ୍ଭ ହେଲା ସ୍ୱଦେଶୀ ଆନ୍ଦୋଳନ, ଅସହଯୋଗ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ ପଦଯାତ୍ରା । ଦକ୍ଷିଣ ଆଫ୍ରିକାରୁ ଯେଉଁ ଯୁଗପୁରୁଷ ମା ମାଟିପାଇଁ ଛାତି ପାତି ଦେବାକୁ ଚାଲି ଆସିଥିଲେ, ସେ ହେଲେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ମହାନାୟକ ମୋହନ ଦାସ କରମଚାନ୍ଦ ଗାନ୍ଧୀ ।

ବର୍ବର ଡାୟାରର ନିଷ୍ଠୁର ଦମନଲୀଳାରେ ଜାଲିଓ୍ୱାନାବାଗଠାରେ ହଜାର ହଜାର ମୁକ୍ତିସଂଗ୍ରାମୀ ଟଳି ପଡିଲେ । ସେ ଲୋମହର୍ଷଣକାରୀ ହିଂସ୍ରଘଟଣା ଇତିହାସରେ ବିରଳ । ଲଣ୍ଡନର ଶାସକ ଦରବାର ମଧ୍ୟ ନୃଶଂସତାର ଭୟାବହତାରେ ଶଙ୍କିତ ହେଲା ।

ଜୀବନକୁ ବାଜି ଲଗାଇ ଅହିଂସାର ମୋହିନୀ ମନ୍ତ୍ରରେ ହିଂସାର ତୀକ୍ଷ୍ଣ ତରବାରୀକୁ ମୋହନଦାସ ଅଚଳ କରିଦେଲେ । ଗାନ୍ଧୀଙ୍କ ମାର୍ଗରେ ଅନୁଧାବନ କଲେ ଜବାହରଲାଲ୍, ଚିତ୍ତରଞ୍ଜନ, ଲାଲାଲଜପତ ରାୟ, ବାଲଗଙ୍ଗାଧର ତିଳକ, ବିପିନ୍ ବିହାରି ପାଲଙ୍କଠାରୁ ଓଡ଼ିଶାର ବୀରସୁରେନ୍ଦ୍ର ସାଏ, ବିପ୍ଳବୀ ଜୟୀରାଜଗୁରୁ, ବକ୍ସି ଜଗବନ୍ଧୁ, ରଘୁଦିବାକର, ଲକ୍ଷ୍ମଣ ନାଏକ, ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ, ଗଜପତି କୃଷ୍ଣଚନ୍ଦ୍ର, ଶହୀଦ ବାଜିରାଉତ ପର୍ଯ୍ୟନ୍ତ । ଗାନ୍ଧୀବାଣୀର ଅଦୃଶ୍ୟ କ୍ଷମତା ଥିଲା ଅମାପ ।

ଗାନ୍ଧୀଙ୍କର ଦର୍ଶନ ଥିଲା ସୂକ୍ଷ୍ମ ଏବଂ ଶକ୍ତିଶାଳୀ । ସେ କହୁଥିଲେ– ସତ୍ୟାଗ୍ରହ ବ୍ୟକ୍ତିତ୍ୱର ପରାକାଷ୍ଠା ଉପରେ ଆଧାରିତ । ବ୍ୟକ୍ତି ଆତ୍ମଶକ୍ତିରେ ଦୃଢଥିଲେ କେହି ତାଙ୍କୁ କଦାପି ବଶୀଭୂତ କରିପାରିବେ ନାହିଁ । ସେ ନିର୍ଭୀକ ଭାବରେ ତାହାର ବିରୁଦ୍ଧାଚରଣ କରିପାରେ । ଆତ୍ମଶକ୍ତିରେ ବଳୀୟାନ୍ ସଂଗ୍ରାମୀ ମାନବ ଉନ୍ମୁକ୍ତ ବିଦ୍ରୋହ କରିପାରେ, କାରଣ ହିଂସା କାପୁରୁଷତାର ଲକ୍ଷଣ ।

ଜଣେ ଶାନ୍ତିର ମାର୍ଗଦର୍ଶନ କରିଥିବା ବେଳେ କଳିଙ୍ଗ ମାଟିର ପ୍ରଜ୍ଞାବାନ୍ ବୀର ଚରମପନ୍ଥୀ ଭାବରେ ସ୍ୱାଧୀନତାକୁ ହସ୍ତଗତ କରିବାକୁ ଆଉ ଜଣେ ଚାହିଁଥିଲେ । ଓଡ଼ିଶାର ଓଡ଼ିଆ ବଜାରରେ ଜନ୍ମ ବିପ୍ଳବୀ ସେନାନାୟକ ବିଦ୍ରୋହୀ ସୁଭାଷ । ଯାହାଙ୍କ ଆଗ୍ନେୟ ଆହ୍ୱାନରେ ଗଢା ହେଲା ଆଜାଦ ହିନ୍ଦ ଫୌଜ୍ । ବର୍ବରତାର ଜବାବ ବନ୍ଧୁକରେ ଦିଆଯାଏ ବୋଲି ସେ ବିଦେଶରେ ରହି ଭାରତରୁ ବିଲାତି ବିଦେଶୀ ବଣିକଙ୍କୁ ବିଦାୟ ଦେବାର କମାଣ ଖଞ୍ଜିଲେ । ସୁଭାଷ ଚନ୍ଦ୍ର ବୋଷଙ୍କର ଜୀବନପ୍ରସ୍ଥ ଅସାଧାରଣ, ଯାହାକି ଜାତୀୟ ଆନ୍ଦୋଳନର ବିସ୍ତୃତ ଇତିହାସ । ଅସ୍ତ୍ରକୁ ଅସ୍ତ୍ରରେ ଲୁଝାଯାଏ । ଏହା ନେତାଜୀଙ୍କର ମୂଳମନ୍ତ୍ର ହୋଇଥିଲେ ବି ଉଦ୍ଦେଶ୍ୟ ଥିଲା ଏକ – ଭାରତମାତାର ମୁକ୍ତି କାମନା ।

ଦେଶମାତୃକା ପାଇଁ ସମର୍ପିତ ଭାରତର ବରପୁତ୍ର ସୁଭାଷଚନ୍ଦ୍ର ୧୯୪୫ ମସିହାରେ ଅଗଷ୍ଟ ପନ୍ଦର ତାରିଖରେ ଭାରତମାତାର କୋଟିକୋଟି ଜନଗଣଙ୍କୁ ଶେଷବାର୍ତ୍ତାରେ ଲେଖିଥିଲେ – 'ଭାରତର ଭାଗ୍ୟକୁ ନେଇ ମୁହୂର୍ତ୍ତକ ପାଇଁ ମଧ୍ୟ ବିଚଳିତ ହୁଅନାହିଁ । ପୃଥିବୀରେ ଏପରି କୌଣସି ଶକ୍ତିନାହିଁ ଯିଏ ଭାରତକୁ କ୍ରୀତଦାସ କରି ରଖିବ । ଖୁବ୍ ଅଳ୍ପଦିନ ଭିତରେ ଭାରତ ସ୍ୱାଧୀନ ହେବ ।'

'ନେତାଜୀଙ୍କ ସମଗ୍ର ରଚନାବଳୀ' ଦୁଇଟି ଭାଗରେ ପ୍ରକାଶିତ ହୋଇଥିଲା ୧୯୬୦ ମସିହାରେ । ପ୍ରଥମ ଭାଗରେ ତାଙ୍କ ଅସମାପ୍ତ ଜୀବନୀ ଲିପିବଦ୍ଧ ହୋଇଥିବା ବେଳେ ଦ୍ୱିତୀୟ ଭାଗରେ ଗ୍ରନ୍ଥିତ ହୋଇଛି ବିଭିନ୍ନ ସମୟରେ ବିଶିଷ୍ଟ ବ୍ୟକ୍ତି ଦେଇଥିବା ଦୁଇଶହ ଆଠଖଣ୍ଡ ଚିଠି । ସେଇ ଚିଠିରେ ଅଛି ତାଙ୍କ ପନ୍ଦରବର୍ଷ ବୟସରେ ମାଆଙ୍କଠାରୁ ଓଡ଼ିଶାରେ ଜନଜୀବନ ସୁଖଦୁଃଖ, କୃଷି–ଅର୍ଥନୀତି, ଭାଷା ଓ ଶିଳ୍ପ ପ୍ରଗତି ସମ୍ପର୍କରେ ଗୋପବନ୍ଧୁ ଦାସଙ୍କ ପାଖକୁ ଲେଖିଥିବା ମର୍ମସ୍ପର୍ଶୀ ଚିନ୍ତାନାୟକର ଭାବାବେଶ । ଓଡ଼ିଶା ଓ ଓଡ଼ିଆମାନଙ୍କ ପ୍ରତି ଅତିପ୍ରାଣତା ।

ମାତ୍ର ପନ୍ଦରବର୍ଷରେ ନେତାଜୀ ତାଙ୍କ ମାଆଙ୍କ ପାଖକୁ ଭାରତମାତା କେଉଁ ଦୃଷ୍ଟିରେ ମାପିଥିଲେ ତାହା ହେଲା– ଭାରତ ଈଶ୍ୱରଙ୍କର ପ୍ରିୟଭୂମି । ସେ ଏଇ ମହାନ୍ ଭୂମିରେ ପ୍ରତିଯୁଗରେ ଜନ୍ମଗ୍ରହଣ କରିଛନ୍ତି । ତ୍ରାଣକର୍ତ୍ତା ଭାବରେ ଲୋକଙ୍କୁ ଜ୍ଞାନାଗ୍ନିରେ ପ୍ରଜ୍ୱଳିତ କରିବା ପାଇଁ ଜଗତରୁ ପାପକ୍ଷୟ କରିବା ପାଇଁ ପ୍ରତ୍ୟେକଙ୍କ ହୃଦୟରେ ନ୍ୟାୟ ଓ ସତ୍ୟ ପ୍ରତିଷ୍ଠା କରିବା ପାଇଁ ସେ ଅନେକ ଦେଶରେ ମଣିଷ ରୂପରେ ଆସିଛନ୍ତି କିନ୍ତୁ ସେସବୁ ଦେଶରେ ଭାରତ ପରି ଅନେକ ଥର ପାଇଁ ଆସିନାହାଁନ୍ତି । ସେଇଥିପାଇଁ ମୁଁ କହେ ଭାରତ ଆମ ମାତୃଭୂମି । ଈଶ୍ୱରଙ୍କର ପ୍ରିୟ ଲୀଳାଭୂମି । ଶତ୍ରୁ ଲୁଝିବାକୁ କଠୋର ଥିଲେ ବି ନେତାଜୀ ଜନମଙ୍ଗଳ ଥିଲେ କୁସୁମକୋମଳ ଉତ୍କଳମଣି ଗୋପବନ୍ଧୁ ଦାସ ଯେତେବେଳେ ନିଜର ପ୍ରାଣପ୍ରିୟ ସନ୍ତାନକୁ ହରାଇ ମହତପ୍ରଜ୍ଞା ପଣ୍ଡିତ କୃପାସିନ୍ଧୁ ମିଶ୍ର ଓ ଡଃ ବାଳକୃଷ୍ଣ ମିଶ୍ରଙ୍କୁ ଆକସ୍ମିକ ହରାଇ ନିଃସ୍ୱ ଅନୁଭବ କରୁଥିଲେ ଠିକ୍ ସେତିକି ବେଳେ ସୁଭାଷ ଚନ୍ଦ୍ର ତାଙ୍କୁ ଆଶ୍ୱାସନାରେ ଦୀକ୍ଷିତ କରିଥିଲେ ଯେଉଁ ଶବଦରେ ତାହା ହେଲା– ଜନକଲ୍ୟାଣ ମୂଳକ କାର୍ଯ୍ୟରେ ପ୍ରବେଶର ପ୍ରଥମ ଦିନରୁ ହିଁ ଆପଣ ଆପଣଙ୍କର ନିଜସ୍ୱ ବ୍ୟକ୍ତିଗତ ସ୍ୱାଧୀନତା ପରିତ୍ୟାଗ କରିଛନ୍ତି । ଜନସେବା, ସନ୍ନ୍ୟାସଧର୍ମ ସଦୃଶ ଜଣେ ଯେତେବେଳେ ଏହି କାର୍ଯ୍ୟରେ ପ୍ରବେଶ କରିଥାନ୍ତି, ସେତେବେଳେ ସେ ବ୍ୟକ୍ତିଗତ ସ୍ୱାଧୀନତା ଅସ୍ୱୀକାର କରିଥାନ୍ତି । ଥରେ ଅନୁରୂପ କାର୍ଯ୍ୟରେ ପ୍ରବେଶ କରି ଫେରି ଆସିବାର ରାସ୍ତା ନଥାଏ । ସାମୟିକ ଭାବରେ ଆପଣ ଯଦି ବିହ୍ୱଳ ହୋଇପଡିଛନ୍ତି ଓ ଆପଣଙ୍କ ଦୁଃଖ ସୀମାହୀନ ତେବେ ମୋର ନିଶ୍ଚୟ ବିଶ୍ୱାସ ଯେ ଆପଣ ଭାରସାମ୍ୟ ପୁନରୁଦ୍ଧାର କରିପାରିବେ । କ'ଣ ପାଇଁ ମୁଁ ଜାଣେନା ତେବେ ଜୀବନର ଧର୍ମ ହେଲା – ହୃଦୟ ଯାହାର ଯେତିକି ପ୍ରସାରିତ, ଦୁଃଖ ତାଙ୍କର ସେତିକି ଗଭୀର । ସ୍ୱାମୀ ବିବେକାନନ୍ଦ କହିଥିଲେ– ଯେତେ ଉଚ୍ଚ ତୁମ ହୃଦୟ, ସେତିକି ଜାଣ ଦୁଃଖ ନିଶ୍ଚୟ । ଅର୍ଥାତ୍ ଅପରର ଦୁଃଖ ସମସ୍ତେ ବୁଝିପାରନ୍ତି ନାହିଁ । ସେଥିପାଇଁ ହୃଦୟବାନ ମଣିଷ ଜନ୍ମ ନେଇଥାନ୍ତି ।

ମୁକ୍ତି ସଂଗ୍ରାମରେ ଅଂଶଗ୍ରହଣ କରି ଅଶ୍ରୁପ୍ଲାବିତ ନୟନରେ ସ୍ୱାମୀ ବିବେକାନନ୍ଦ କହିଥିଲେ – ଜନନୀ ! ମୁଁ ମୁକ୍ତି ଚାହେଁନା, ତୁମର ସେବା ହିଁ ମୋ ଜୀବନର ଏକମାତ୍ର ଅବଶିଷ୍ଟ କର୍ମ । ସବୁ ଭେଦାଭେଦ ଉଠାଇ ଦିଅ । ସଂଗ୍ରାମୀମାନଙ୍କୁ କହିଥିଲେ ସାହସ ଅବଲମ୍ବନ କର । ସମସ୍ତେ ଏକ ସ୍ୱରରେ କୁହ ଭାରତବାସୀ ମୋ ଭାଇଭଉଣୀ, ଭାରତର ଦେବଦେବୀ ମୋର ଈଶ୍ୱର, ଭାରତର ସମାଜ ମୋର ଶୈଶବର ଶିଶୁଶଯ୍ୟା, ଯୌବନର ଉପବନ ଏବଂ ବାର୍ଦ୍ଧକ୍ୟର ବାରଣାସୀ ।

ସ୍ୱାମୀ ଅରବିନ୍ଦ ଘୋଷଙ୍କର ସ୍ୱାଧୀନତାର ବାର୍ତ୍ତାରେ ଜନଜାଗରଣ ତେଜି ଉଠିଥିଲା । ସେ କହିଥିଲେ – ଜନଜାଗରଣ ଆଗରେ କୌଣସି ଶକ୍ତି ତିଷ୍ଠି ପାରିବା ଅସମ୍ଭବ । କେତେ ରକ୍ତପାତ, କେତେ କାରାବାସ, କେତେ ବୁକୁଫଟା ଚିତ୍କାର, କେତେ ଶୂଳୀ ଆଉ ଚାବୁକର ଶାସନ ୧୯୪୨ ମସିହାର ଭାରତଛାଡ ଆନ୍ଦୋଳନରେ ଭିନ୍ନ ମୋଡ ନେଲା । ଭାରତମାଟିରୁ ଶିବିର ଉଠାଇବାକୁ ବାଧ୍ୟ ହେଲା ବ୍ରିଟିଶ ରାଜତନ୍ତ୍ର ।

ପରାଧୀନତାରୁ ମୁକ୍ତି ସମସ୍ତଙ୍କର ସଙ୍ଗଠିତ ଶକ୍ତି ଓ ସଂଗ୍ରାମର ପରିଣତି । ଜଙ୍ଗଲର ଜନଜାତି ଆଦିବାସୀମାନଙ୍କଠାରୁ ସହରର ଶିକ୍ଷିତ ବୁଦ୍ଧିଜୀବୀମାନଙ୍କ ପର୍ଯ୍ୟନ୍ତ ଅବୋଧବାଳକଠାରୁ କବି କୋବିଦ ନିରୀହ ନାରୀମାନଙ୍କର ଏହି ମୁକ୍ତି ସଂଗ୍ରାମରେ ଅମ୍ଳାନ ଅବଦାନ ରହିଛି ।

୧୮୬୬ରୁ ୧୯୨୦ ମସିହା ମଧ୍ୟରେ ଓଡ଼ିଶାରେ ରାଜନୈତିକ ଜାଗରଣ ଜାତୀୟ ସଂଗ୍ରାମ ପାଇଁ ପଥ ଉନ୍ମୁକ୍ତ କରି ଦେଇଥିଲା । ଉତ୍କଳସଭା, ବାଲେଶ୍ୱର ପିପୁଲସ୍ ଆସୋସିଏସନ୍, ଗଞ୍ଜାମର ଉତ୍କଳ ହିତୈଷିଣୀ ସମାଜ ପ୍ରଭୃତ ସଂଗଠନଗୁଡିକ ଥିଲା ଜାତୀୟ ଚେତନାର ପ୍ରାଣକେନ୍ଦ୍ର । ଏହିସବୁ ସଙ୍ଗଠନର ନେତୃବୃନ୍ଦ ଥିଲେ ଉତ୍କଳଗୌରବ ମଧୁସୂଦନ, ଗୌରୀଶଙ୍କର ରାୟ, ଜଗବନ୍ଧୁ ସିଂହ, ଶ୍ୟାମସୁନ୍ଦର ରାଜଗୁରୁ, ଜାନକୀନାଥ ବୋଷ, ରାମଶଙ୍କର ରାୟ, ବୈକୁଣ୍ଠ ନାଥ ଦେ ପ୍ରମୁଖ । 'ଉତ୍କଳ ସମ୍ମିଳନୀ' ବିଚ୍ଛିନ୍ନ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଓ ସ୍ୱତନ୍ତ୍ର ଉତ୍କଳପ୍ରଦେଶ ଗଠନର ପ୍ରୟାସରେ ସର୍ବପ୍ରଥମେ ଉଦ୍ୟମ ଆରମ୍ଭ କରିଥିଲା ।

ଭାରତଛାଡ ଆନ୍ଦୋଳନର ପୁରୋଭାଗରେ ଓଡ଼ିଶାର ଯେଉଁ ବରପୁତ୍ରମାନେ ମହତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ, ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିଲେ – ଆଚାର୍ଯ୍ୟ ହରିହର, ବିଶ୍ୱନାଥ ଦାସ, ଡଃ. ହରେକୃଷ୍ଣ ମହତାବ, ଭାଗୀରଥି ମହାପାତ୍ର, ରମାଦେବୀ, ସରଳାଦେବୀ, ମାଳତୀ ଚୌଧୁରୀ, ନିତ୍ୟାନନ୍ଦ କାନୁନଗୋ, ଜାତୀୟକବି ବୀର କିଶୋର ଦାସ, ବାଞ୍ଛାନିଧି ମହାନ୍ତି । ଦେଶ ମାତୃକାର ମୁକ୍ତି ପାଇଁ ସେମାନେ ଅସୀମ ଦୁଃଖ ଯନ୍ତ୍ରଣା, ନିର୍ଯାତନା ସହି ଚରମ ତ୍ୟାଗ ନିଦର୍ଶନ କରିଛନ୍ତି ତା'ର ପଟାନ୍ତର ନାହିଁ । ଯେଉଁ ବରେଣ୍ୟ ଦେଶପ୍ରେମୀମାନେ ଦେଶମାତୃକାର ମୁକ୍ତିପାଇଁ ହସି ହସି ଫାଶୀଖୁଣ୍ଟରେ ଆତ୍ମବଳୀ ଦେଇଛନ୍ତି ଏ ଜାତି ସେମାନଙ୍କ ଉଦ୍ଦେଶ୍ୟ ଚିର ନତମସ୍ତକ ହୋଇ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଥିବ ।

ଯେଉଁ ସ୍ୱାଧୀନ ଭାରତବର୍ଷର ସମୃଦ୍ଧ ରୂପକଳ୍ପ ଦେଖିବା ପାଇଁ ସ୍ୱାଧୀନତା ସଂଗ୍ରାମୀମାନେ ସଂକଳ୍ପ ନେଇ ଦେଶପାଇଁ ପ୍ରାଣପାତ ସଂଗ୍ରାମ କରି ଶହୀଦ ହେଲେ ସେମାନଙ୍କର ସ୍ୱପ୍ନ ତ୍ୟାଗ ଓ ତପସ୍ୟାକୁ ସାକାର ଓ ସାର୍ଥକ କରି ସେହି ଅମର ଆତ୍ମାମାନଙ୍କ ପ୍ରତି ତାହା ହିଁ ହେବ ଉପଯୁକ୍ତ ଶ୍ରଦ୍ଧାଞ୍ଜଳି ।

ଆଜି ସମଗ୍ର ବିଶ୍ୱରେ ଭାରତ ସମୃଦ୍ଧ ଦେଶ ଭାବରେ ଦ୍ରୁତ ପ୍ରଗତିଶୀଳ । ଆମ ରାଜ୍ୟ ଓଡ଼ିଶା ଭାରତବର୍ଷରେ ଓଡ଼ିଶୀ ନୃତ୍ୟକଳା, ସାହିତ୍ୟ, ସଂସ୍କୃତି ଓ ସ୍ଥାପତ୍ୟରେ ସମୃଦ୍ଧ ହୋଇ ବିଶ୍ୱ ଦରବାରରେ ଚର୍ଚ୍ଚିତ, ପ୍ରଶଂସିତ । କୃଷି, ଶିକ୍ଷା, ପର୍ଯ୍ୟଟନ ଓ ଶିଳ୍ପ କ୍ଷେତ୍ରରେ ଉନ୍ନତ ଓ ପ୍ରଗତିଶୀଳ ।

ଦୀର୍ଘ ଚଉଷଠି ବର୍ଷର ସ୍ୱାଧୀନ ଭାରତବର୍ଷର ନୀଳାଭ ଗଗନରେ ଅଗଷ୍ଟ ପନ୍ଦର ଜାତୀୟ ମହୋତ୍ସବକୁ ଅଭିମନ୍ତ୍ରିତ କରି ଝଲସି ଯିବ ସୁନେଲି ସୂର୍ଯ୍ୟର ଲୋହିତ ରଶ୍ମି । ପ୍ରାସାଦଚୂଡା, ବେସରକାରୀ, ସରକାରୀ ସ୍ତରରେ ବୀରତ୍ୱ ଶାନ୍ତି–ସମୃଦ୍ଧିର ପ୍ରତୀକ ତ୍ରିରଙ୍ଗା ପତାକା ଫରଫର ହୋଇ ଜାତୀୟ ଉନ୍ମାଦ ଭରିଦେବ । ଜାତୀୟ ସଙ୍ଗୀତର ଉଦ୍‌ବୋଧନୀରେ ଗଗନ ପବନ ହେବ ମୁଖରିତ । ମୁଖରିତ ହେବ ସ୍ୱାଧୀନତାର ଶୁଭ ଶଂଖନାଦ । ଚତୁର୍ଦିଗରୁ ଶୁଭିବ ଦେଶ ଜନନୀ ଆଉ ଜାତିର ମହାନବ୍ୟକ୍ତିମାନଙ୍କର ଜୟଜୟକାର । ପ୍ରତ୍ୟେକଙ୍କ ଭିତରେ ଜାତିୟତାର ଉଦ୍ଦୀପନା ମଞ୍ଜୁଳ ହେଉ । ଏ ସ୍ୱାଧୀନତା ଅକ୍ଷୟ ହେଉ ।

ଆଶ୍ରମ ଶ୍ରୀବିହାର କଲୋନୀ,
ତୁଳସୀପୁର, କଟକ–୭୫୩୦୦୮

# ଅନନ୍ୟ ନାୟକ - ବକ୍ସି ଜଗବନ୍ଧୁ

ସୁପ୍ରଭା ମିଶ୍ର

ଭରତବର୍ଷର ସ୍ୱାଧୀନତା ସଂଗ୍ରାମ ପର୍ବ ବେଶ୍ ବର୍ଣ୍ଣିଳ । କେତେବେଳେ ବିଦେଶୀ ଶାସକର ଉତ୍ପୀଡନରେ ଶାନ୍ତିକାମୀ ଜନତା ମାରଣାସ୍ତ୍ର ଧରି ଜାଗି ଉଠିଛି ତ କେତେବେଳେ ଅହିଂସା ଅସ୍ତ୍ର ଧରି ନୀରବ ସ୍ୱର ତୋଳିଛି । କେତେବେଳେ ଅକଥନୀୟ ଅତ୍ୟାଚାର ସହିଛି ଦେହରୁ ଲହୁ ଝାରିଛି । କେତେବେଳେ ପ୍ରିୟତମ ଜନ୍ମମାଟିକୁ ଜାବୁଡି ଧରି ଅତ୍ୟାଚାରୀ ଶାସକର ଗୁଳିଭରା ବନ୍ଧୁକର ବ୍ୟାରେଲ ଆଗରେ ଛାତି ପାତିଛି, କେବେ ଅବା ଜନ୍ମମାଟିର ଜୟଗାନ କରୁ କରୁ ଫାଶି ଖୁଣ୍ଟରେ ଝୁଲିଛି । ସେ ଯୁଝିଚି । ମାଟି ମାଆର ସ୍ୱାଧୀନତା ପାଇଁ ଶତଶତ ସଂଗ୍ରାମୀ ସନ୍ତାନ ସେମାନଙ୍କ ଜୀବନ ଉତ୍ସର୍ଗ କରିଥିବାର ଫଳ ଆମେ ଆଜି ଚାଖି ବିଶ୍ୱଦରବାରରେ ନିଜର ସ୍ଥାନ ନେଇପାରିଛୁ । ଏ କ୍ଷେତ୍ରରେ ବୀର ଓଡ଼ିଆ ପୁଅଙ୍କର ଅବଦାନ କିଛି କମ୍ ନୁହେଁ । ପରାଧୀନତାର ପ୍ରାରମ୍ଭିକ ପର୍ଯ୍ୟାୟରୁ ସ୍ୱାଧୀନତାର ନବ ସୂର୍ଯ୍ୟୋଦୟର ଶୁଭଲଗ୍ନ ଯାଏ ବୀର ଓଡ଼ିଆ ଜାତି ନିଜ ଶକ୍ତି ସାମର୍ଥ୍ୟର ପ୍ରମାଣ ପ୍ରଦର୍ଶନ କରି ଚାଲିଥିବାର ଅନେକ ଦୃଷ୍ଟାନ୍ତ ଅଛି । ମାତୃଭୂମିର ମୁକ୍ତି ଆନ୍ଦୋଳନ ପାଇଁ ଉଲ୍ଲେଖନୀୟ ଅବଦାନ ରଖି ଓଡ଼ିଆ ଜାତି ନିଜକୁ ବୀରଜାତି ରୂପେ ବିଶ୍ୱଦରବାରରେ ଉପସ୍ଥାପିତ କରିବାରେ ସକ୍ଷମ ହୋଇଛି । ସ୍ୱାଧୀନତା ସଂଗ୍ରାମର ପ୍ରତ୍ୟେକ ପାହାଚରେ ସେଗୁଡିକ ଆମ ଘଟଣାବହୁଳ ଇତିହାସରେ ଗୋଟିଏ ଗୋଟିଏ ସ୍ମରଣୀୟ ଅଧ୍ୟାୟ, ସେସବୁର ସମ୍ପୂର୍ଣ୍ଣ ବିବରଣୀ ଦେବା କଷ୍ଟକର । ମାତ୍ର ଯେଉଁ କେତେଜଣ ବୀର ଯୋଦ୍ଧା ସ୍ୱାଧୀନତା ସଂଗ୍ରାମର ଦାବାନଳରେ ଝାସ ଦେଇ ଆମ ମନ ଭିତରେ ଏକ ସ୍ୱତନ୍ତ୍ର ସ୍ଥାନ ବାଛି ନେଇଛନ୍ତି, ସେମାନେ ଆମର ବରଣୀୟ ଓ ପୂଜନୀୟ । ସେମାନଙ୍କ ମଧ୍ୟରେ ପ୍ରଥମ ଶହୀଦ୍ ଜୟୀ ରାଜଗୁରୁ ଏବଂ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମୀ ବକ୍ସି ଜଗବନ୍ଧୁ ଅବଶ୍ୟ ସ୍ମରଣୀୟ ।

ବିସ୍ମୃତି ଓ ବିକୃତିର ବାଲିସ୍ତୂପ ତଳୁ ବୀର ଓଡ଼ିଆ ଜାତିର ଅତୀତ-ଗୌରବ-ଗାଥା କେଉଁ ପ୍ରେରଣାରେ ଆଜି ଏଭଳି ଝଙ୍କୃତ ହେଉଛି ଅନ୍ତଃସ୍ଥଳ ଥରେଇ ଦେଉଛି କହିବା କଷ୍ଟ, ତଥାପି ୧୮୧୭- ପାଇକ ବିଦ୍ରୋହର ସ୍ରଷ୍ଟା ଓ ନେତା ବକ୍ସି ଜଗବନ୍ଧୁଙ୍କ ଛବି ମୋ ମାନସ ପଟରେ ବାରମ୍ବାର ଉଦ୍ଭାସିତ ହେଉଥିବାରୁ ତାଙ୍କ ବିଷୟରେ କିଛି ତଥ୍ୟ ସଂଗ୍ରହ କରି ଏଠାରେ ପ୍ରକାଶ କରିବାକୁ ମନ ବଳାଇଛି ।

ବର୍ତ୍ତମାନ ଆମେ ଯାହାକୁ ଓଡ଼ିଶା ବୋଲି କହୁଛୁ ପ୍ରାଚୀନ କାଳନରେ ତାହା ତିନୋଟି ରାଜ୍ୟର ପ୍ରଧାନ ଅଂଶ ଥିଲା -

୧) ପ୍ରାଚୀନ ଉତ୍କଳ ଦେଶ (ମେଦିନୀପୁର, ମୟୂରଭଞ୍ଜ, କେନ୍ଦୁଝର, ସିଂହଭୂମ, ମାନଭୂମ ପ୍ରଭୃତି ଅଞ୍ଚଳକୁ ନେଇ ମେଦିନୀପୁର ସମୁଦ୍ରକୂଳଠାରୁ ଗୟା ଜିଲ୍ଲା ପର୍ଯ୍ୟନ୍ତ ଅଞ୍ଚଳ)

୨) ପ୍ରାଚୀନ ଉଡ୍ର ଦେଶ (ଢେଙ୍କାନାଳ, ଅନୁଗୁଳ, ହିନ୍ଦୋଳ, ସମ୍ବଲପୁର, ରାୟପୁର ପ୍ରଭୃତି ଅଞ୍ଚଳକୁ ନେଇ ବର୍ତ୍ତମାନ ଓଡିଶାରେ ମହାନଦୀର ଦକ୍ଷିଣ-ଗଡଜାତ ଅଞ୍ଚଳ)

୩) ଅତି ପ୍ରାଚୀନ କଳିଙ୍ଗ ଦେଶ (ବାଲେଶ୍ୱର, କଟକ, ପୁରୀ ଓ ଗଞ୍ଜାମ ଜିଲ୍ଲାମାନଙ୍କୁ ନେଇ ଯେଉଁ ଅଞ୍ଚଳ)

ଓଡ୍ର ନାମକ ଏକ ଆର୍ଯ୍ୟ ଜାତି ବହୁ ପ୍ରାଚୀନ କାଳରୁ ଆସି କଳିଙ୍ଗର ପଶ୍ଚିମ ପ୍ରାନ୍ତରେ ବାସ କରୁଥିଲେ । ମନୁ ସଂହିତାରେ ଏହି ଓଡ୍ରମାନଙ୍କୁ ପତିତ-କ୍ଷତ୍ରିୟ ବୋଲି କୁହାଯାଏ । ପରେ ପୁଣି ନୂତନ ଆର୍ଯ୍ୟମାନଙ୍କୁ ମଧ୍ୟ 'ଓଡ' ନାମରେ ନାମିତ କରାଯାଇଛି । ଗଙ୍ଗବଂଶର ରାଜତ୍ୱ କାଳରେ ଏହି 'ଓଡ' ମାନେ ଉତ୍କଳ ରାଜାଙ୍କ ସେନାଭୁକ୍ତ ହୋଇ ଖୋର୍ଦ୍ଧା ପ୍ରଭୃତି ଅଞ୍ଚଳରେ ବାସ କରିବାର ଦୃଷ୍ଟାନ୍ତ ରହିଛି । ଓଡ୍ର ଜାତି ଉଡ୍ର କଳିଙ୍ଗ ରାଜାମାନଙ୍କ ଅଧୀନରେ

ସୈନ୍ୟବୃତ୍ତି କରୁଥିବାରୁ ମୁସଲମାନମାନେ ଏହି ଦେଶକୁ ଓଡ ବା ଓଡ଼ିଶା ନାମ ଦେଇଥିବା ବିଷୟ ଇତିହାସରେ ଉଲ୍ଲେଖ ଅଛି । ସେ ଯାହା ହେଉ ପ୍ରାଚୀନ ଓଡମାନେ ଯୁଦ୍ଧପ୍ରିୟ ଜାତି ରୂପେ ପରିଗଣିତ ହୁଅନ୍ତି । ଖୋର୍ଦ୍ଧାରେ ଏହି ଓଡ଼ ପାଇକମାନେ ବହୁ ସଂଖ୍ୟାରେ ବସବାସ କରି ରହୁଥିବାର ଏଯାଏ ପ୍ରମାଣ ଅଛି ।

ଐତିହାସିକ ଖୋର୍ଦ୍ଧା ମଧ୍ୟ ଏକଦା ଓଡ଼ିଶା ନାମରେ ପରିଚିତ ଥିଲା । ସେତେବେଳେ ଭୋଇ ବଂଶର ରାଜାମାନେ ଖୋର୍ଦ୍ଧାର ଶାସନ ଦାୟିତ୍ୱରେ ରହୁଥିଲେ । ତାହା ଥିଲା ଗଜପତି ରାମଚନ୍ଦ୍ର ଦେବ (୧)ଙ୍କ ଠାରୁ ଆରମ୍ଭ କରି ମୁକୁନ୍ଦଦେବ (୨)ଙ୍କ ପର୍ଯ୍ୟନ୍ତ । ସେତକିବେଳେ ଇଂରେଜମାନେ ଓଡ଼ିଶାରେ ପହଞ୍ଚି କଟକର ବାରବାଟୀ ଦୁର୍ଗ ଅଧିକାର କଲେ ଏବଂ ବାଲେଶ୍ୱର ସହର ମଧ୍ୟ ଦଖଲ କଲେ । ପରେ ପରେ ପୁରୀ ଜିଲ୍ଲା ଉପରେ ସେମାନଙ୍କର ଅଧିକାର ଆସିବାରୁ ଉପକୂଳବର୍ତ୍ତୀ ଓଡ଼ିଶା ଇଂରେଜମାନଙ୍କର ଅଧିକୃତ ହୋଇଥିଲା । ଏହାପରେ ପ୍ରଶାସନିକ ପୁନର୍ଗଠନ ଦୃଷ୍ଟିରୁ ସେହି ଇଂରେଜମାନେ ଓଡିଶାକୁ ଦୁଇଟି ପ୍ରଶାସନିକ ଭାଗରେ ବିଭକ୍ତ କଲେ ଏବଂ ମହାନଦୀକୁ ଏହି ଦୁଇଭାଗର ବିଭାଜନ ରେଖା ଭାବେ ଧରି ନିଆଯାଇଥିଲା । ଯଥାକ୍ରମେ ବାଲେଶ୍ୱର ଉତ୍ତର ଭାଗର ଏବଂ ପୁରୀ ଦକ୍ଷିଣଭାଗର ମୁଖ୍ୟକାର୍ଯ୍ୟାଳୟ ରୂପେ ସ୍ଥିର ହୋଇଥିଲା । ପ୍ରତ୍ୟେକ ଭାଗର ମୁଖ୍ୟ ରୂପେ ଜଣେ ଇଂରେଜ କର୍ମଚାରୀ ନିଯୁକ୍ତ ହୋଇଥିଲେ । ସେମାନଙ୍କୁ କଲେକ୍ଟର ବା ମାଜିଷ୍ଟ୍ରେଟ୍ କୁହାଯାଉଥିଲା ।

ଇଂରେଜମାନେ ଓଡ଼ିଶା ଦଖଲ କଲା ବେଳକୁ ବଙ୍ଗରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳିତ ହୋଇଥିଲା । ସେହି ଅନୁସାରେ ଜମିଦାରମାନେ ବଂଶାନୁକ୍ରମିକ ଭାବେ ଜମିର ସ୍ୱତ୍ତ୍ୱାଧିକାରୀ ହେଉଥିଲେ । ଯେତେଦିନ ଯାଏ ରୟତମାନଙ୍କ ଠାରୁ କର ଆଦାୟ କରି ଜମିଦାରମାନେ ଇଂରେଜ ସରକାରଙ୍କୁ ତାଙ୍କର ପ୍ରାପ୍ୟଅଂଶ ଦେଇ ପାରୁଥିଲେ, ସେତେଦିନ ଯାଏ ଜମି ଉପରେ ସେମାନଙ୍କ ସ୍ୱତ୍ତ୍ୱ କାଏମ୍ ରହୁଥିଲା ।

ମାତ୍ର ଓଡ଼ିଶାରେ ଇଂରେଜମାନେ ଆଂଶିକ ଚିରସ୍ଥାୟୀ ବନ୍ଦୋବସ୍ତ ଏବଂ ଅଧିକାଂଶ କ୍ଷେତ୍ରରେ ଅସ୍ଥାୟୀ ବନ୍ଦୋବସ୍ତ ପ୍ରଚଳନ କରିଥିଲେ । ସ୍ୱଳ୍ପ ମିଆଦୀ ବନ୍ଦୋବସ୍ତଗୁଡିକ ଶେଷ ହେବା ପରେ ଯେଉଁ ଜମିଗୁଡିକରେ କୃଷିର ଯଥେଷ୍ଟ ଉନ୍ନତି ହୋଇଥିବ ସେହିସବୁ ଜମି ଉପରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳନ କରାଯିବ ବୋଲି ଇଂରେଜ ସରକାରଙ୍କ ତରଫରୁ ପ୍ରତିଶ୍ରୁତି ଦିଆଯାଇଥିଲା । ଇଂରେଜ ସରକାର ଖୋର୍ଦ୍ଧା ରାଜାଙ୍କ ସହିତ ଏହି ଚିରସ୍ଥାୟୀ ବନ୍ଦୋବସ୍ତ କରିବାକୁ ପ୍ରସ୍ତୁତ ହୋଇଥିଲେ, ମାତ୍ର ତାହା କାର୍ଯ୍ୟକାରୀ କରିବାକୁ ଅସମର୍ଥହେଲେ । କାରଣ – ଏଥି ମଧ୍ୟରେ ଇଂଲଣ୍ଡରେ ଇଷ୍ଟଇଣ୍ଡିଆ କମ୍ପାନୀଙ୍କ କର୍ତ୍ତୃପକ୍ଷ ଓଡ଼ିଶା ସମେତ ଭାରତର ସମସ୍ତ ଅଧିକୃତ ଅଞ୍ଚଳ ଉପରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳନ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ।

ଏଣେ ସ୍ୱଳ୍ପମିଆଦୀ ବନ୍ଦୋବସ୍ତ ଫଳରେ ଓଡ଼ିଶାର ଜମିଦାର ତଥା ରୟତମାନଙ୍କର ବାସ୍ତବିକ ଅନେକ କ୍ଷତି ଘଟିଲା । ବହୁ ଜମିଦାର ସେମାନଙ୍କର ଜମିଦାରୀ ହରାଇଲେ । ରୟତମାନଙ୍କର ଆର୍ଥିକ ଅବସ୍ଥା ଅତି ଶୋଚନୀୟ ହୋଇପଡିଲା ।

ସେହିପରି ଲବଣ ଉତ୍ପାଦନ ଓ ଲବଣ କାରବାର ଉପରେ ଇଷ୍ଟଇଣ୍ଡିଆ କମ୍ପାନୀ ତାଙ୍କର ଏକ ଚାଟିଆ ନୀତି ପ୍ରତିଷ୍ଠା କଲେ । ଏହି ନିୟମ ଅନୁସାରେ ସରକାରୀ ଅନୁମତି ବିନା ଘରୋଇ ଭାବେ ଲବଣ ଉତ୍ପାଦନ ନିଷିଦ୍ଧ ହେଲା । ତା'ଛଡା ଲବଣ ବିକ୍ରେତାଙ୍କୁ ମଧ୍ୟ ମହଣ ପିଛା ୭୫ ପଇସା କରି ଶୁଳ୍କ ଦେବାକୁ ପଡିଲା । ଫଳରେ ଦେଶର ବିଭିନ୍ନ ସ୍ଥାନରେ ଇଂରେଜ ସରକାରଙ୍କ ବିରୋଧରେ ବିଦ୍ରୋହମାନ ସଂଗଠିତ ହେବାକୁ ଲାଗିଲା । ଏଥିରେ ଇଂରେଜ ଶାସନର ପୂର୍ବବର୍ତ୍ତୀ ଦେଶୀୟ ଶାସନର ସମ୍ଭ୍ରାନ୍ତବ୍ୟକ୍ତିମାନେ ନେତୃତ୍ୱ ପ୍ରଦାନ କରିଥିଲେ । ୧୮୧୭ ମସିହାର ପାଇକ ବିଦ୍ରୋହ ତା' ମଧ୍ୟରେ ଅନ୍ୟତମ । ବିଫଳତା, ତ୍ରୁଟି ତଥା ଇଂରେଜ ଶାସନ ବିରୋଧରେ ସାଧାରଣ ଜନତାଙ୍କ ପୁଞ୍ଜିଭୁତ ଅସନ୍ତୋଷ ଯେ ଏହି ବିଦ୍ରୋହର ମୌଳିକ କାରଣ ଥିଲା, ତାହା ଅନସ୍ୱୀକାର୍ଯ୍ୟ ।

ଇଂରେଜ ସରକାରଙ୍କର ବିଚିତ୍ର ଭୂ- ରାଜସ୍ୱ ନୀତି ପୂର୍ବବର୍ତ୍ତୀ ମରହଟ୍ଟା ସରକାରଙ୍କ ରାଜସ୍ୱ ନୀତିଠାରୁ କଠୋର ଥିଲା । ମରହଟ୍ଟା ସରକାର ତାଙ୍କ ଶାସନକାଳରେ ଖୋର୍ଦ୍ଧା ରାଜାଙ୍କଠାରୁ ଚାରିଟି ମାହାଲ ନିଜ ଅଧୀନକୁ ନେଇଥିଲେ । ଓଡ଼ିଶାରେ ଇଂରେଜ ଶାସନ ପ୍ରତିଷ୍ଠିତ ହେବା ପରେ ତତ୍କାଳୀନ ଖୋର୍ଦ୍ଧା ରାଜା ଦ୍ୱିତୀୟ ମୁକୁନ୍ଦ ଦେବ ସେହି ଚାରିଟି ମାହାଲ ପୁଣି ତାଙ୍କୁ ଫେରାଇ ଦେବା ପାଇଁ ଦାବି କରିଥିଲେ । ମାତ୍ର ଇଂରେଜ ସରକାର ସେହି ଦାବି ଅଗ୍ରାହ୍ୟ କରିବାରୁ ଖୋର୍ଦ୍ଧାରାଜା ବିଦ୍ରୋହ କଲେ । ଇଂରେଜ ସରକାର ସେହି ବିଦ୍ରୋହ ଦମନ କରି ରାଜାଙ୍କୁ ଗାଦିଚ୍ୟୁତ କଲେ ଏବଂ

ବନ୍ଦୀ ମଧ୍ୟ କଲେ । ଫଳରେ ଖୋର୍ଦ୍ଧା ଇଂରେଜ ସରକାରଙ୍କ ପ୍ରତ୍ୟକ୍ଷ ଶାସନାଧୀନ ରହିଲା ।

ଖୋର୍ଦ୍ଧା ଦୁର୍ଗର ପତନ ଘଟାଇ ଇଂରେଜମାନେ ରାଜା ମୁକୁନ୍ଦଦେବଙ୍କୁ ପ୍ରଥମେ କଟକରେ ଓ ପରେ ମେଦିନୀପୁର ଜେଲ୍‌ରେ ବନ୍ଦୀ କରି ରଖିଥିଲେ । ତିନିବର୍ଷ ଜେଲ୍‌ଦଣ୍ଡ ଭୋଗିବା ପରେ ରାଜା ବ୍ରିଟିଶ୍ ଗଭର୍ଣ୍ଣର ଜେନେରାଲ୍‌ଙ୍କ ଉଦ୍ଦେଶ୍ୟରେ ଖଣ୍ଡିଏ ଦରଖାସ୍ତ ଲେଖି ଜେଲ୍‌ରୁ ମୁକ୍ତି ପାଇଁ ପ୍ରାର୍ଥନା କରିଥିଲେ। ସରକାର ରାଜାଙ୍କୁ କ୍ଷମା ଦେଇଥିଲେ ଏବଂ ସମ୍ଭବତଃ ସେଥିପାଇଁ ମୁକୁନ୍ଦଦେବ ଖଲାସ୍ ହେଲାପରେ ପୁରୀରେ ରହିବା ପାଇଁ ଅନୁମତି ପାଇଥିଲେ।

ଏଥିସହିତ ଖୋର୍ଦ୍ଧା ରାଜ୍ୟର ସ୍ୱାଧୀନତା ଲୋପ୍ ପାଇବା କଥା ପୂର୍ବରୁ କୁହାଯାଇଛି । ସେତିକି ବେଳେ ଓଡ଼ିଶାର ପୁନରୁଦ୍ଧାର ତଥା ଭାରତର ସ୍ୱାଧୀନତା ପାଇଁ ଯେଉଁ ତିନିଜଣ ବୀର ପୁରୁଷ ଇଂରେଜ ସରକାରଙ୍କ ବିରୋଧରେ ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇଥିଲେ, ସେମାନଙ୍କ ମଧ୍ୟରେ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଅନ୍ୟତମ ନିଶ୍ଚୟ, ଏମାନଙ୍କ ପାଇଁ ଓଡ଼ିଆ ଜାତି ଗର୍ବିତ, ଓଡ଼ିଶା ପ୍ରଦେଶ ଗୌରବାନ୍ୱିତ ଏବଂ ଓଡ଼ିଶା ରାଜ୍ୟର ଐତିହ୍ୟ ସମୃଦ୍ଧ, କିନ୍ତୁ କୂଟନୀତି ବିଶାରଦ ଇଂରେଜ ଲେଖକମାନଙ୍କର ଚକ୍ରାନ୍ତ ଓ ଦୂରଭିସନ୍ଧି ଯୋଗୁଁ ଓଡ଼ିଶା ଇତିହାସରେ ଏହି ତିନିଜଣ ପ୍ରାତଃ ସ୍ମରଣୀୟ ବୀର ପୁରୁଷଙ୍କ ସମ୍ପର୍କରେ କେତେକ ବିଭ୍ରାନ୍ତିକର ତଥ୍ୟ ପ୍ରକାଶିତ। ତାହା ଆମ ଜାତୀୟ ପରମ୍ପରାର ପରିପନ୍ଥୀ ଅଟେ ଏବଂ ସେ ଯାହା ହେଉନା କାହିଁକି ଇଂରେଜମାନଙ୍କ ବିରୋଧରେ ବକ୍ସି ଜଗବନ୍ଧୁଙ୍କର ଗୌରବମୟ ଭୂମିକା ଯେ ଓଡ଼ିଶା ଇତିହାସର କାଳଜୟୀ ଆଲୋକରେ ସର୍ବଦା ଉଦ୍‌ଭାସିତ – ଏଥିରେ ସନ୍ଦେହ ନାହିଁ ।

ଖୋର୍ଦ୍ଧା ରାଜା ଗାଦିଚ୍ୟୁତ ହେବାପରେ ଇଂରେଜ ସରକାର ଖୋର୍ଦ୍ଧାରେ ଯେଉଁ ଭୂବନ୍ଦୋବସ୍ତ କରାଇଲେ ସେଥିରେ ବଂଶାନୁକ୍ରମିକ ଭାବେ ଭୋଗ କରୁଥିବା ପାଇକମାନଙ୍କର ନିଷ୍କର ଜମିକୁ ସରକାର ହାତକୁ ନେଲେ। ଏଣେ ଇଂରେଜର ପ୍ରତ୍ୟକ୍ଷ ଶାସନର ନିୟମକାନୁନ୍, ଯାହା ପାର୍ଶି ବା ବଙ୍ଗଳାରେ ଅନୁଦିତ ହେଉଥିଲା, ସେସବୁକୁ ବୁଝିନପାରି ସେହି ପାଇକମାନେ ନିଜ ନିଜର ସାମରିକ ବୃତ୍ତି ମଧ୍ୟ ହରାଇଥିଲେ। ରୟତମାନେ ରାଜସ୍ୱର ବୋଝ ଭରଣା କରିନପାରି ଖୋର୍ଦ୍ଧା ନିକଟବର୍ତ୍ତୀ ଗଡଜାତମାନଙ୍କୁ ପଳାଇଲେ । ଦୁର୍ନୀତିଗ୍ରସ୍ତ ରାଜସ୍ୱ କର୍ମଚାରୀ ତଥା ପୋଲିସ କର୍ମଚାରୀଙ୍କ ଅତ୍ୟାଚାରରେ ସାଧାରଣ ଲୋକଙ୍କ ଅବସ୍ଥା ଶୋଚନୀୟ ହୋଇଉଠିଲା । ଜଣାଯାଏ ୧୮୧୬ ମସିହା ବେଳକୁ ସେମାନଙ୍କ ଅବସ୍ଥା ଏପରି ହୋଇଥିଲା ଯେ ସେମାନେ ପତ୍ର, ଚେର, ମୂଳ ଖାଇ ଓ ପାଣିପିଇ ବଞ୍ଚୁଥିଲେ । ପିଇବା ପାଣି ରଖିବା ପାଇଁ ସେମାନଙ୍କ ପାଖରେ କୁଆଡେ ପାତ୍ରଟିଏ ମଧ୍ୟ ନଥିଲା ।

ଖୋର୍ଦ୍ଧା ରାଜାଙ୍କୁ ଛାଡିଦେଲେ ରାଜାଙ୍କର ବକ୍ସି ଅର୍ଥାତ୍ ସେନାପତି ଜଗବନ୍ଧୁ ମହାପାତ୍ର ସବୁଠାରୁ ପ୍ରତିପତ୍ତିଶାଳୀ ବ୍ୟକ୍ତିଥିଲେ । ମାତ୍ର ଖୋର୍ଦ୍ଧା ଇଂରେଜ ସାମ୍ରାଜ୍ୟରେ ମିଶିବାପରେ ସେ ମଧ୍ୟ ନିଜର ରାଜନୈତିକ, ସମାଜିକ ତଥା ଅର୍ଥନୈତିକ ପ୍ରତିପତ୍ତି ହରାଇ ଏକପ୍ରକାର ଭିକାରି ଜୀବନ ଯାପନ କଲେ ଏବଂ ପ୍ରତି ମୁହୂର୍ତ୍ତରେ ସେ ଅମଙ୍ଗଳର ଧ୍ୱନି ଶୁଣିବାକୁ ସଦା ଉତ୍କର୍ଣ୍ଣ ହୋଇ ରହୁଥିଲେ ।

ବକ୍ସି ପ୍ରଥମେ ନିଜର ସମସ୍ତ ନିଷ୍କର ଜମି ହରାଇବା ପରେ ଅମଲାମାନଙ୍କ ଷଡଯନ୍ତ୍ର ଫଳରେ ପୁରୁଷାନୁକ୍ରମିକ ଭାବେ ଭୋଗ କରୁଥିବା ରୌରଙ୍ଗ ଜମିଦାରୀ ମଧ୍ୟ ହରାଇଥିଲେ । ସେହି ଜମିଦାରୀର ପୁନରୁଦ୍ଧାର ପାଇଁ ବକ୍ସିଙ୍କଠାରେ ଉପଯୁକ୍ତ ପ୍ରମାଣ କିଛି ନଥିଲା । ଜମିଦାରୀ ହରାଇ ସେ ପଥର ଭିକାରୀ ହେଲେ । ପ୍ରାୟ ଦୁଇବର୍ଷ ଧରି ଖୋର୍ଦ୍ଧା ଲୋକଙ୍କ ଚାନ୍ଦାରେ ବକ୍ସି ଜଗବନ୍ଧୁ ଜୀବନଯାପନ କରିଥିଲେ । ତାଙ୍କର ଏହି ଦୀନହୀନ ଅବସ୍ଥାରେ ସୁଦ୍ଧା ସେ ରାଜକୀୟ ବସ୍ତ୍ର ପରିଧାନ କରୁଥିଲେ ଏବଂ ତାଙ୍କ ପାଖରେ କିଛି ପାଇକ ଅନୁଚର ଭାବେ ରହିଥିଲେ ।

ଇଂରେଜ ସରକାରଙ୍କର ଭୂ-ରାଜସ୍ୱ ନୀତି ଯୋଗୁଁ ଯେଉଁ ଓଡ଼ିଆ ଜମିଦାରମାନେ ସରକାରଙ୍କୁ ରାଜସ୍ୱ ଦେଇପାରୁନଥିଲେ, ସେମାନଙ୍କ ଜମିସବୁ କଲିକତାର ବଙ୍ଗୀୟ ଜମିଦାରଙ୍କୁ ବିକ୍ରି କରାଯାଉଥିଲା । ସେମାନେ ଓଡ଼ିଆମାନଙ୍କର ସ୍ୱାର୍ଥପ୍ରତି ସମ୍ପୂର୍ଣ୍ଣ ଉଦାସୀନ ରହୁଥିଲେ ।

କୃଷ୍ଣଚନ୍ଦ୍ର ସିଂ ଜଣେ ଧନୀ ବଙ୍ଗାଳୀ । ସେତେବେଳେ ଓଡ଼ିଶାର ଅମଲାତନ୍ତ୍ରରେ ବଙ୍ଗାଳୀମାନଙ୍କର ଯଥେଷ୍ଟ ପ୍ରତିପତ୍ତି । ତାଙ୍କ ସହିତ ଆଇନ ସମ୍ମତ ଉପାୟରେ ଲଢିବା ପାଇଁ ବକ୍ସିଙ୍କ ପାଖରେ ଅର୍ଥବଳ ନଥିଲା । ଲୋକମାନଙ୍କର ସମସ୍ୟା ସମ୍ବନ୍ଧରେ ବକ୍ସି ଅବଗତ ଥିଲେ । ତେଣୁ ସେମାନଙ୍କର ଅସନ୍ତୋଷକୁ ଭିତ୍ତି କରି ସେ କର୍ତ୍ତୃପକ୍ଷଙ୍କ ବିରୋଧରେ ବିରୋଧ କରିବା ପାଇଁ ସ୍ଥିର କଲେ । ଖୋର୍ଦ୍ଧା ରାଜାଙ୍କ ନିକଟକୁ ଲେଖିଥିବା ନିମ୍ନଲିଖିତ ପତ୍ରରୁ ତାହା ପ୍ରମାଣିତ ହୁଏ । " ଇଂରେଜମାନଙ୍କ ଅଧୀନରେ ଯେଉଁ ବଙ୍ଗାଳୀମାନେ ସରକାରୀ କର୍ମଚାରୀ ଭାବେ କାର୍ଯ୍ୟ କରୁଛନ୍ତି ଏବଂ

ଆମ୍ଭମାନଙ୍କର ପ୍ରଭୁ ବୋଲି ଭାବୁଛନ୍ତି ତଥା ଘୋଷଣା କରୁଛନ୍ତି, ସେମାନେ ଖୋର୍ଦ୍ଧାର ମଫସଲ ଅଞ୍ଚଳର ବାସିନ୍ଦାମାନଙ୍କ ଉପରେ ବିଭିନ୍ନ ଭାବରେ ଅତ୍ୟାଚାର କରୁଛନ୍ତି । ବଙ୍ଗାଳୀମାନଙ୍କ ପ୍ରଭାବ ହେତୁ ତଥା ସେମାନଙ୍କ ପ୍ରତି ପ୍ରିୟାପ୍ରୀତି ଫଳରେ ସହରରେ ଯେଉଁ ଭଦ୍ର ବ୍ୟକ୍ତିମାନେ କ୍ଷମତାରେ ଅଛନ୍ତି ସେମାନଙ୍କ ଠାରୁ ଦରିଦ୍ର ଏବଂ ଅତ୍ୟାଚାରିତ ଲୋକେ କୌଣସି ଉପକାର ପାଉନାହାନ୍ତି । ଫଳରେ ପୂର୍ବରୁ ପଣେ କଉଡିରେ ମିଳୁଥିବା ସେରେ ଲୁଣର ମୂଲ୍ୟ ବର୍ତ୍ତମାନ ୧୨ପଣ ହୋଇଛି, ସେହିପରି ଏକଟଙ୍କାର ରାଜସ୍ୱ ନେବା ସ୍ଥାନରେ ୧୦ ଟଙ୍କାର ରାଜସ୍ୱ ନିଆଯାଉଛି । ବିଚାରକମାନଙ୍କର ଅନ୍ୟାୟ ଦୁଷ୍ଟ ଥାନାଦାର ଓ ଲବଣ ମାହାଲ କର୍ମଚାରୀମାନଙ୍କ ଅତ୍ୟାଚାର ଫଳରେ ଲୋକମାନେ ଅତିଷ୍ଠ ହୋଇପଡିଲେଣି । ହେଲେ ନିଜର ପ୍ରିୟ ଜନ୍ମମାଟିକୁ ଛାଡିପାରୁ ନାହାନ୍ତି ତେଣୁ ଅନ୍ୟାୟ ଅତ୍ୟାଚାରର ବିରୋଧରେ ଠିଆ ହେବା ପାଇଁ ସେମାନେ ମୋତେ ନେତାଭାବେ ନିଯୁକ୍ତ କରିଛନ୍ତି ।''

ଜଗବନ୍ଧୁ ସ୍ଥିର କରିଥିଲେ ଖୋର୍ଦ୍ଧାର ଇଂରେଜ ଅମଲାତନ୍ତ୍ରକୁ ମୂଳପୋଛ କରି ସେ ପୁରୀ ଅଭିମୁଖେ ଯାତ୍ରା କରିଥାନ୍ତେ ଓ ପୁରୀରେ ଖୋର୍ଦ୍ଧାର ରାଜାଙ୍କୁ ବିଦ୍ରୋହର ନେତାରୂପେ ଘୋଷଣା କରିବା ଉଦ୍ଦେଶ୍ୟରେ । ଫଳରେ ତାଙ୍କ ନେତୃତ୍ୱରେ ବିଦ୍ରୋହ ଲଢିବା ଲାଗି ଅନ୍ୟ ରାଜାମାନେ ସଙ୍ଗଠିତ ହେବେ । ୧୮୧୭ ମସିହା ମାର୍ଚ୍ଚ ମାସ ଶେଷ ସପ୍ତାହ ବେଳକୁ ୫୦୦ କନ୍ଧ ଚୋହାର୍ ଆସି ଖୋର୍ଦ୍ଧାରେ ପହଞ୍ଚିଲେ ଓ ସେହିଠାରେ ବିଦ୍ରୋହ ଆରମ୍ଭ ହେଲା । ଜଗବନ୍ଧୁଙ୍କ ଅଧୀନରେ ଥିବା ବିଦ୍ରୋହୀ ଦଳବେହେରା ଏବଂ ପାଇକମାନେ ଚୋହାରମାନଙ୍କ ସହିତ ଯୋଗଦାନ କରିଥିଲେ ଓ ବିଦ୍ରୋହୀମାନେ ପ୍ରଥମେ ବାଣପୁର ଥାନା ସରକାରୀ ଅଫିସ୍ କୋଷାଗାର ଆକ୍ରମଣ କରି ଖୋର୍ଦ୍ଧା ଅଭିମୁଖେ ଯାତ୍ରା କଲାବେଳେ ବାଟରେ ଶହ ଶହ ପାଇକ ସେମାନଙ୍କ ସହ ଯୋଗ ଦେଇଥିଲେ । ଖୋର୍ଦ୍ଧାର ସରକାରୀ କର୍ମଚାରୀମାନେ ପାଇକମାନଙ୍କର ଏହି ବିଦ୍ରୋହରେ ପୂରାପୂରି ସ୍ତମ୍ଭୀଭୂତ ହୋଇଯାଇଥିଲେ ।

ବିଦ୍ରୋହ ସମ୍ବାଦ ପାଇ ଇଂରେଜ କର୍ତ୍ତୃପକ୍ଷ ଲେଫ୍‌ଟନାଣ୍ଟ ଫ୍ରିଡାକ୍ସଙ୍କ ନେତୃତ୍ୱରେ ଏକ ସୈନ୍ୟଦଳ ଖୋର୍ଦ୍ଧା ପଠାଇଥିଲେ ଏବଂ ଲେଫ୍‌ଟନାଣ୍ଟ ଫାରିସ୍‌ଙ୍କ ନେତୃତ୍ୱରେ ଅନ୍ୟ ଏକ ସୈନ୍ୟଦଳକୁ ପିପିଲି ଅଭିମୁଖେ ପଠାଇଥିଲେ । ଲେଫ୍‌ଟନାଣ୍ଟ ଟ୍ରାଭିସ୍‌ଙ୍କ ନେତୃତ୍ୱରେ ୬୪ଜଣ ସିପାହୀଙ୍କୁ ନେଇ କଟକର ମାଜିଷ୍ଟ୍ରେଟ୍ ମଧ ଖୋର୍ଦ୍ଧା ଅଭିମୁଖେ ଯାଇଥିଲେ । କିନ୍ତୁ ସମଗ୍ର ଖୋର୍ଦ୍ଧାରେ ବିଦ୍ରୋହର ବହ୍ନି ଜଳୁଥିବାର ଦେଖି ସେ ସେଠାରୁ ଫେରିଆସିଥିଲେ । ଏତିକିବେଳେ କେତେକ ବିଦ୍ରୋହୀ ପାଇକ ରଥିପୁର ଗ୍ରାମର ସରବରାକାର ଚରଣ ପଟ୍ଟନାୟକଙ୍କୁ ହତ୍ୟା କରିଥିଲେ । ଜଗବନ୍ଧୁଙ୍କର ପିଣ୍ଡାରିମାନଙ୍କ ସହ ସମ୍ପର୍କ ଥିଲା ବୋଲି ଚରଣ ପଟ୍ଟନାୟକ ଅଭିଯୋଗ କରିଥିଲେ ଏବଂ ସେହି ଅଭିଯୋଗ ଅନୁସାରେ ଖୋର୍ଦ୍ଧାର ଦାରୋଗା ଜଗବନ୍ଧୁଙ୍କୁ ଗିରଫ କରିବା ପାଇଁ ଚେଷ୍ଟା କରିଥିଲେ ।

କ୍ରମେ ବିଦ୍ରୋହ ତେଜିଲା । ବିଦ୍ରୋହୀ ଓ ସିପାହୀମାନଙ୍କ ମଧ୍ୟରେ ଗୋଳା ବିନିମୟ ହେଲା ଏବଂ ସିପାହୀମାନଙ୍କ ଗୁଳିମାଡରେ ବିଦ୍ରୋହୀମାନେ ଛତ୍ରଭଙ୍ଗ ଦେଇ ପଳାଇଲେ । ଜଗବନ୍ଧୁଙ୍କ ନେତୃତ୍ୱରେ ୫୦୦ରୁ ଅଧିକ ପାଇକ ତଥା କନ୍ଧ ପୁରୀରେ ପ୍ରବେଶ କରିଥିଲେ । ସେତେବେଳେ ପୁରୀରେ ଇଂରେଜ ସୈନ୍ୟ ସଂଖ୍ୟା ମାତ୍ର ୧୮୦ । ତେଣୁ ଏତେ ଅଳ୍ପ ସୈନ୍ୟ ନେଇ ବିଦ୍ରୋହୀମାନଙ୍କ ସହିତ ଲଢିବା ଅସମ୍ଭବ ଭାବି ଇଂରେଜ କ୍ୟାପ୍‌ଟେନ୍ କଟକ ପ୍ରତ୍ୟାବର୍ତ୍ତନ କରିଥିଲେ । ଖୋର୍ଦ୍ଧାର ଗାଦିଚ୍ୟୁତ ରାଜା ସେତେବେଳେ ପୁରୀରେ ବାସ କରୁଥିଲେ । ବିଦ୍ରୋହୀମାନେ ତାଙ୍କୁ ବିଦ୍ରୋହର ନେତୃତ୍ୱ ନେବାକୁ ଅନୁରୋଧ କଲେ । କିନ୍ତୁ ଭୀତତ୍ରସ୍ତ ହୋଇ ଖୋର୍ଦ୍ଧା ରାଜା ନିଜେ ସେହି ନେତୃତ୍ୱ ନେଇପାରିନଥିଲେ ।

ଖୋର୍ଦ୍ଧାରୁ ବିଦ୍ରୋହୀ ପାଇକମାନେ କିଲାରୁପାସା ଆଡକୁ ଯାତ୍ରା କରି ଗୋପ ଓ କୁଜଙ୍ଗର ପାଇକମାନଙ୍କୁ ଏହି ବିଦ୍ରୋହ ପାଇଁ ଉତ୍ତେଜିତ କରିଥିଲେ । କେତେ ଜମିଦାର ବିଦ୍ରୋହକୁ ସମର୍ଥନ ଜଣାଇଲେ ଓ କେହି କେହି ସେମାନଙ୍କ ସହ ଯୋଗଦେଲେ ।

ଇଂରେଜ ସାମରିକ ଶକ୍ତି ତୁଳନାରେ ବିଦ୍ରୋହୀମାନଙ୍କ ଶକ୍ତି ଅତି ସୀମିତ ଥିଲା । ଖୋର୍ଦ୍ଧା, ପୁରୀ ଓ ଗୋପ ଏହି ତିନୋଟି ବିଦ୍ରୋହ କେନ୍ଦ୍ରରେ ଇଂରେଜ ଶାସକଙ୍କ ସାମରିକ ଆଇନ ଜାରି କରାଯାଇଥିଲା । ଗଡଜାତମାନଙ୍କରେ ବିଦ୍ରୋହ ନବ୍ୟାପିବା ପାଇଁ ଯଥେଷ୍ଟ ବ୍ୟବସ୍ଥା କରାଯାଇଥିଲା । ସୈନ୍ୟ ଘେରରେ ରାଜା କଟକ ଯାଉଥିବାବେଳେ ତାଙ୍କୁ ସେଠାରୁ ଅଲଗା କରିବା ପାଇଁ ପିପିଲିଠାରେ ବିଦ୍ରୋହୀମାନେ ଅନେକ ଚେଷ୍ଟା କରିଥିଲେ । ଫଳରେ ଇଂରେଜ ସୈନ୍ୟ ଓ ସିପାହୀମାନଙ୍କ ମଧ୍ୟରେ ସଂଘର୍ଷ ହୋଇଥିଲା ଏବଂ ଏଥିରେ ୧୯ ଜଣ ବିଦ୍ରୋହୀ ପ୍ରାଣ ହରାଇଥିଲେ ।

୧୮୧୭ ମସିହା ମେ ମାସ ବେଳକୁ ଖୋର୍ଦ୍ଧା, ପୁରୀ ଏବଂ ପିପିଲିରେ ବିଦ୍ରୋହ ପ୍ରାୟ ପ୍ରଶମିତ ହୋଇଥିଲା । ବର୍ଷାଋତୁ ଆରମ୍ଭ

ହେବାରୁ କୁଜଙ୍ଗର ବିଦ୍ରୋହ ଡେରିରେ ଅର୍ଥାତ୍ ସେପ୍ଟେମ୍ବର ମାସକୁ ପ୍ରଶମିତ ହେଲା ଏବଂ ଅକ୍ଟୋବର ୨ ତାରିଖରେ କୁଜଙ୍ଗର ବିଦ୍ରୋହୀ ରାଜା ଇଂରେଜମାନଙ୍କଠାରେ ଆତ୍ମସମର୍ପଣ କରିଥିଲେ ।

ବିଦ୍ରୋହ ଦବି ଗଲା । କିନ୍ତୁ ଜଗବନ୍ଧୁ ଏବଂ ତାଙ୍କର ମୁଖ୍ୟ ଅନୁଚରମାନେ ସମର୍ପଣ ନକରି ଜଙ୍ଗଲକୁ ପଳାଇଗଲେ । ୭ବର୍ଷ ଧରି ଇଂରେଜ ସରକାର ବକ୍ସିଙ୍କୁ ଗିରଫ କରିପାରି ନଥିଲେ । ଖୋର୍ଦ୍ଧାର ସାଧାରଣ ଲୋକ ତଥା ଘୁମୁଷର ଓ ନୟାଗଡର ରାଜ୍ୟମାନଙ୍କ ସାହାଯ୍ୟରେ ଜଗବନ୍ଧୁ ଜଙ୍ଗଲରେ ଆତ୍ମଗୋପନ କରିବାରେ ସମର୍ଥ ହୋଇଥିଲେ । ବାହ୍ୟତଃ ବିଦ୍ରୋହ ପ୍ରଶମିତ ହୋଇଥିଲେ ମଧ୍ୟ ବିଦ୍ରୋହୀମାନଙ୍କ ମନୋବଳ ପୂରାପୂରି ଭାଙ୍ଗିଯାଇ ନଥିଲା । ସେମାନେ ଭିନ୍ନ ଉପାୟରେ ବିଶୃଙ୍ଖଳା ସୃଷ୍ଟି କଲେ । ଡକାୟତି, ଘରପୋଡି, ନରହତ୍ୟା ଚାଲିଲା । ସେମାନେ ରାଜସ୍ୱ ସଂଗ୍ରହରେ ମଧ୍ୟ ବାଧା ସୃଷ୍ଟି କଲେ । ଆଇନ୍ ଶୃଙ୍ଖଳା ପରିସ୍ଥିତିର ମୁକାବିଲା ପାଇଁ ସରକାରଙ୍କ ପକ୍ଷରୁ ଯୁଗ୍ମ ଇଂରେଜ ମାଜିଷ୍ଟ୍ରେଟ୍ ନିଯୁକ୍ତ ହେଲେ ।

ମାତ୍ର ଇଂରେଜ ସରକାର ଦେଖିଲେ ଯେ, ଆତ୍ମଗୋପନକାରୀ ବିଦ୍ରୋହୀମାନେ ସମର୍ପଣ ନକଲା ପର୍ଯ୍ୟନ୍ତ ଆଇନଶୃଙ୍ଖଳା ରକ୍ଷା କରାଯାଇପାରିବ ନାହିଁ । ବହୁ ବିଦ୍ରୋହୀ ଘରଦ୍ୱାର ଛାଡି ବଣପାହାଡରେ ଲୁଚି ରହିଥିଲେ । ତେଣୁ କଟକର କମିଶନର ଘୋଷଣା କଲେ ଯେ, ଏକ ନିର୍ଦ୍ଦିଷ୍ଟ ବୟସସୀମା ପର୍ଯ୍ୟନ୍ତ ସାଧାରଣ ବିଦ୍ରୋହୀମାନଙ୍କୁ କ୍ଷମା ଦିଆଯିବ । ଉଦ୍ଦେଶ୍ୟ ଥିଲା ସାଧାରଣ ବିଦ୍ରୋହୀମାନଙ୍କ ସାହାଯ୍ୟରେ ବକ୍ସିଙ୍କୁ ପଡା କରିବା । ଆହୁରି ମଧ୍ୟ ଯେଉଁମାନେ ବକ୍ସି ଓ ତାଙ୍କର ଅନୁଚରମାନଙ୍କୁ ଧରାଇ ଦେବେ, ସେମାନଙ୍କୁ ସରକାର ପୁରସ୍କାର ଦେବେ ବୋଲି ଘୋଷଣା କରିଥିଲେ । ମାତ୍ର ଏହି ନିୟମ ଜଗବନ୍ଧୁ ଓ ତାଙ୍କର ମୁଖ୍ୟ ଅନୁଚରମାନଙ୍କ ପାଇଁ ଲାଗୁ ହୋଇପାରିନଥିଲା ।

ଫଳରେ ବହୁ ବିଦ୍ରୋହୀ ଘରକୁ ଫେରିଲେ । ମାତ୍ର ବକ୍ସି ଓ ତାଙ୍କର ମୁଖ୍ୟ ଅନୁଚରମାନଙ୍କୁ ଆତ୍ମସମର୍ପଣ ପାଇଁ ବାଧ କରିବା ଉଦ୍ଦେଶ୍ୟରେ ସରକାର ବକ୍ସି ଓ ତାଙ୍କ ଅନୁଚରମାନଙ୍କର ସମସ୍ତ ଭୂସମ୍ପତ୍ତି ବାଜ୍ୟାପ୍ତ କରିଥିଲେ । ତା'ଛଡା ଜଗବନ୍ଧୁଙ୍କ ପରିବାରର ସମସ୍ତ ସଦସ୍ୟମାନଙ୍କୁ ବନ୍ଦୀ କରିଥିଲେ । ଦୀର୍ଘଦିନ ଧରି ଲୁଚି ରହିବା ପରେ ୧୮୨୫ ମସିହାରେ ଜଗବନ୍ଧୁ ଆତ୍ମସମର୍ପଣ କଲେ ଓ ବାଧ ହୋଇ ବକ୍ସି ଉପାଧି ତ୍ୟାଗ କରିଥିଲେ । ଚୌରଙ୍ଗ ଜମିଦାରୀ ଉପରେ ତାଙ୍କ ଦାବି ରହିଲା ନାହିଁ । ତାହାଛଡା ଇଂରେଜ ସରକାରଙ୍କ ଠାରୁ ମାସିକ ଭତ୍ତା ନେଇ କଟକରେ ରହିବା ପାଇଁ ମଧ୍ୟ ସେ ରାଜି ହୋଇଥିଲେ । କେବଳ ସେହି ସର୍ତ୍ତରେ ଇଂରେଜ ସରକାର ତାଙ୍କୁ କ୍ଷମା ଦେଇଥିଲେ । କଟକରେ ବାସ କରୁଥିବା ଅବସ୍ଥାରେ ୧୮୨୯ ମସିହା ଜାନୁଆରୀ ୨୪ ତାରିଖରେ ବକ୍ସି ଜଗବନ୍ଧୁ ପ୍ରାଣତ୍ୟାଗ କରିଥିଲେ ।

ଇଂରେଜମାନେ ପାଇକ ବିଦ୍ରୋହକୁ ଦମନ କରିବା ଅନିବାର୍ଯ୍ୟ ଥିଲା, କାରଣ ଇଂରେଜ ସରକାରଙ୍କ କୂଟନୀତି ଓ ଶକ୍ତି ଆଗରେ ପାଇକମାନଙ୍କ ଶକ୍ତି ତୁଚ୍ଛ ଥିଲା । ମାତ୍ର ସମ୍ପୂର୍ଣ୍ଣ ଦମନ ନକରି ଏହାର ସମ୍ମୁଖୀନ ହେବା ଦ୍ୱାରା ଇଂରେଜ ସରକାର କେତେକ ପ୍ରଶାସନିକ ସଂସ୍କାରର ଆବଶ୍ୟକତା ଅନୁଭବ କରି କେତେକ ପ୍ରତିକାର ମୂଳକ ବ୍ୟବସ୍ଥା ଗ୍ରହଣ କରିଥିଲେ । ଫଳରେ ଦୀର୍ଘମିଆଦୀ ଭୂବନ୍ଦୋବସ୍ତର ପ୍ରଚଳନ, ସରକାରୀ ଚାକିରିରେ ଓଡ଼ିଆମାନଙ୍କ ନିଯୁକ୍ତି ଏବଂ ସରକାର ଓ ପ୍ରଜାମାନଙ୍କ ମଧ୍ୟରେ ସମ୍ପର୍କ ବୃଦ୍ଧି ଘଟିଲା । ଇଂରେଜ ସରକାର ଆହୁରି ଅନେକ ଜନପ୍ରିୟ ପଦକ୍ଷେପ ନେଇଥିଲେ । ରାଜସ୍ୱ ହାର କମ୍ କରାଯାଇଥିଲା । କେତେକ ମୂଳ ଜମିଦାରମାନଙ୍କୁ ସେମାନଙ୍କ ଜମିଦାରୀ ଫେରାଇ ଦିଆଯାଇଥିଲା ।

କେଉଁ ଅନ୍ଧାରୀମୂଳକରେ ଜନ୍ମ ନେଇ ଏହି କିଶୋର ସଂଗ୍ରାମୀ ଧ୍ରୁବ-ପ୍ରହ୍ଲାଦ-ଧର୍ମପଦ ଦେଶର ଅନ୍ୟତମ ବିସ୍ମୟ ହୋଇ ରହିଗଲେ ଯେ ରହିଗଲେ । ହେଲେ ପରବର୍ତ୍ତୀ ବିପ୍ଳବୀମାନଙ୍କୁ ତାଙ୍କ ସଂଗ୍ରାମ ଜୀବନ ପ୍ରେରଣା ଦେଲା । ସ୍ୱାଧୀନତା ସଂଗ୍ରାମରେ ଏକ ସମ୍ମାନୀୟ ଆସନ ଲାଭ କଲେ ଏହି ସଂଗ୍ରାମୀ ପୁରୁଷ । ନାଁ ରହିଗଲା ଇତିହାସରେ । କ୍ରମେ ଦୀର୍ଘ ଦେଢଶହ ବର୍ଷ ଧରି ଓଡ଼ିଶାରେ ଚାଲିଆସିଥିବା ସ୍ୱାଧୀନତା ସଂଗ୍ରାମ ବହୁ ଘଟଣା ଓ ସଂଗ୍ରାମ ବୀରଙ୍କ କୃତିତ୍ୱକୁ ନେଇ ସମୃଦ୍ଧ ହେଲା । କେତେ ହଜିଯାଇଛନ୍ତି ସ୍ମୃତି ତଳେ, କେତେ ରହିଛନ୍ତି ସ୍ମୃତିପଟରେ । ସେମାନେ ସମସ୍ତେ ଆମର ସ୍ମରଣୀୟ । ସେମାନଙ୍କର ତ୍ୟାଗ ଆଜିର ସମାଜ ମନେ ପକାଇବା ଅନିବାର୍ଯ୍ୟ ।

ପ୍ରାଧ୍ୟାପିକା, ବିଜେବି ସ୍ୱୟଂଶାସିତ
ମହାବିଦ୍ୟାଳୟ, ଭୁବନେଶ୍ୱର

# ଶହୀଦ ବାଜି ରାଉତ

ଶ୍ରୀନିବାସ ଆଚାର୍ଯ୍ୟ

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଭାରତୀୟମାନଙ୍କର ଅସୀମ ତ୍ୟାଗ, ନିରବଚ୍ଛିନ୍ନ ସଂଗ୍ରାମ, ଅତୁଳନୀୟ ସାଧନା ସାହସିକତା ଆତ୍ମବଳୀ ଦାନ ଫଳରେ ଆମ ଜନ୍ମଭୂମି ଭାରତ ପରାଧୀନତା ଶୃଙ୍ଖଳରୁ ମୁକ୍ତିଲାଭ କରିଥିଲା । ନିର୍ମମ, ନିଷ୍ଠୁର ଓ ନୃଶଂସ ଇଂରେଜ ସରକାରଙ୍କର ଅମାନୁଷିକ ଅତ୍ୟାଚାର, ଜେଲ, ଜୋରିମାନା ତଥା ବନ୍ଧୁକମୁନକୁ ଭ୍ରୂକ୍ଷେପ ନକରି ବର୍ଷ ବର୍ଷ ଧରି ତୁହାକୁ ତୁହା ମୁକ୍ତିକାମୀ ସଂଗ୍ରାମକୁ ଜାରି ରଖିଥିଲେ ଭାରତୀୟମାନେ । ଏହି ସଂଗ୍ରାମରେ ଶତ ଶତ ଭାରତୀୟ ଦେଶପ୍ରେମୀ ସ୍ୱଇଚ୍ଛାରେ ଜେଲ ଓ ଜୋରିମାନା ଦେବା ସଙ୍ଗେ ସଙ୍ଗେ ଆତ୍ମବଳୀ ଦେବାକୁ ପଛାଇ ନଥିଲେ । ସେହି ଶହୀଦମାନଙ୍କ ମଧ୍ୟରେ ୧୯୩୮ ମସିହାର ଢେଙ୍କାନାଳ ଜିଲ୍ଲାର ଗଡଜାତ ଆନ୍ଦୋଳନର ବିଶ୍ୱର ସର୍ବ କନିଷ୍ଠ ସାରଥୀ ୧୨ ବର୍ଷର ବାଳକ ବାଜି ରାଉତ ଅନ୍ୟତମ । ଯେତେବେଳେ ଭାରତର ଅର୍ଥନୈତିକ, ସାମାଜିକ ଓ ରାଜନୈତିକ ପରିବେଶ କଳୁଷିତ ଓ ଭାରତୀୟମାନେ ସ୍ୱାଧୀନତା ଚେତନାରେ ଜର୍ଜରିତ, ଠିକ୍ ସେତିକି ବେଳେ ନିରୀହ, କୋମଳମତୀ ୧୨ବର୍ଷର ବାଳକ ବାଜି ରାଉତର ଆତ୍ମବଳୀ ଆଣିଦେଇଥିଲା ସ୍ପନ୍ଦନ ଓ ଦିଗ୍‌ଦର୍ଶନର ପ୍ରକୃତ ପଥ । ଏହି ଦୁଃଖଦ ଘଟଣାଟି ସୃଷ୍ଟି କରିପାରିଥିଲା ଶତଶତ ମୁକ୍ତିକାମୀ ସଂଗ୍ରାମୀ, ଦେଶପ୍ରେମୀଙ୍କ ଶିରାପ୍ରଶିରାରେ ଦେଶ ଓ ଜାତିର ସ୍ୱାଭିମାନ ତଥା ସ୍ୱାଧୀନତାର ସ୍ୱାଦ । ୧୨ବର୍ଷ ବାଳକ ବାଜି ରାଉତର ଆତ୍ମବଳୀ ସୃଷ୍ଟି କରିଦେଲା ଭାରତୀୟ ଇତିହାସରେ ଏକ ସ୍ୱତନ୍ତ୍ର ଅଧ୍ୟାୟ । ଚିରଦିନ ପାଇଁ ବାଜି ରାଉତଙ୍କର ଆତ୍ମବଳୀ ହୋଇଗଲା ସମଗ୍ର ମାନବ ସମାଜ ପାଇଁ ଏକ ପ୍ରେରଣାର ଉତ୍ସ ।

ଓଡ଼ିଶାର ଭୌଗୋଳିକ ଇତିହାସକୁ ଅନୁଧ୍ୟାନ କଲେ ଜଣାଯାଏ, ବହୁ ଆବହମାନ କାଳରୁ ଓଡ଼ିଶାକୁ ବିଭିନ୍ନ ରାଜା ରାଜୁଡ଼ାମାନେ ଶାସନ କରୁଥିଲେ । କିନ୍ତୁ ମୋଗଲ ବଂଶୀୟ ରାଜୁତି ସମୟରେ ଓଡ଼ିଶାରେ ଦୁଇ ପ୍ରକାର ରାଜୁତି ପ୍ରଚଳନ ଥିଲା । ମୋଗଲ ବନ୍ଦୀ ଓ ଅନ୍ୟଟି ଗଡଜାତ ରାଜ୍ୟ । ତତ୍କାଳୀନ ସମୟରେ ଓଡ଼ିଶାରେ ୨୬ଟି ଗଡଜାତ ଗଠିତ ହୋଇ ରାଜୁତି କରାଯାଉଥିଲା । ସେଥିମଧ୍ୟରେ ଢେଙ୍କାନାଳ ଗଡଜାତ ଅନ୍ୟତମ । ୧୮୦୩ ମସିହାରେ ଇଂରେଜ ସରକାରଙ୍କର ଓଡ଼ିଶା ଆକ୍ରମଣ କରିବା ଫଳରେ ଗଡଜାତଗୁଡ଼ିକର କଳେବର ପରିବର୍ତ୍ତନ ହୋଇଥିଲା । ରାଜାମାନେ ଇଂରେଜ ସରକାରଙ୍କ ସହିତ ବନ୍ଧୁତ୍ୱ ସ୍ଥାପନ କରି ପ୍ରଜାମାନଙ୍କୁ ଶୋଷଣ କରିବାକୁ ଲାଗିପଡ଼ିଲେ । ରାଜାମାନଙ୍କ କର୍ମଚାରୀମାନଙ୍କର ପ୍ରତ୍ୟକ୍ଷ ଦୌରାତ୍ମ୍ୟରେ ପ୍ରଜାମାନେ ଅତିଷ୍ଠ ହୋଇଗଲେ । ଏହି ଅନ୍ୟାୟ ଓ ଶୋଷଣ ନୀତି ଶାସନରେ ନିରୀହ ଜନତା ମଧ୍ୟ ବାଦ ପଡ଼ିନଥିଲେ । ତେଣୁ ପ୍ରଜାମାନଙ୍କର ଆର୍ଥିକ, ସାମାଜିକ ଓ ସାଂସ୍କୃତିକ ଅବସ୍ଥା କ୍ରମଶଃ ଦୁର୍ବଳରୁ ଦୁର୍ବଳତର ହେବାକୁ ଲାଗିଲା । ଏହି ଅନ୍ୟାୟ ଓ ଶୋଷଣନୀତି ଶାସନକୁ ପ୍ରତିହତ କରାଇବା ପାଇଁ ଜାତୀୟ ସ୍ତରରେ କେତେଜଣ ବୁଦ୍ଧିଜୀବୀ, ଜ୍ଞାନୀ, ଗୁଣି ଓ ଦେଶପ୍ରେମୀଙ୍କ ଉଦ୍ୟମ ଫଳରେ ୧୯୩୧ ମସିହାରେ ଗଡଜାତ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଓଡ଼ିଶାର ପ୍ରତ୍ୟେକ ଗଡଜାତରେ ଏହି ଆନ୍ଦୋଳନ ୧୯୩୭ ମସିହାଠାରୁ ତୀବ୍ର ରୂପ ଧାରଣ କରିଥିଲେ ମଧ୍ୟ ଢେଙ୍କାନାଳବାସୀଙ୍କର ଏହା ସ୍ୱତନ୍ତ୍ର ସ୍ଥାନ ବହନ କରିଥିଲା ।

ଢେଙ୍କାନାଳ ଗଡଜାତର ରାଜାଥିଲେ ଶଙ୍କର ପ୍ରତାପ । ସେ ଥିଲେ ଅତ୍ୟନ୍ତ ଅପାରଗ । ଇଂରେଜ ସରକାରଙ୍କ ସହିତ ସନ୍ଧି କରି ତାଙ୍କର ପ୍ରତିନିଧି ଭାବରେ ଶାସନ କରୁଥିଲେ । ରାଜାଙ୍କ କର୍ମଚାରୀ ଓ ପୋଲିସ ଫଉଜମାନେ ଗରିବ ଓ ନିରୀହ ପ୍ରଜାମାନଙ୍କ ଉପରେ ବିନା କାରଣରେ ଜୁଲମ କରି ଅସାମାଜିକ କାର୍ଯ୍ୟ କରିବାକୁ ପଛାଉନଥିଲେ । ଧୀରେ ଧୀରେ ପ୍ରଜାମାନଙ୍କର କ୍ଷୋଭ ଓ ଅସନ୍ତୋଷର ବହ୍ନି ପ୍ରଜ୍ୱଳିତ ହୋଇ ଏକ ବିରାଟ ରୂପ ଧାରଣ କରିଥିଲା । ଗଡଜାତ ଆନ୍ଦୋଳନର ଆହ୍ୱାନ ଢେଙ୍କାନାଳର ପ୍ରଜାମାନଙ୍କୁ ରାଜାଙ୍କ ବିରୋଧରେ ଆନ୍ଦୋଳନ କରିବାକୁ ଖୋରାକ ଯୋଗାଇଥିଲା । ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ ବୀର

ବୈଷ୍ଣବ ପଟ୍ଟନାୟକ, ମହେଶ୍ୱର ସୁବାହୁ ସିଂ, କୃତିବାସ ପ୍ରଧାନ, ସାରଙ୍ଗଧର ଦାସ, ଲକ୍ଷ୍ମୀଧର ସାହୁ, ଭଗବତୀ ଚରଣ ପାଣିଗ୍ରାହୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ । ଏହାକୁ ସାହାଯ୍ୟ କରିଥିଲେ ପିପୁଲସ କନଫରେନ୍ସର ରାଧାନାଥ ରଥ, ବ୍ରଜ ସୁନ୍ଦର ଦାସ, ଭୁବନାନନ୍ଦ ଦାସ ଓ ବାଲୁଙ୍କେଶ୍ୱର ଆଚାର୍ଯ୍ୟ । ଦୃଢ ସାଙ୍ଗଠନିକ ନେତୃତ୍ୱ ଓ ପ୍ରଜାମାନଙ୍କର ଅସନ୍ତୋଷର ମିଶ୍ରଣ ଦ୍ୱାରା ୧୯୩୭ ମସିହାରେ ଢେଙ୍କାନାଳ ଗଡଜାତରେ ଜନ୍ମଲାଭ କରିଥିଲା ପ୍ରଜାମଣ୍ଡଳ ଆନ୍ଦୋଳନ ।

ଓଡ଼ିଶାର ଭୁବନ ଗ୍ରାମଥିଲା ଏହି ଆନ୍ଦୋଳନର କେନ୍ଦ୍ରସ୍ଥଳୀ । ଢେଙ୍କାନାଳ ଗଡଜାତର ପ୍ରତ୍ୟେକ ଗ୍ରାମର ମୁଖିଆଙ୍କ ଉପସ୍ଥିତିରେ ଭୁବନଠାରେ ଆନ୍ଦୋଳନର କାର୍ଯ୍ୟପନ୍ଥା ସ୍ଥିର ହୋଇଥିଲା । ଏହି ଆନ୍ଦୋଳନର ମୂଳ ଲକ୍ଷ୍ୟଥିଲା ପ୍ରଜାମାନଙ୍କର ରାଜନୈତିକ, ଅର୍ଥନୈତିକ ଓ ଆଇନ୍‌ଗତ ଓ ସାମାଜିକ ଅଧିକାର ସାବ୍ୟସ୍ତ । ପ୍ରଜାମାନେ ରାଜାଙ୍କ ଆଦେଶକୁ ପାଳନ କରିବା ଦୂରର କଥା, କିନ୍ତୁ ବିରୋଧ କରି ଆନ୍ଦୋଳନର ଡାକରା ଦେଇଥିଲେ । ପ୍ରତିଶୋଧପରାୟଣ ହୋଇ ରାଜା ଇଂରେଜ ସରକାରଙ୍କୁ ପ୍ରଜାମେଳି ଆନ୍ଦୋଳନର କର୍ମୀ ଓ ସ୍ଥାନର ନାମ ଗୁପ୍ତ ଭାବରେ ସୂଚନା ଦେଇଥିଲେ । ଏହି ଆନ୍ଦୋଳନକୁ ଦମନ କରିବା ପାଇଁ ଇଂରେଜ ସରକାରଙ୍କର ପୋଲିସ ଫଉଜ ବାରମ୍ବାର ନିରୀହ ପ୍ରଜା ଓ ସଂଗ୍ରାମୀଙ୍କ ଉପରେ ଲହୁଲୁହାଣ ଆକ୍ରମଣ କରୁଥିଲେ । ତେଣୁ ଢେଙ୍କାନାଳର ସଂଗ୍ରାମୀ ଭାଇମାନେ ଜୀବନକୁ ପଣ କରି ଶପଥ ନେଇଥିଲେ ଯେ, ବେକ କଟିଯାଉ ପଛେ ଇଂରେଜ ସରକାରଙ୍କୁ ଦେଶରୁ ବିତାଡିତ କରି ରାଜାଙ୍କୁ ଶାସନରୁ ପତନ ଘଟାଇବେ । ଲୁଟାଛପା ଓ ଛକାପଞ୍ଝାର ସୁବିଧା ସୁଯୋଗ ଦେଖି ପ୍ରଜାମାନେ ସରକାରଙ୍କର ବିପୁଳକ୍ଷତି ଯେପରି କରୁଥିଲେ, ତା'ଠାରୁ ଅଧିକ ମାତ୍ରାରେ କ୍ଷତି ଘଟାଉଥିଲେ ସରକାରଙ୍କର ପୋଲିସ ବାହିନୀ । ବାର ବର୍ଷର ବାଳକ ବାଜି ରାଉତ ପ୍ରଜାମଣ୍ଡଳ ଆନ୍ଦୋଳନରେ ଜଣେ ସକ୍ରିୟ କର୍ମୀ ରୂପେ କାର୍ଯ୍ୟ କରୁଥିଲେ ।

ତୁଳସୀ ଦୁଇପତ୍ରରୁ ବାସିଲା ପରି ବାଜି ରାଉତର ବାଲ୍ୟ ଜୀବନରୁ ତା'ର ଶକ୍ତି, ସାମର୍ଥ୍ୟ, ଭଦ୍ର ଶିଷ୍ଟାଚାରର ବ୍ୟବହାର ଓ ଉତ୍ତମଗୁଣ ଆଭାସ କୁସୁମୀତ ହୋଇଥିଲା । ବୀର ବିପ୍ଳବୀ ବାଜି ରାଉତ ୧୯୨୬ ମସିହା ଅକ୍ଟୋବର ମାସ ୫ତାରିଖରେ ଢେଙ୍କାନାଳ ଜିଲ୍ଲାର ନୀଳକଣ୍ଠପୁର ଗ୍ରାମରେ ଏକ ଗରିବ ଖଣ୍ଡାୟତ ବଂଶରେ ପିତା ହରି ରାଉତ ଓ ମାତା ରାଣୀଆ ଦେବୀଙ୍କ କୋଳମଣ୍ଡନ କରିଥଲେ । ପିଲାଟି ଚାଲିବା, ହସିବା ଓ ଦରୋଟି କଥା କହିବା ସମୟରେ ପିତା ହରି ରାଉତଙ୍କୁ ହରାଇ ବାପ ଛେଉଣ୍ଡ ହୋଇଥିଲେ । ଘରେ ତା'ର ମା' ବ୍ୟତୀତ ଅନ୍ୟ କେହି ନଥିଲେ । ବାଡି ଗୋବରେ ଗୋଟେ ହେଲେ ବି ତା'ର ଭୂସମ୍ପତ୍ତି ନଥିଲା । ପୁତ୍ର ବାଜିକୁ ନିଧି ସମ୍ପତ୍ତି ବୋଲି ଭାବି ସ୍ୱାମୀହରା ମାତା ରାଣୀଆ ଦେବୀ ଜୀବନ କଟାଉଥିଲେ । ନିଜ ପେଟରୁ ଦାନା କାଟି ପୁଅ ମୁହଁରେ ଆହାର ଦେଇ ବଞ୍ଚାଇଥିଲେ ପୁଅ ବାଜିକୁ । ମାତା ରାଣୀଆ ଯୌବନର ପ୍ରଥମାର୍ଦ୍ଧରେ ସ୍ୱାମୀଙ୍କୁ ହରାଇ କାଳାତିପାତ କରିଥିବେ ତାହା ଅନୁମେୟ । ଭାଗ୍ୟର ବିଡମ୍ବନା ବ୍ୟତୀତ ଆଉ କ'ଣ ହୋଇପାରେ । କିନ୍ତୁ ପିତାମାତାଙ୍କର ଜଣେ ସୁଯୋଗ୍ୟ ସନ୍ତାନ ରୂପେ ବଂଶ ପରମ୍ପରାର ଯଶ ତଥା କୀର୍ତ୍ତି ରଖିଗଲା ଚିରଦିନ ପାଇଁ ବାଜି ରାଉତ । ଦେଶ ଜାତିର ଗର୍ବ ଓ ଗୌରବର ଧ୍ୱଜା ଅମର ରଖିଗଲା ଇତିହାସରେ ।

ନିଷ୍ଠୁର, ନିର୍ମମ, ଅତ୍ୟାଚାରୀ ଇଂରେଜ ସରକାରଙ୍କର ବନ୍ଧୁକ ମୁନରେ ବାଜି ରାଉତ ଶହୀଦ ହୋଇଥିଲା ୧୯୩୮ ମସିହା ଅକ୍ଟୋବର ମାସ ୧୧ ତାରିଖର ରାତ୍ରର ଶେଷ ମୁହୂର୍ତ୍ତରେ । ସଂଗ୍ରାମର କେନ୍ଦ୍ରସ୍ଥଳୀ ଥିଲା ଭୁବନ ଗ୍ରାମ । ପ୍ରଜାମେଳି ଆନ୍ଦୋଳନର ସଂଗ୍ରାମୀମାନଙ୍କୁ ଦମନ କରିବା ପାଇଁ ରାଜା ଶଙ୍କର ପ୍ରତାପଙ୍କ ପରାମର୍ଶକ୍ରମେ ଇଂରେଜ ସରକାରର ପୋଲିସବାହିନୀ ବିଜୟ ଘୋଷଙ୍କ ନେତୃତ୍ୱରେ ଭୁବନଠାରେ ପହଞ୍ଚିଥିଲେ । ପୂର୍ବ ଯୋଜନାନୁସାରେ ଆରମ୍ଭ ହୋଇଗଲା ପୋଲିସର ପ୍ରଜାମାନଙ୍କ ଉପରେ ତୁହାକୁ ତୁହା ଲାଠି ପ୍ରହାର, ଅକଥନୀୟ ଅତ୍ୟାଚାର ତଥା ବର୍ବରୋଚିତ ଦମନଲୀଳା । ପୂର୍ବରୁ ପ୍ରଜାମଣ୍ଡଳର ବିପ୍ଳବୀ ସଂଗ୍ରାମୀମାନେ ପୋଲିସର ଦମନଲୀଳାର କିଛି ସୂଚନା ପାଇନଥିଲେ ଓ ପ୍ରତିରୋଧ କରିବା ପାଇଁ ପ୍ରସ୍ତୁତ ନଥିଲେ । ତେଣୁ ସେମାନେ ପୋଲିସର ଦମନଲୀଳାକୁ ପ୍ରତିରୋଧ କରିବା ପାଇଁ ପ୍ରସ୍ତୁତ ନଥିଲେ । ଅନ୍ଧାର ରାତିରେ ଦାଣ୍ଡ କବାଟ ଭାଙ୍ଗି ଘରେ ଘରେ ପଶି ଲାଠୀ ପ୍ରହାର ସଙ୍ଗେ ସଙ୍ଗେ ଗୃହଦାହ, ଲୁଟ୍‌ତରାଜ ଇତ୍ୟାଦି ନୃଶଂସ କାଣ୍ଡମାନ ଘଟାଇଲେ । ଦୀର୍ଘଦିନ ଧରି ଲାଗିରହିଥିବା ଝଡବର୍ଷା ଓ ଅନ୍ଧାର ରାତି ଥିଲା ସଂଗ୍ରାମୀମାନଙ୍କ ପାଇଁ ମୁଖ୍ୟ ପ୍ରତିବନ୍ଧକ । ଯେତବେଳେ ଶହ ଶହ ସଂଗ୍ରାମୀ ଏକତ୍ରିତ ହୋଇ ଆକ୍ରମଣ କରିବା ପାଇଁ ପ୍ରସ୍ତୁତ ହେଲେ, ସେତେବେଳେ ପୋଲିସ ବାହିନୀ, ଜୀବନବିକଳରେ ଲୁଚିଛପି ପଛଘୁଞ୍ଚା ଦେଲେ । ଏଠାରେ ରଘୁ ନାୟକ ନାମକ ଜଣେ ସଂଗ୍ରାମୀ ପୋଲିସଗୁଳିରେ ଶିକାର ହୋଇଥିଲେ ।

ଭୁବନଠାରୁ ଢେଙ୍କାନାଳ ସଦର ମହକୁମା ତଥା ପୋଲିସ ବାହିନୀର ଶିବିର ଗୋଟିଏ ବାଟଥିଲା । ସେହିବାଟ ମଧ୍ୟରେ ନୀଳକଣ୍ଠପୁର ନଦୀଘାଟଟି ପ୍ରତିବନ୍ଧକ ଥିଲା । ନୀଳକଣ୍ଠପୁରର ପ୍ରଜାମାନେ ଏହି ଘାଟରେ ଶତ୍ରୁମାନଙ୍କୁ ପାରି କରିବେ ନାହିଁ ବୋଲି ପୂର୍ବରୁ ସ୍ଥିର କରିଥିଲେ । ଏହା ସମସ୍ତ ପ୍ରଜାମାନଙ୍କ ଉପସ୍ଥିତିରେ ଏକ ଗ୍ରାମ୍ୟ ସଭାରେ ସ୍ଥିର ହୋଇଥିଲା । ଦିବାନିଶି ନଦୀଘାଟ ଜଗିବା ପାଇଁ ନାଉରୀଆ ସମେତ ଗ୍ରାମ ତରଫରୁ ଜଣେ ଜଣେ ପ୍ରତିଦିନ କାର୍ଯ୍ୟବଣ୍ଟା ହୋଇଥିଲା । ବ୍ରାହ୍ମଣୀ ନଦୀର ଦୁଇକୂଳ ଜଳର ପ୍ରଖର ସ୍ରୋତରେ ଉଚ୍ଛୁଳି ପଡୁଥିଲା । ସେଦିନ ରାତିଟି ଥିଲା କିଟିମିଟିଆ ଅନ୍ଧାର । କେହି କେହି କୁହନ୍ତି ସେ ଦିନ ରାତିରେ ଘାଟ ଜଗିବାର ପାଳିଥିଲା ବାଜି ରାଉତର । କିନ୍ତୁ ଆଉ କେହି କେହି କୁହନ୍ତି ସ୍ୱଇଚ୍ଛାରେ ବାଜିରାଉତ ଘାଟ ଜାଗିବା ପାଇଁ ଗ୍ରାମ ସଭାରେ ଅନୁରୋଧ କରିଥିଲେ ।

ବାଜି ରାଉତ କେତେଜଣ ସ୍ୱେଚ୍ଛାସେବୀଙ୍କ ଗହଣରେ ସେହି ରାତିରେ ଘାଟ ଜଗିଥାଏ । ହଠାତ୍ ପୋଲିସ ଫୌଜ ଭୁବନରେ ଅତ୍ୟାଚାର କରି ଜୀବନ ବିକଳରେ ନଦୀଘାଟ ପାରିହେବାକୁ ଉପସ୍ଥିତ ହୋଇଗଲେ ନୀଳକଣ୍ଠପୁର ନଦୀ ଘାଟରେ । ବଡପାଟିରେ ଡାକି ପକାଇଲେ ନାଉରୀଆକୁ ନଦୀ ପାର କରିବା ପାଇଁ । ଅବିଳମ୍ବେ ବୀରଦର୍ପରେ ପୋଲିସମାନଙ୍କ ସମ୍ମୁଖକୁ ଆସି ଶତସିଂହର ଗର୍ଜନ ପରି ୧୨ ବର୍ଷର ବାଳକ ଜବାବ ଦେଲା ଗୋରା ସୈନିକଙ୍କୁ । ପ୍ରଜାମଣ୍ଡଳର ଆଦେଶ ମୁଁ ଆପଣଙ୍କୁ ଡଙ୍ଗାରେ ବସାଇ ଦେବିନାହିଁ । ପାରି କରିବା ଦୂରର କଥା । ସିପାହୀମାନେ କହିଲେ ଡଙ୍ଗା ଆଣି ଆମ୍ଭମାନଙ୍କୁ ପାରି କରିଦେ, ନଚେତ୍ ଗୁଳିକରି ମାରିଦେବୁ। ଏହାଶୁଣି ମଧ୍ୟ ନିର୍ଭୀକତାରେ ଉତ୍ତର ଦେଲା ବାଜି, "ଆରେ ରଖ ତୁମର ଗୁଳି" । ତୁମ୍ଭେମାନେ ହେଉଛ ନରହନ୍ତା, ନିଷ୍ଠୁର ଓ ନିର୍ଦ୍ଦୟ ଅତ୍ୟାଚାରୀ । ତୁମେ ଗ୍ରାମକୁ ଗ୍ରାମ ବୁଲି ଧନଜୀବନ ନଷ୍ଟ କରିବା ସଙ୍ଗେ ସଙ୍ଗେ ମା', ଭଉଣୀଙ୍କ ଇଜତ ନେଉଛ । ଏହି କେଇପଦ କଥା ବାଜିର ପାଟିରୁ ସରିଛି କି ନାହିଁ ଗୁଳିଟିଏ ଆସି ବାଜିଗଲା, ତା'ର ମୁଣ୍ଡର କପାଳରେ । କଅଁଳିଆ ଖପୁରିଟା ଦୁଇଫାଳ ହୋଇଗଲା ଓ ସେ ତଳେ ପଡିଗଲା କ୍ଷଣକ ମଧ୍ୟରେ । ପୁନରାୟ ଉଠି ବଡପାଟିରେ ଡାକ ପକାଇଲା ଗ୍ରାମବାସୀଙ୍କୁ । ତା'ପରେ ସବୁକିଛି ଶେଷ ।

ବାଜି ରାଉତର ପାଟିଶୁଣି ବିଜୁଳିବେଗରେ ଧାଇଁ ଆସିଲେ ଶତଶତ ଗ୍ରାମବାସୀ ଓ ପ୍ରଜାମଣ୍ଡଳର କର୍ମୀ । ସମସ୍ତେ ବାଜିର ମୃତ ଶରୀର ଦେଖି ରାଗରେ ଜର୍ଜରିତ ହୋଇଉଠିଲେ । ସମସ୍ତେ ଡଙ୍ଗାର ଦଉଡିକୁ ଧରି ବିରୋଧ କଲେ ସିପାହୀମାନଙ୍କୁ ପାରି କରିବାକୁ । ଜୀବନବିକଳରେ କୌଶଳ କରି ଡଙ୍ଗାର ଦଉଡିକୁ ମଝିରୁ କାଟି ଡଙ୍ଗାରେ ନଦୀର ମଝିଗର୍ଭକୁ ପଳାଇଗଲେ ପୋଲିସ ବାହିନୀ । ମଝି ନଦୀରୁ ଗୋଟିଏ ପରେ ଗୋଟିଏ ଗୁଳିକରି ବହୁତଲୋକଙ୍କୁ ରକ୍ତାକ୍ତ କରିଦେଲେ । ସେଥିମଧ୍ୟରୁ ୬ଜଣ ମୃତ୍ୟୁବରଣ କରିଥିଲେ ସେହି ଘାଟରେ । ବାଜିରାଉତ ସମେତ ସେଠାରେ ମୃତ୍ୟୁବରଣ କରିଥିବା ଶହୀଦ ହେଲେ ହୁରୁଷି ପ୍ରଧାନ, ରଘୁ ନାୟକ, ନଟ ମଲ୍ଲିକ, ଲକ୍ଷ୍ମଣ ମଲ୍ଲିକ ଓ ଫଗୁ ସାହୁ । ଦେଶ ଓ ଜାତିର ସ୍ୱାର୍ଥ ପାଇଁ ବାଜି ରାଉତ ସମେତ ଛଅଜଣଙ୍କର ରକ୍ତରେ ବ୍ରାହ୍ମଣୀ ନଦୀର ଜଳ ରକ୍ତାକ୍ତ ହେବା ସଙ୍ଗେ ସଙ୍ଗେ ପବିତ୍ର ହୋଇଗଲା ନୀଳକଣ୍ଠପୁର ଗ୍ରାମର ମାଟି ।

ତା'ପର ଦିନ ସକାଳେ ସେହି ୬ଜଣ ଶହୀଦଙ୍କୁ ଶୋଭାଯାତ୍ରା ଓ ପୁଷ୍ପମାଲ୍ୟ ଅର୍ପଣ କରି ଡଙ୍ଗା ସାହାଯ୍ୟରେ ଜେନାପୁର ନିଆଯାଇଥିଲା । ସେଠାରୁ ଟ୍ରେନ ଯୋଗେ କଟକ ନିଆଯାଇଥିଲା । କଟକ ଷ୍ଟେସନଠାରୁ ବିରାଟ ଶୋଭାଯାତ୍ରାରେ ହଜାର ହଜାର ସ୍ୱାଧୀନତା ପ୍ରେମୀଙ୍କର ଶୋକାକୁଳ ପରିବେଶରେ କଟକର ବିଭିନ୍ନ ସ୍ଥାନରେ ସମ୍ମାନିତ ହୋଇଥିଲା । ତତ୍ପରେ କାଠଯୋଡି କୂଳ ଖାନନଗର ମଶାଣିରେ ଗୋଟିଏ ଚିତାରେ ଦାହ କରାଯାଇଥିଲା । ଏହି ଶୋଭାଯାତ୍ରା ଓ ଦାହ କାର୍ଯ୍ୟରେ ଥିଲେ ସଂଗ୍ରାମୀ ବନ୍ଧୁ ଅନନ୍ତ ପଟ୍ଟନାୟକ, ରବି ଘୋଷ, ମୋତିଲାଲ ତ୍ରିପାଠୀ, ଗୋବିନ୍ଦ ମହାନ୍ତି ଓ ସଚ୍ଚିଦାନନ୍ଦ ରାଉତରାୟ । ସେହି ଅମର ଶହୀଦଙ୍କର ଚିତା ଭସ୍ମ ଓଡ଼ିଶା ଗଡଜାତ ରାଜୁତିର ପତନ ଓ ଭାରତୀୟ ସ୍ୱାଧୀନତାର ମୂଳଦୁଆ ପକାଇଥିଲା । ଫଳରେ ବେଶିଦିନ ରହିଲା ନାହିଁ ଇଂରେଜ ସରକାରଙ୍କର କୁଶାସନ ଓ ରାଜା ରାଜୁଡାମାନଙ୍କର ଦମନଲୀଳା । ସର୍ବୋପରି ୧୨ବର୍ଷର କୋମଳମତୀ ବାଳକ ବାଜି ରାଉତର ଆତ୍ମବଳୀ ଆଣିଦେଇଥିଲା ପ୍ରତ୍ୟେକ ଭାରତୀୟମାନଙ୍କ ହୃଦୟରେ ସ୍ପନ୍ଦନ । ତାଙ୍କର ବୀରତ୍ୱ, ସାହସିକତା, ନୀତି ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ଦେଶପ୍ରେମୀ ଭାରତୀୟମାନଙ୍କର ଅସୀମ ତ୍ୟାଗ ଓ ସାଧନା ଫଳରେ ଘଟଣାର ୯ବର୍ଷପରେ ଅର୍ଥାତ୍ ୧୯୪୭ ମସିହା ଅଗଷ୍ଟ ୧୫ତାରିଖରେ ଦେଶ ସ୍ୱାଧୀନ ହେଲା । ଚିରଦିନ ପାଇଁ ଧୂଳିସାତ ହୋଇଗଲା ଲୋମହର୍ଷ, ଅକଥନୀୟ ଓ ନିଷ୍ଠୁର ରାଜାରାଜୁଡା ଶାସନ । ମଶାଣିର ଚିତାଭସ୍ମ ସିନା ମିଶିଗଲା ମାଟିରେ, କିନ୍ତୁ ରଖିଗଲା ଯଶ ଓ କୀର୍ତ୍ତି ଭାରତର ଇତିହାସ ପୃଷ୍ଠାରେ ।

ବାଜି ରାଉତ ସିନା ନିରୀହ, ଅଶିକ୍ଷିତ, ୧୨ ବର୍ଷର ପିଲା, କିନ୍ତୁ ତାଙ୍କର କର୍ତ୍ତବ୍ୟ ତଥା ଦେଶ ଓ ଜାତି ପାଇଁ ଅବଦାନ ପାଖରେ ବହୁ ଗୁଣୀ, ଜ୍ଞାନୀ, ପଣ୍ଡିତ, ଶିକ୍ଷିତ ଓ ବିଦ୍ୱାନମାନେ ସମକ୍ଷକ ହେବା ଅସମ୍ଭବ । ସେ ଆଜି ଆମ୍ଭମାନଙ୍କ ପାଖରେ ନଥିଲେ ମଧ୍ୟ ଚିରଦିନ ପାଇଁ ଅମର ହୋଇଗଲେ । ଦେଶ ଓ ଜାତିର ଏକ ଅଭ୍ୟୁଦୟ ସ୍ମାରକୀ ସ୍ତମ୍ଭ ହୋଇ ରହିଗଲେ ବାଜି ରାଉତ ।

ବାଜି ରାଉତ ସହିତ ଛଅଜଣଙ୍କର ଅସାଧାରଣ ଦେଶପ୍ରେମ, ସାହସ ଓ ଅସୀମ ତ୍ୟାଗ ଜାତି ପାଇଁ ମହାନ ଗର୍ବ ଓ ଗୌରବ । ଆଜିର ଯୁବପିଢି ତାଙ୍କରି ନୀତି, ଆଦର୍ଶରେ ଅନୁପ୍ରାଣିତ ହେବା ଏକାନ୍ତ କାମ୍ୟ । ଓଡ଼ିଶା କାହିଁକି ସମଗ୍ର ଭାରତର ନାଗରିକ ସେହି ମହାପୁରୁଷଙ୍କ ବୀଜମନ୍ତ୍ରରେ ଦିକ୍ଷିତ ହୋଇ କାର୍ଯ୍ୟ କଲେ, ସେମାନଙ୍କର ଆତ୍ମା ସଦ୍‌ଗତି ହେବା ସଙ୍ଗେ ସଙ୍ଗେ ସମାଜ ପ୍ରଗତିର ଶୀର୍ଷ ସୋପାନରେ ଉପନୀତ ହୋଇପାରିବ ।

ପ୍ଲଟ ନଂ - ୭୮୫/୧୨୪୦
ଦୁର୍ଗାମାଧବ ନଗର, ଭରତପୁର,
ଭୁବନେଶ୍ୱର

# କଳା ଠାକୁର

କମଳାକୃଷ୍ଣ ତ୍ରିପାଠୀ

କଳା ଠାକୁର ଆହେ କଳା ଠାକୁର
କଳା ମୁହେଁ ଚକା ଆଖି ଭାରି ସୁନ୍ଦର ।
ସେ ଚକା ଆଖିରେ ଦେଖ ସାରା ସଂସାର
ସଂସାର ତ ଗଢା ପୁଣି ତୁମ ହାତର ।

ଶୁଣିପାର ତୁମେ ପରା ବିନା କାନରେ
ଭ୍ରମିଆସ ତିନିପୁର ଗୋଟେ କ୍ଷଣରେ
ଛୁଇଁପାର ହୃଦୟକୁ ହାତ ନଥାଇ
ସେମିତି ତ ବସିଅଛ ପାଦ ଲୁଚାଇ ।

ତମପରି ହେବା ପାଇଁ ଜଗତ ସାଇଁ
କେତେ ଦଳ କେତେ ନେତା କେତେ ଗୋସାଇଁ
ତ୍ୟାଗ କେତନ ଉଡୁଛି କେତେ ଭବନେ
ଠାକୁର ସାଜନ୍ତି ନିଜେ, ଆପଣା ମନେ ।

ନିଜ ପାଇଁ ଅଣଷଠି, ପୁଟିଏ ସଂସାର ପାଇଁ
ଦାନୀପଣେ ଅମରତ୍ୱ ରଚିବା ଚାହିଁ
ଚାରିଆଡେ କଳାମୁହଁ ଶବଦ ଧଳା
କଥାରେ ଅମୃତ କାମ ଜହର ବୋଳା ।

କଳା ଠାକୁର ଆହେ କଳା ଠାକୁର
ନୂଆ ଦିଅଁମାନେ ଆଜି ଭାରି ହୁନ୍ଦର ।

ସୃଜନ୍ୟ ନିଳୟ
ପୁରୁଷୋତ୍ତମ ନଗର
ଓ.ଏସ୍.ଇ.ବି. ଆଇ.ବି ରୋଡ୍
ଜୟପୁର (କୋରାପୁଟ)

# କର୍ମବୀର ଗୌରୀଶଙ୍କର – ଏକ ବିରଳ ବ୍ୟକ୍ତିତ୍ୱ

ଦୁଃଖିଶ୍ୟାମ ଦାସ

ପୁଣ୍ୟମୟୀ ବୀରଭୂମି ଓଡ଼ିଶାର ପୂର୍ବଗୌରବ ଯେପରି ମହିମାମଣ୍ଡିତ ଓ ଗାରିମାମୟ ସେହିପରି କରୁଣ ଓ ମର୍ମନ୍ତୁଦ ମଧ । ସୂର୍ଯ୍ୟବଂଶୀ ରାଜତ୍ୱର ଅବସାନ ପରେ, ୧୫୬୮ ଖ୍ରୀଷ୍ଟାବ୍ଦଠାରୁ ଓଡ଼ିଶାର ଭାଗ୍ୟରବି ଅସ୍ତମିତ ହୋଇ ଦୀର୍ଘ ତିନିଶହ ବର୍ଷରୁ ଊର୍ଦ୍ଧ୍ୱକାଳ ଧରି ବିଦେଶୀ ଆଫଗାନ ମୁସଲମାନ, ମୋଗଲ, ମରହଟ୍ଟା ଓ ପରେ ପରେ ଇଂରେଜମାନଙ୍କ କବଳରେ କବଳିତ ହୋଇଥିଲା । ଫଳରେ ଓଡ଼ିଶାର ଭାଗ୍ୟାକାଶ ଅନିର୍ବଚନୀୟ କରାଳ ଛାୟାରେ ଆଚ୍ଛାଦିତ ହୋଇ ଶ୍ରୀହୀନ ହେବାକୁ ଲାଗିଲା । ବିଶେଷକରି ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନଙ୍କର ଓଡ଼ିଶା ଦଖଲ ଓ ଶୋଷଣ ନୀତି ଓଡ଼ିଆ ଜାତିର ମେରୁଦଣ୍ଡକୁ ସମୂଳେ ଦୋହଲାଇ ଦେଇଥିଲା । ସୂର୍ଯ୍ୟାସ୍ତ ଆଇନ ବଳରେ ବହୁ ବଂଗୀୟ ଧନାଢ୍ୟ ବ୍ୟକ୍ତିଙ୍କୁ ସ୍ୱଳ୍ପ ମୂଲ୍ୟରେ ଓଡ଼ିଶାର ଜମିଦାରୀ ବିକ୍ରୟ କରି ସେମାନେ ଓଡ଼ିଶାବାସୀଙ୍କୁ ଦରିଦ୍ର, ଭୂମିହରା ଓ ହୀନବୀର୍ଯ୍ୟ କରିଦେଇଥିଲେ । ପୁଣି ଅଖଣ୍ଡ ଓଡ଼ିଶାକୁ ଖଣ୍ଡବିଖଣ୍ଡିତ କରି କେବଳ ଉପକୂଳବର୍ତ୍ତୀ କଟକ, ପୁରୀ ଓ ବାଲେଶ୍ୱର ବ୍ୟତୀତ ଅନ୍ୟ ସମସ୍ତ ଅଞ୍ଚଳକୁ ବଂଗ, ବିହାର, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜ ପ୍ରଦେଶଭୁକ୍ତ କରାଯାଇ ଓଡ଼ିଆ ଜାତିର ସଂହତି, ସ୍ୱାଭିମାନ, ଶିକ୍ଷା ଓ ସଂସ୍କୃତି ଆଦିକୁ ଧ୍ୱଂସ କରିବାର ଏକ ହୀନ ଚକ୍ରାନ୍ତ କରାଗଲା । ପଶ୍ଚିମ ଓଡ଼ିଶାରେ ହିନ୍ଦୀ, ଦକ୍ଷିଣରେ ତେଲୁଗୁ ଓ ଉପକୂଳବର୍ତ୍ତୀ ଓଡ଼ିଶାରେ ବଙ୍ଗଭାଷା ପ୍ରଚଳନ କରି ଓଡ଼ିଆ ଭାଷାର ପ୍ରାଧାନ୍ୟ ହ୍ରାସ ନିମନ୍ତେ ପ୍ରକ୍ରିୟାକରଣ କରାଯାଇ ଭାଷାବିଲୋପ ନୀତିର ସୂତ୍ରପାତ କରାଗଲା । ଏପରିକି 'ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ନୁହେଁ ' ପ୍ରଚାର କରି ଓଡ଼ିଶାରେ ବଙ୍ଗ ଭାଷାର ପ୍ରସାର ନିମନ୍ତେ ଷଡଯନ୍ତ୍ର ଚାଲିଲା । ଫଳରେ ଓଡ଼ିଆ ଭାଷା ବିଲୋପ ସାଧନର ଅପଚେଷ୍ଟାକୁ ପ୍ରତିହତ କରିବା ନିମନ୍ତେ ପ୍ରବଳ ଭାଷା ଆନ୍ଦୋଳନ ମୁଣ୍ଡଟେକି ଉଠିଲା ଓଡ଼ିଶାରେ । ଠିକ୍ ଏହିଭଳି ଏକ ସନ୍ଧିକ୍ଷଣରେ ତଥା ଘୋର ଦୁର୍ଦ୍ଦିନରେ ଯେତେବେଳେ ଓଡ଼ିଆ ଭାଷା, ସାହିତ୍ୟ, ସଂହତି ଓ ସ୍ୱାଭିମାନ ବିପନ୍ନ ହୋଇଥିଲା, ସେତିକିବେଳେ ଯେଉଁ ସୁଯୋଗ୍ୟ ସନ୍ତାନ ଓ ବରପୁତ୍ରଗଣ ବୀରପ୍ରସବିନୀ ଉତ୍କଳ ଜନନୀର ଆଖିରୁ ଲୁହ ପୋଛି ମୁଖମଣ୍ଡଳରେ ହସ ଫୁଟାଇବା ଲାଗି ତ୍ୟାଗପୂତ ଭାବେ ସଂଗ୍ରାମର ହୋମଯଜ୍ଞରେ ଆତ୍ମାହୂତି ଦେବାକୁ ଆଗୁସାର ହୋଇଥିଲେ, ସେମାନଙ୍କ ମଧ୍ୟରେ କର୍ମବୀର ଗୌରୀଶଙ୍କରଙ୍କ ନାମ ସର୍ବାଗ୍ରେ ସ୍ମରଣଯୋଗ୍ୟ । ଏହି ସଙ୍କଟମୟ ପରିବେଶରେ ମାତୃଭୂମି ଓ ମାତୃଭାଷାର ପବିତ୍ର ସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରି ଭାଷା, ସାହିତ୍ୟ ଓ ସଂସ୍କୃତିର ପୁନରୁଦ୍ଧାର ନିମନ୍ତେ ପ୍ରବଳ ପ୍ରୟାସୀ ଉତ୍କଳଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, କବିବର ରାଧାନାଥ, ଭକ୍ତକବି ମଧୁସୂଦନ, କଥାଶିଳ୍ପୀ ଫକୀରମୋହନ ଓ ସ୍ୱଭାବକବି ଗଙ୍ଗାଧର ପ୍ରମୁଖଙ୍କୁ ସାମ୍ନାକୁ ଆଣିବାରେ ଦୂରଦ୍ରଷ୍ଟା ଓ ଜାତୀୟ ଚେତନାର ଦ୍ୟୋତକ କର୍ମବୀର ଗୌରୀଶଙ୍କରଙ୍କ ନେତୃତ୍ୱ ଉଲ୍ଲେଖନୀୟ ।

କର୍ମବୀର ଗୌରୀଶଙ୍କର ଥିଲେ ଏକାଧାରାରେ ଜଣେ ନିଷ୍ଠାପର ସମାଜ ସଂସ୍କାରକ, ଦକ୍ଷ ସଙ୍ଗଠକ, ଓଡ଼ିଆ ସାମ୍ବାଦିକତାର ଭଗୀରଥ, ପ୍ରଚଣ୍ଡ ଜାତୀୟତାବାଦୀ ନେତା ତଥା ଶିକ୍ଷା ଓ ସଂସ୍କୃତି ପ୍ରେମୀ ବଳିଷ୍ଠ ସ୍ୱାଭିମାନୀ ବ୍ୟକ୍ତିତ୍ୱ । ତାଙ୍କ ସଂଗ୍ରାମମୟ ଜୀବନର ଘଟଣାବହୁଳ ସମାଜଧର୍ମୀ ତଥା ଲୋକାଭିମୁଖୀ କାର୍ଯ୍ୟାବଳୀ ଅନୁଧ୍ୟାନ କଲେ ଜଣାଯାଏ ଯେ ତାଙ୍କ ବ୍ୟତିରେକେ ଆଧୁନିକ ଓଡ଼ିଶାର ଇତିହାସ ରଚନା ପୂର୍ଣ୍ଣାଙ୍ଗ ହୋଇପାରିବ ନାହିଁ । ସେ ଓଡ଼ିଶା ଓ ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା ପାଇଁ ନିସ୍ୱାର୍ଥପର, ନିରଳସ ଓ ନିର୍ଭୀକ ଭାବରେ କର୍ମକୁ ଜୀବନର ମହାନ ବ୍ରତଭାବେ ଗ୍ରହଣ କରି ଶେଷ ପର୍ଯ୍ୟନ୍ତ

ସାଧନା ପଥରୁ ତିଳେମାତ୍ର ବିଚ୍ୟୁତ ହୋଇନଥିଲେ । ଆମର ସୌଭାଗ୍ୟକୁ ଊନବିଂଶ ଶତାବ୍ଦୀର ଏକ ଘଡିସନ୍ଧି ସମୟରେ ଓଡ଼ିଶାର ହିତାର୍ଥେ ସେ ଯେପରି ଅନ୍ୟମାନଙ୍କୁ ସାଙ୍ଗରେ ଧରି ସହଯୋଗ ଓ ସହମତି ଭିତ୍ତିରେ ସାଫଲ୍ୟ ଅର୍ଜନ କରିଥିଲେ, ସେହି ଅନବଦ୍ୟ ଅବଦାନ ପାଇଁ ସେ ଚିର ନମସ୍ୟ । ଏହି କର୍ମଯୋଗୀ ବହୁମୁଖୀ ପ୍ରତିଭାଧାରୀ ବ୍ୟକ୍ତିତ୍ୱ ୧୮୩୮ ଖ୍ରୀଷ୍ଟାବ୍ଦ ଜୁଲାଇ ୧୩ ତାରିଖ ଆଷାଢ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ ଅବିଭକ୍ତ କଟକ ଜିଲ୍ଲା ଅସୁରେଶ୍ୱର ପ୍ରଗଣା ଦୀକ୍ଷିତପଡାର ରାୟ ପରିବାରରେ ଭୂମିଷ୍ଠ ହୋଇଥିଲେ । ତାଙ୍କର ପୂର୍ବପୁରୁଷ ବଂଗ ପ୍ରଦେଶ ବର୍ଦ୍ଧମାନ ଜିଲ୍ଲାର ଚମ୍ପାପୁର ଗ୍ରାମରୁ ଉଠିଆସି ଏଠାରେ ବାସ କରୁଥିଲେ । ଗୌରୀଶଙ୍କର ଗ୍ରାମ୍ୟ ଚାଟଶାଳୀରୁ ଓଡ଼ିଆ ଭାଗବତ, ମଥୁରାମଙ୍ଗଳ ଓ ଛାନ୍ଦ ସହିତ ଗ୍ରାମ ନିକଟସ୍ଥ 'ମକତବ'ରେ ଉର୍ଦ୍ଦୁ ଓ ଫରାସୀ ଭାଷା ଶିକ୍ଷା କରିଥିଲେ । ଏହାପରେ ସେ କଟକ ଆସି ଚୌଧୁରୀ ବଜାରସ୍ଥିତ ପିତା ସଦାଶିବଙ୍କ ସହ ସ୍ୱକୀୟ ବାସ ଗୃହରେ ରହିଥିଲେ ଏବଂ କଟକ ଇଂରାଜୀ ସ୍କୁଲରେ ଆଠବର୍ଷ ଅଧ୍ୟୟନ କାଳରେ ନିଜର କୃତିତ୍ୱ ଲାଗି ମାସିକ ଆଠ ଟଙ୍କା ମେଧାବୃତ୍ତି ପାଉଥିଲେ । କଟକରେ ଉଚ୍ଚଶିକ୍ଷା ପାଇଁ ସେତେବେଳେ ସୁବିଧା ନଥିବାରୁ ୧୯୫୬ ଖ୍ରୀଷ୍ଟାବ୍ଦରେ ସେ କଲିକତା ଯାଇ ହୁଗୁଳି କଲେଜରେ ନାମ ଲେଖାଇଲେ । ଆଜିକାଲି ପରି ସେତେବେଳେ ରାସ୍ତାଘାଟ ଓ ଗମନାଗମନର ସୁବିଧା ନଥିବାରୁ ଶଗଡଗାଡିରେ କଟକରୁ ବାଲେଶ୍ୱରରେ ପହଞ୍ଚିବାକୁ ତାଙ୍କୁ ବାରଦିନ ଲାଗିଲା ଏବଂ ସେଠାରୁ ପଦବ୍ରଜରେ ସେ ଦଶଦିନ ପରେ କଲିକତାରେ ପହଞ୍ଚିଥିଲେ । ଅଧ୍ୟୟନ କାଳରେ ଇଂରାଜୀ ଭାଷା ଓ ସାହିତ୍ୟରେ ତାଙ୍କର ଅସାଧାରଣ ପ୍ରତିଭା ଦେଖି ଅଧ୍ୟାପକମାନେ ତାଙ୍କୁ ଖୁବ ଶ୍ରଦ୍ଧା କରୁଥିଲେ । ମାତ୍ର ୧୮୫୮ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସରେ ଉଚ୍ଚଶିକ୍ଷା ଲାଭରେ ଡୋରିବାନ୍ଧି ପିତାଙ୍କ ନିର୍ଦ୍ଦେଶକ୍ରମେ ତାଙ୍କୁ ଓଡ଼ିଶାକୁ ଫେରିବାକୁ ପଡିଥିଲା ।

ଗୌରୀଶଙ୍କର କଲିକତାରୁ ଫେରି ବାଲେଶ୍ୱରରେ ଚାକିରି କରୁଥିବା ଜଣେ ପିତୃବ୍ୟଙ୍କ ପାଖରେ ରହିଥିଲେ । ସେତେବେଳେ ଇଂରାଜୀ ଶିକ୍ଷାର ଛାପ ପଡିଥିବା ଗୌରୀଶଙ୍କରଙ୍କ ଭଳି ପ୍ରତିଭାବାନ ଯୁବକଙ୍କୁ ବାଲେଶ୍ୱର ସ୍କୁଲରେ ମାସିକ କୋଡିଏ ଟଙ୍କା ବେତନରେ ଅସ୍ଥାୟୀ ଶିକ୍ଷକ ଚାକିରିରେ ନିଯୁକ୍ତି ସୁଯୋଗ ମିଳିଲା । ଏହି ସ୍କୁଲରେ ଅଧ୍ୟୟନରତ ଓଡ଼ିଶାର ତିନିଜଣ ଯୋଗଜନ୍ମା ପୁରୁଷ କବିବର ରାଧାନାଥ, ରାଜା ବୈକୁଣ୍ଠ ନାଥ ଓ ଉତ୍କଳଗୌରବ ମଧୁସୂଦନଙ୍କର ଗୁରୁ ହେବାର ସୌଭାଗ୍ୟ ଲାଭ କରିଥିଲେ ଗୌରୀଶଙ୍କର । ଏହି ଅସ୍ଥାୟୀ ଚାକିରିର ଅବଧି ପୂରିବାରୁ ସେ ୧୮୫୯ ଖ୍ରୀଷ୍ଟାବ୍ଦରେ କଟକ ଫେରି ଜନସେବାରେ ମନୋନିବେଶ କରିଥିଲେ ଓ 'ଯୁବକମାନଙ୍କ ସଂଘ' ଗଠନ କରିଥିଲେ । ଗରିବ ଓ ଦୁସ୍ଥ ଜନତାର ସେବା କରିବା ଏହି ସଙ୍ଗଠନର ମୂଳ ଲକ୍ଷ୍ୟଥିଲା । ମାତ୍ର ସେବା କାର୍ଯ୍ୟରେ ଅର୍ଥର ଆବଶ୍ୟକତାକୁ ଭରଣା କରିବା ନିମନ୍ତେ ସେ କଟକ କମିସନରଙ୍କ କାର୍ଯ୍ୟାଳୟରେ କୋଡିଏ ଟଙ୍କା ମାସିକ ବେତନରେ ପୋଷ୍ଟାଲ ଏଜେଣ୍ଟ ଭାବେ ଚାକିରି କଲେ । ଚାକିରି କ୍ଷେତ୍ରରେ ତାଙ୍କର ଦକ୍ଷତା, କର୍ତ୍ତବ୍ୟପରାୟଣତା, ସଚ୍ଚୋଟତା, ନୀତିନିଷ୍ଠତା ଓ ସମୟାନୁବର୍ତ୍ତିତା ଯୋଗୁଁ ସେ ଉପର ଅଫିସରମାନଙ୍କର ପ୍ରିୟପାତ୍ର ହୋଇପାରିଥିଲେ । ସେ ବାରବର୍ଷ କାଳ ଚାକିରି ଜୀବନରେ କୌଣସି ତ୍ରୁଟିପୂର୍ଣ୍ଣ ନିଷ୍ପତ୍ତି ହେଉ କି କ୍ଷମତାର ଅପବ୍ୟବହାର ହେଉ ବା କ୍ଷମତାପନ୍ନ ପଦାଧିକାରୀଙ୍କ ନୀତିହୀନ ଆଦେଶ ହେଉ ନିର୍ଭୀକ ଭାବରେ ସେ ଏହାର ଦୃଢ ପ୍ରତିବାଦ କରୁଥିଲେ । ସ୍ୱାଧୀନଚେତା ସଚ୍ଚୋଟ ମଣିଷ ଭାବେ ସେ ସାଧାରଣ ଚାକିରି ଜୀବନରେ ଯେପରି ସାହସ ଓ ନିରପେକ୍ଷତା ଅବଲମ୍ବନ କରି ଦୃଷ୍ଟାନ୍ତ ରଖିଯାଇଛନ୍ତି, ତାହା ଆଜିର ସ୍ୱାଧୀନ ଦେଶରେ କ୍ୱଚିତ ଦୃଷ୍ଟିଗୋଚର ହୁଏ । ଜନ୍ ବିମସ୍‌ଙ୍କ ଭଳି ଅଫିସର ମଧ୍ୟ ତାଙ୍କ କାର୍ଯ୍ୟଧାରାକୁ ପ୍ରଶଂସା କରି କଟକ ସହରରେ ଗୌରୀଶଙ୍କର ଜଣେ ମାତ୍ର ମଣିଷ ବୋଲି ମତପୋଷଣ କରିଥିଲେ । ତତ୍କାଳୀନ ଜିଲ୍ଲା ଜର୍ଜ ମାକଫାର୍‌ସନ ତାଙ୍କ ଦକ୍ଷତା ଓ ସମ୍ମାନର ଉଚିତ ବିଚାରକରି ତାଙ୍କୁ ମାସିକ ଅଧିକ ବେତନରେ ଅନୁବାଦକ ଚାକିରିରେ ନିଯୁକ୍ତି ଦେଇଥିଲେ । ସେ ସୁଚାରୁରୂପେ ଚାକିରି ଜୀବନ ଶେଷକରି ୧୮୯୨ ଖ୍ରୀଷ୍ଟାବ୍ଦରେ ଅବସର ଗ୍ରହଣ କରିଥିଲେ ।

ସରକାରୀ ଚାକିରିରେ ଅବସ୍ଥାପିତ କାଳରେ ଗୌରୀଶଙ୍କର ଦୁଇଜଣ ସମଧର୍ମା ମହାନ ଦେଶପ୍ରେମୀ ତଥା ସ୍ୱାଧୀନଚେତା ବ୍ୟକ୍ତିଙ୍କ ସହ ପରିଚିତ ହୋଇଥିଲେ । ଜଣେ କମିସନର ଅଫିସରେ ଶିରସ୍ତାଦାର ଥିଲାବେଳେ ଅନ୍ୟଜଣକ କଲେକ୍ଟରଙ୍କ ଅଫିସରେ କିରାଣୀ ଥିଲେ । ସେମାନେ ଅନ୍ୟ କେହି ନୁହଁନ୍ତି ଆଦିନେତା ବିଚିତ୍ରା ନନ୍ଦ ଦାସ ଓ ବିଶିଷ୍ଟ କବି ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ରଥ । ଏହି ତ୍ରିଶକ୍ତିଙ୍କ ଉଦ୍ୟମରେ ସମାଜ

ସଂସ୍କାର, ଶିକ୍ଷା ବିସ୍ତାର, ଦରିଦ୍ର ଓ ଅସହାୟଙ୍କ ସେବାପାଇଁ କାର୍ଯ୍ୟକ୍ରମମାନ ସ୍ଥିର କରାଗଲା। ଏହି ପରିପ୍ରେକ୍ଷୀରେ ସେମାନେ ଏକ ଛାପାଖାନା ପ୍ରତିଷ୍ଠା ପାଇଁ ପ୍ରୟାସୀ ହୋଇଉଠିଲେ । ଲକ୍ଷ୍ୟଧାର୍ଯ୍ୟ ହେଲା ପ୍ରାଚୀନ ଓଡ଼ିଆ ପୁରାଣ ସାହିତ୍ୟ ଓ ପ୍ରତିଷ୍ଠିତ କବିମାନଙ୍କ ଉପରେ ସାହିତ୍ୟ ରଚନା କରି ଜନସାଧାରଣଙ୍କ ମଧ୍ୟରେ ଏହାର ବହୁଳ ପ୍ରଚାର ପ୍ରସାର କରିବା ପାଇଁ। ଏମାନଙ୍କ ଉଦ୍ୟମରେ ତିନିଶହ ଜଣ ଅଂଶୀଦାରଙ୍କୁ ନେଇ ମୋଟ ଟ୭,୫୦୦/– ଅଂଶଧନ ସଂଗ୍ରହ କରି ୧୮୬୫ ଖ୍ରୀଷ୍ଟାବ୍ଦରେ ' କଟକ ପ୍ରିଣ୍ଟିଂ କମ୍ପାନୀ' ନାମକ ଏକ ଛାପାଖାନା ଭଡାଘରେ ପ୍ରତିଷ୍ଠା କରାଗଲା । ଇତିମଧ୍ୟରେ ଗୌରୀଶଙ୍କର ତାଳପତ୍ର ପୋଥିମାନ ସଂଗ୍ରହକରି ପ୍ରାଚୀନ ସାହିତ୍ୟ ଓ କାବ୍ୟ ଉପରେ ଗଭୀର ଜ୍ଞାନ ଆହରଣରେ ମଗ୍ନ ରହିଲେ। ସେ ତାଳପତ୍ର ପୋଥିମାନଙ୍କରୁ ଓଡ଼ିଆ ଭାଷାରେ ଲିଖିତ ରାମାୟଣ, ମହାଭାରତ, ମହାକାବ୍ୟ, ଧର୍ମଗ୍ରନ୍ଥ ଓ ପୁରାଣ ଆଦି ଏହି କଟକ ପ୍ରିଣ୍ଟିଂ କମ୍ପାନୀରେ ପ୍ରକାଶ କରି ବହୁଳ ଭାବରେ ପ୍ରଚାର ପ୍ରସାର କଲେ । ବନ୍ଧୁତ୍ରୟ ମିଶି 'ଉତ୍କଳ ଦୀପିକା' ନାମକ ଏକ ସାପ୍ତାହିକ ସମ୍ବାଦପତ୍ର ୧୮୬୫ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସରେ ପ୍ରକାଶ କରିଥିଲେ । ଏହି ସମ୍ବାଦପତ୍ର ଜରିଆରେ ଓଡ଼ିଆମାନଙ୍କର ତତ୍କାଳୀନ ସମାଜ ଜୀବନର ପ୍ରତିଛବି ପ୍ରତିଫଳିତ ହେଲା । ଗୌରୀଶଙ୍କର ଏହି ପତ୍ରିକାଟିର ସମ୍ପାଦକ ଦାୟିତ୍ୱ ବହନ କରିବା ସହିତ କଟକ ପ୍ରିଣ୍ଟିଂ ପ୍ରେସର ପରିଚାଳନା ନିର୍ଦ୍ଦେଶକ ଥିଲେ । ସେ ପ୍ରିଣ୍ଟିଂ ପ୍ରେସ ସାଙ୍ଗକୁ ଏକ ଟାଇପ୍ ଫାଉଣ୍ଡାରୀ ପ୍ରତିଷ୍ଠା କରି ଭୁବନେଶ୍ୱରର ପଣ୍ଡିତ ସୁଦର୍ଶନ ନନ୍ଦଙ୍କ ସହଯୋଗରେ ଓଡ଼ିଆ ଟାଇପ୍ ଛପା ପାଠ୍ୟପୁସ୍ତକମାନ ପ୍ରକାଶ କରି କମ୍ ମୂଲ୍ୟରେ ବିକ୍ରୟ କରୁଥିଲେ ଏବଂ ଆଧୁନିକ ଲେଖକ, କବି ଓ ସାହିତ୍ୟିକମାନଙ୍କୁ ଉତ୍ସାହିତ କରି ସେମାନଙ୍କ ଲେଖା ପ୍ରକାଶ କରିବା ସହ ସାହିତ୍ୟର ପ୍ରସାର ଦିଗରେ ପଦକ୍ଷେପ ଗ୍ରହଣ କରିଥିଲେ । ଶ୍ରୀ କାମପାଲ ମିଶ୍ରଙ୍କ ପ୍ରଥମ ଓଡ଼ିଆ ଡ୍ରାମା 'ସୀତା ବିବାହ' ୧୮୮୨ ମସିହାରେ ସେ ପ୍ରକାଶ କରିଥିଲେ ।

ମାନବ ଜାତିର ଇତିହାସରେ ଓଡ଼ିଶାର ୧୮୬୫ ମସିହା ଲୋମହର୍ଷଣକାରୀ ଭୟାବହ ଦୁର୍ଭିକ୍ଷ ଭଳି ଘଟଣା କେବେ ଦୃଷ୍ଟିଗୋଚର ହୁଏନାହିଁ । ଏହିବର୍ଷ ମଇ ମାସରେ ଅସମ୍ଭବ ଧରଣର ପ୍ରବଳ ଲଗାଣ ବର୍ଷା ଓ ସେପ୍ଟେମ୍ବର ବେଳକୁ ସମ୍ପୂର୍ଣ୍ଣ ବର୍ଷାଶୂନ୍ୟତା ହେତୁ ଫସଲ ହାନି ଘଟିବାରୁ ଦୁର୍ଭିକ୍ଷ ଦେଖା ଦେଇଥିଲା । ଫଳରେ ହଜାର ହଜାର ସଂଖ୍ୟାରେ ଦୁର୍ଭିକ୍ଷ ପ୍ରପୀଡିତ ଲୋକମାନେ କ୍ଷୁଧାରେ ଆଉଟପାଉଟୁ ହୋଇ ଜୀବନ ହରାଇଥିଲେ । ଗଜପତି ଦିବ୍ୟସିଂହ ଦେବଙ୍କ ନବମ ଅଙ୍କରେ ଏହା ଘଟିଥିବାରୁ ଏହାକୁ ନଅ ଅଙ୍କ ଦୁର୍ଭିକ୍ଷ କୁହାଯାଏ । 'ଉତ୍କଳ ଦୀପିକା' ଏହି ଦୁର୍ଦ୍ଦିନରେ ଆଶାର ଆଲୋକ ବର୍ତ୍ତିକା ସ୍ୱରୂପ ତତ୍କାଳୀନ ଓଡ଼ିଶାର ଦୁର୍ଭିକ୍ଷ ପ୍ରପୀଡିତ ଭୋକିଲା ଲୋକମାନଙ୍କ ପ୍ରତି ଶାସକମାନଙ୍କର ଅକରୁଣ, ନିଷ୍ଠୁର ଓ ନିର୍ଦ୍ଦୟ କାର୍ଯ୍ୟକଳାପକୁ କଠୋର ସମାଲୋଚନା କରୁଥିଲା । ଏହାର ସମ୍ପାଦକ ଗୌରୀଶଙ୍କର ସରକାରୀ ଚାକିରିରେ ଥାଇ ମଧ୍ୟ ନିର୍ଭୀକ ଭାବରେ ସରକାରୀ କଳର ନିଷ୍କ୍ରିୟତା ଓ ଦାୟିତ୍ୱହୀନତାକୁ ପଦାରେ ପାଇବାକୁ କୁଣ୍ଠାବୋଧ କରିନଥିଲେ । ଆଜିର ସ୍ୱାଧୀନ ଦେଶରେ ସାମ୍ବାଦିକତା କ୍ଷେତ୍ରରେ ଗୌରୀଶଙ୍କରଙ୍କ ପରି ସଚ୍ଚୋଟତା ଓ ନିରପେକ୍ଷତା ବ୍ୟକ୍ତି ପରିଲକ୍ଷିତ ହୁଏନାହିଁ । ଦୀର୍ଘ ଅର୍ଦ୍ଧଶତାବ୍ଦୀ କାଳ ସେ ଏହି ପତ୍ରିକାଟିର ସମ୍ପାଦନା କାର୍ଯ୍ୟ ବହନ କରି ଜଣେ ସଫଳ 'ସମ୍ପାଦକ' ଭାବେ ଗୌରବ ଅର୍ଜନ କରିବା ସହ ଓଡ଼ିଆ ସାମ୍ବାଦିକତା କ୍ଷେତ୍ରରେ ଏକ ଉଦାହରଣ ସୃଷ୍ଟି କରି ଯାଇଛନ୍ତି । ଏହା ସ୍ପଷ୍ଟ ଯେ ଊନବିଂଶ ଶତାବ୍ଦୀରେ ଓଡ଼ିଆମାନଙ୍କର ସାଂସ୍କୃତିକ ଜୀବନରେ ବାର୍ତ୍ତାବହଭାବେ ଉତ୍କଳ ଦୀପିକା କାର୍ଯ୍ୟକରି ଜନମତ ଜାଗ୍ରତ କରିବାର ଏକ ବଳିଷ୍ଠ ମାଧ୍ୟମ ଥିଲା । ଏଥିରେ ତତ୍କାଳୀନ ଓଡ଼ିଆ ଜାତିର ଆତ୍ମସମୀକ୍ଷା, ଉଦାରମାନବିକତା, ସାଂସ୍କୃତିକ ଚେତନା, ନାଗରିକର ଦାୟିତ୍ୱ ଓ କର୍ତ୍ତବ୍ୟ ସମ୍ପର୍କରେ ବହୁ ଉପାଦେୟ ବିଷୟମାନ ପ୍ରକାଶ କରାଯାଇ ଜନସଚେତନତା ସୃଷ୍ଟି କରାଯାଉଥିଲା ।

କର୍ମବୀର ଗୌରୀଶଙ୍କର ଓଡ଼ିଆ ଜାତିକୁ ମହିମାନ୍ୱିତ କରିବା ଉଦ୍ଦେଶ୍ୟ ନେଇ ୧୮୭୨ ଖ୍ରୀଷ୍ଟାବ୍ଦରେ 'ଉତ୍କଳ ସଭା ଓ ଓଡ଼ିଶା ଆସୋସିଏସନ' ନାମକ ଏକ ସଂସ୍ଥା ଗଠନକରି ଦୀର୍ଘ ୩୩ବର୍ଷ ଧରି ୧୯୦୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହାର ସମ୍ପାଦକ ଭାବେ କାର୍ଯ୍ୟ କରିଥିଲେ । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଉନ୍ନତିସାଧନ ଥିଲା ଏହାର ମୂଳ ଲକ୍ଷ୍ୟ । ମୁଖ୍ୟତଃ କର୍ମବୀର ଗୌରୀଶଙ୍କର ଓ ଉତ୍କଳଗୌରବ ମଧୁସୂଦନଙ୍କ ପ୍ରତ୍ୟକ୍ଷ ଓ ପରୋକ୍ଷ ଉଦ୍ୟମରେ ଏହି ସଂସ୍ଥାଟିର କାର୍ଯ୍ୟକ୍ରମମାନ ରୂପାୟିତ ହୋଇଥିଲା । ଏହି ସଂସ୍ଥାର ବୈଠକମାନଙ୍କରେ ଯେଉଁ କାର୍ଯ୍ୟକ୍ରମ ନିମନ୍ତେ ପ୍ରସ୍ତାବମାନ ଗୃହୀତ ହୋଇଥିଲା– ସେଗୁଡିକ ମଧ୍ୟରେ ସ୍ୱାୟତ୍ତ ଶାସନ

ପ୍ରବର୍ତ୍ତନ, ବନ୍ୟା ନିୟନ୍ତ୍ରଣ ଓ ଜଳସେଚନ, ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା, ଗ୍ରାମ୍ୟ ସ୍ୱାସ୍ଥ୍ୟସେବା, ଶ୍ରମିକ ଓ କୃଷକଙ୍କୁ ଆର୍ଥିକ ସହଯୋଗ, ଯାତାୟାତର ଉନ୍ନତି, କ୍ଷୁଦ୍ରଶିଳ୍ପ ପାଇଁ ପ୍ରୋତ୍ସାହନ ସର୍ବୋପରି ଶାସନ କ୍ଷେତ୍ରରେ ଗଣତନ୍ତ୍ର ନୀତି ପ୍ରବର୍ତ୍ତନ ଏବଂ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ କରିବା ଥିଲା ଆଲୋଚନାର ମୁଖ୍ୟ ପ୍ରସଙ୍ଗ । ଉତ୍କଳ ସଭା ଏବଂ ଉତ୍କଳ ଆସୋସିଏସନ ମଞ୍ଚରୁ ପ୍ରଚାରିତ ଜନସ୍ୱାର୍ଥ ସମ୍ବଳିତ ଦାବୀଗୁଡ଼ିକୁ 'ଉତ୍କଳ ଦୀପିକା' ପୃଷ୍ଠାରେ ପ୍ରକାଶ କରି ଗୌରୀଶଙ୍କର ଜନଜାଗରଣ ସୃଷ୍ଟି କରୁଥିଲେ । ଓଡ଼ିଶା ଭାଷା ଓ ସାହିତ୍ୟର ସୁରକ୍ଷା ଓ ସମୃଦ୍ଧି ପାଇଁ ତାଙ୍କର ଏହି ସର୍ବଶ୍ରେଷ୍ଠ ଉଲ୍ଲେଖନୀୟ ଅବଦାନକୁ ଓଡ଼ିଆ ଜାତି ବିସ୍ମୃତ ହେବନାହିଁ । ବିଶିଷ୍ଟ ଐତିହାସିକ ରାଜେନ୍ଦ୍ର ଲାଲ ମିତ୍ର ଓଡ଼ିଆ ପରିବର୍ତ୍ତେ ବଂଗ ଭାଷାକୁ ଶିକ୍ଷା ଓ ସରକାରୀ ଭାଷା ଭାବେ ପ୍ରଚଳନ କରିବା ନିମନ୍ତେ ହୋଇଥିବା ପ୍ରସ୍ତାବକୁ ଗୌରୀଶଙ୍କର ଖଣ୍ଡନ କରି ଏପରି ଭାବରେ 'ଉତ୍କଳ ଦୀପିକା' ମାଧ୍ୟମରେ ପ୍ରତିବାଦର ସ୍ୱର ଉତ୍ତୋଳନ କରିଥିଲେ, ଯାହାକି ପରବର୍ତ୍ତୀକାଳର ଭାଷା ଆନ୍ଦୋଳନ ଓ ଓଡିଆ ଭାଷୀ ଅଞ୍ଚଳର ଏକତ୍ରୀକରଣ ନିମନ୍ତେ ଜାତୀୟତାବାଦୀମାନଙ୍କୁ ପ୍ରୋତ୍ସାହନ ଯୋଗାଇଥିଲା । ତାଙ୍କରି ପ୍ରାରମ୍ଭିକ ଉଦ୍ୟମର ଫଳସ୍ୱରୂପ ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ଗଠନ ହୋଇଥିଲେ ହେଁ ସ୍ୱାଧୀନ ଭାରତରେ ଆଜି ମଧ୍ୟ ଜଳନ୍ଧର, ଚିକାକୋଲମ୍, ଫୁଲଝର, ବସ୍ତର, ସିଂହଭୂମି, ଷଢେଇକଳା, ଖରସୁଆଁ, ମେଦିନୀପୁର ଆଦି ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକ ଓଡ଼ିଆ ପ୍ରଦେଶ ସହ ସାମିଲ୍ ହୋଇପାରିନାହିଁ ।

୧୯୦୧ଖ୍ରୀ.ରେ ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜଙ୍କ ଆମନ୍ତ୍ରଣକ୍ରମେ ରମ୍ଭାଠାରେ ଗୌରୀଶଙ୍କର, ରାଧାନାଥ, ମଧୁସୂଦନ, ଫକୀରମୋହନ ପ୍ରଭୃତି ଭାଷା ଏକତ୍ରୀକରଣ ଆନ୍ଦୋଳନର ପ୍ରମୁଖ ନେତାମାନେ ଦାବୀ ପୂରଣ ନିମନ୍ତେ ଆଲୋଚନା କରିବା ପାଇଁ ଓଡ଼ିଆମାନଙ୍କୁ ଏହି ସଭାରେ ଏକତ୍ରୀତ କରିଥିଲେ । ଫଳରେ ରମ୍ଭାଠାରେ ଖଲ୍ଲିକୋଟ ରାଜା ଇଷ୍ଟେଟ ପ୍ରେସ୍ ବା ମର୍ଦ୍ଦରାଜ ପ୍ରେସ ପ୍ରତିଷ୍ଠାକରି ନୀଳମଣି ଖଡିରତ୍ନଙ୍କ ସମ୍ପାଦନାରେ ସାପ୍ତାହିକ ପତ୍ରିକା 'ବ୍ରଜବନ୍ଧୁ' ପ୍ରକାଶ କଲେ । କଟକରୁ 'ଉତ୍କଳ ଦୀପିକା' ଓ ଗଞ୍ଜାମରୁ 'ବ୍ରଜବନ୍ଧୁ' ପତ୍ରିକାଦ୍ୱୟ ପ୍ରକାଶ ଲାଭ କରିବା ଦ୍ୱାରା ଓଡ଼ିଆମାନଙ୍କ ନ୍ୟାଯ୍ୟ ଦାବୀକୁ ଉପସ୍ଥାପନ କରି ଆନ୍ଦୋଳନକୁ ତୀବ୍ରତର କରିବା ଦିଗରେ ପଦକ୍ଷେପମାନ ଗ୍ରହଣ କରିଥିଲେ । ଏହାଦ୍ୱାରା ସରକାର ମତ ପରିବର୍ତ୍ତନ କରି ଓଡ଼ିଆ ଭାଷାରେ ସରକାରୀ ନଥିପତ୍ର, ନୋଟିସ କୋର୍ଟ ସମନ୍ ଆଦି ଲେଖିବାକୁ ବାଧ୍ୟ ହେଲେ । ଅନେକ ଓଡ଼ିଆ ସରକାରୀ ଚାକିରି ସୁଯୋଗ ଲାଭକରି ପାରିଲେ । ଖଲ୍ଲିକୋଟ ରାଜା 'ଉତ୍କଳ ସାହିତ୍ୟ ସମାଜ' ଭଳି 'ଖଲ୍ଲିକୋଟ ଉତ୍କଳ ସାହିତ୍ୟ ସମାଜ' ଗଠନ କରିଥିଲେ । ଫକୀରମୋହନ ସେନାପତି ଓ ମୃତ୍ୟୁଞ୍ଜୟ ରଥଙ୍କ ଭଳି ପ୍ରବୀଣ ଲେଖକ ଓ ସାହିତ୍ୟିକମାନଙ୍କର ଲେଖାମାନ ଏହି ପତ୍ରିକା ଦ୍ୱୟରେ ପ୍ରକାଶିତ ହୋଇ ଓଡ଼ିଆମାନଙ୍କୁ ଉଦ୍‌ବୁଦ୍ଧ କଲା । ୧୯୦୨ରେ ଗଞ୍ଜାମ ସମ୍ମିଳନୀରେ ଗୌରୀଶଙ୍କର, ମଧୁସୂଦନ, ବିଶ୍ୱନାଥକର, ଗୋପାଳ ଚନ୍ଦ୍ର ପ୍ରହରାଜ, ନନ୍ଦକିଶୋର ବଳ, ଶଶୀଭୂଷଣ ରାୟ, ଗୋପବନ୍ଧୁ ଦାସ ଓ ଫକୀରମୋହନ ସେନାପତି ଆଦି ପ୍ରମୁଖ ନେତା ଓ ସାହିତ୍ୟିକମାନେ ଯୋଗଦାନ କରି 'ଉତ୍କଳ ସମ୍ମିଳନୀ' ଗଠନର ସୂତ୍ରପାତ ଆରମ୍ଭ କଲେ ଏବଂ ସର୍ବସମ୍ମତିକ୍ରମେ ସ୍ୱୀକୃତ ଉକ୍ତ 'ଉତ୍କଳ ସମ୍ମିଳନୀ'ର ପ୍ରଥମ ଅଧିବେଶନ କଟକ ଇଦ୍‌ଗା ପଡିଆଠାରେ ଅନୁଷ୍ଠିତ ହୋଇ ଦେଶ ମିଶ୍ରଣ ଆନ୍ଦୋଳନର ନେତୃତ୍ୱ ନେଲା । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ 'ଉତ୍କଳ ସଭା ଓ ଗଞ୍ଜାମ ସମ୍ମିଳନୀ' ଦ୍ୱୟର ସମିଶ୍ରଣରେ 'ଉତ୍କଳ ସମ୍ମିଳନୀ' ଜନ୍ମଲାଭ କରିଥିଲା । ପ୍ରାକୃତିକ ଉତ୍କଳରେ ଏକତା ସ୍ଥାପନ, ଉତ୍କଳର ସର୍ବାଙ୍ଗୀନ ଉନ୍ନତି ସାଧନ, ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କୁ ଶାସନ ସୂତ୍ରରେ ଏକତ୍ରୀକରଣ ଏବଂ ପ୍ରବାସୀ ଓଡ଼ିଆମାନଙ୍କ ସ୍ୱାର୍ଥ ସଂରକ୍ଷଣ ଆଦି ଥିଲା ସମ୍ମିଳନୀର ପ୍ରଧାନ ଉଦ୍ଦେଶ୍ୟ । ସମ୍ମିଳନୀ ଏକ ଜାତୀୟ ଖୋଲା ମଞ୍ଚଭାବେ ଉତ୍କଳର ସାମାଜିକ, ବୈଷୟିକ ଓ ରାଜନୈତିକ ଉନ୍ନତି ବିଧାନ ନିମନ୍ତେ ଗଠନ କରାଯାଇ ସମସ୍ତ ଓଡ଼ିଆ ଭାଷୀ ଅଞ୍ଚଳକୁ ଏକତ୍ରୀତ କରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦାବୀ ହାସଲର ମୁଖ୍ୟ ନେତୃତ୍ୱ ଗ୍ରହଣ କରିଥିଲା । ସମ୍ମିଳନୀର ମୁଖପତ୍ର ଭାବେ 'ଉତ୍କଳ ଦୀପିକା' ବିଭିନ୍ନ ଅଧିବେଶନର ବିବରଣୀମାନ ପ୍ରକାଶ କରି ଓଡ଼ିଆମାନଙ୍କ ଶିରା ପ୍ରଶିରାରେ ଜାତିପ୍ରୀତି ଓ ଐକ୍ୟ ମନୋଭାବ ସୃଷ୍ଟି କରିଥିଲା । ଉତ୍କଳ ସମ୍ମିଳନୀର କାର୍ଯ୍ୟନିର୍ବାହିକା ସମିତିର ସ୍ଥାୟୀ ସଭ୍ୟଭାବରେ ଗୌରୀଶଙ୍କର ଆର୍ଥିକ ସାହାଯ୍ୟ କରିବା ସହ ଏହାର ଅନ୍ୟତମ ସମ୍ପାଦକ ଦାୟିତ୍ୱ ଗ୍ରହଣ କରି ପ୍ରଚଣ୍ଡ ଜାତୀୟତାବାଦୀ ଚିନ୍ତାଧାରାକୁ ସଫଳ ରୂପାୟନ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ।

କଟକ ପ୍ରିଣ୍ଟିଙ୍ଗ୍ ପ୍ରେସ୍ ପ୍ରତିଷ୍ଠା ଫଳରେ ପାଠ୍ୟପୁସ୍ତକ ସହ ଅନ୍ୟାନ୍ୟ ପୁସ୍ତକ ଓ ପତ୍ରପତ୍ରିକା ପ୍ରକାଶିତ ହୋଇ ଶିକ୍ଷା, ସଂସ୍କୃତି, ରାଜନୀତି ଓ ସାମାଜିକ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ହୋଇପାରିଲା । ଆଧୁନିକ ଶିକ୍ଷା ପ୍ରତି ଯୁବଗୋଷ୍ଠୀର ଆଦର ବୃଦ୍ଧି ପାଇବା ଦ୍ୱାରା ଏକ ସଂସ୍କାରବାଦୀ ପ୍ରତିକ୍ରିୟାଶୀଳ ମଧ୍ୟବିତ୍ତ ଶ୍ରେଣୀର ଆବିର୍ଭାବ ହୋଇଥିଲା ଏବଂ ସେମାନେ ସ୍ୱଦେଶପ୍ରେମ ମନ୍ତ୍ରରେ ଅଭିମନ୍ତ୍ରିତ ହୋଇ ଗୌରୀଶଙ୍କରଙ୍କର ଭାବଧାରାରେ ଅନୁପ୍ରାଣିତ ହୋଇଥିଲେ । ଗ୍ରାମୀଣ ଓଡ଼ିଶାରେ ଇଂରାଜୀ ଭାଷା ସହ ଦେଶୀୟ ଭାଷା ଶିକ୍ଷା, ଦେଶୀୟ ଭାଷାରେ ପୁସ୍ତକ ପ୍ରକାଶନ, ଶିକ୍ଷାର ପ୍ରସାର ନିମନ୍ତେ ବିଦ୍ୟାନୁଷ୍ଠାନମାନ ପ୍ରତିଷ୍ଠା ଓ ସମ୍ବାଦପତ୍ରର ପ୍ରଚାର ପ୍ରସାର ଫଳରେ ଓଡ଼ିଶାର ଜନସାଧାରଣ ଜୀବନଧାରଣର ମାର୍ଗଦର୍ଶନର ସୁବିଧାସୁଯୋଗ ହାସଲକରି ଶିକ୍ଷାର ପ୍ରସାର ଦିଗରେ ଧ୍ୟାନ ଦେଲେ । ନାରୀ ଶିକ୍ଷାର ଉନ୍ନତି ନିମନ୍ତେ ଉତ୍କଳ ସମ୍ମିଳନୀର ପୁରୀଠାରେ ବସିଥିବା ପଞ୍ଚମ ଅଧିବେଶନରେ ପ୍ରସ୍ତାବ ଗୃହୀତ ହୋଇ ନାରୀମାନଙ୍କୁ କୁସଂସ୍କାରରୁ ମୁକ୍ତ କରି ଏକ ମର୍ଯ୍ୟାଦାଜନକ ସୁସ୍ଥ ନାରୀ ସମାଜ ଗଠନ ଦିଗରେ ଶିକ୍ଷାର ଆବଶ୍ୟକତା ଉପଲବ୍ଧି କରାଯାଇଥିଲା । ନାରୀଶିକ୍ଷା ତଥା ଆଧୁନିକ ଶିକ୍ଷାକୁ ଓଡ଼ିଶାରେ ପ୍ରସାରିତ କରିବା ଦିଗରେ ରାଧାନାଥ ରାୟ, ମଧୁସୂଦନ ରାଓ, ଗୌରୀଶଙ୍କର ରାୟ, ଫକୀରମୋହନ ସେନାପତି, ବିଶ୍ୱନାଥ କର ଓ ଗୋପବନ୍ଧୁ ଦାସ ପ୍ରମୁଖ ମନୀଷୀଗଣ ନେତୃତ୍ୱ ନେବା ସହିତ ବିଧବା ବିବାହ ନିଷିଦ୍ଧ ବିରୋଧରେ ଏମାନେ ଦୃଢ ସ୍ୱର ଉତ୍ତୋଳନ କରିଥିଲେ ଏବଂ ନାରୀ ଆନ୍ଦୋଳନର ସାରଥି ଗୌରୀଶଙ୍କର 'ଉତ୍କଳ ଦୀପିକା'ରେ ଏହା ସପକ୍ଷରେ ସମ୍ବାଦ ପରିବେଷଣ କରି ଜନମତକୁ ସଙ୍ଗଠିତ କରିଥିଲେ ।

ଗୌରୀଶଙ୍କର ଥିଲେ ତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ । ଆଜିର ତଥାକଥିତ ନେତାଙ୍କ ପରି ସେ ଭୋଗରେ ବିଶ୍ୱାସ କରୁନଥିଲେ । ନିସ୍ୱାର୍ଥପର କର୍ତ୍ତବ୍ୟ ପାଳନ କରିବା ଦିଗରେ ତାଙ୍କର ଓଡ଼ିଶା ଓ ଓଡ଼ିଆ ପ୍ରୀତିକୁ କଳନା କରିହେବ ନାହିଁ । ସେ ଜଣେ ସଫଳ ସାହିତ୍ୟିକ ହୋଇପାରିନଥିଲେ ସତ, ସାହିତ୍ୟକୁ ପ୍ରୋତ୍ସାହନ ଭୂମିକାରେ ସେ ଥିଲେ ଅଗ୍ରଗଣ୍ୟ । ସେ ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର ଉତ୍କଳ ସାହିତ୍ୟ ସମାଜର ସଭାପତି ଥିଲେ । ସେ ଶିକ୍ଷାବିସ୍ତାର ନିମନ୍ତେ କଟକଠାରୁ ଆରମ୍ଭ କରି ନିଜ ଗ୍ରାମ ପର୍ଯ୍ୟନ୍ତ ଶିକ୍ଷାନୁଷ୍ଠାନମାନ ସ୍ଥାପନ କରିଥିଲେ । କଟକଠାରେ ନିଜ ଜମି ଓ ଅର୍ଥଦାନରେ 'କାୟସ୍ଥ ବୋଡିଂ' ପ୍ରତିଷ୍ଠା କରି ଗରିବ ମେଧାବୀ ଛାତ୍ରମାନଙ୍କୁ ଆବାସିକ ଛାତ୍ରାବାସରେ ରହି ଶିକ୍ଷାଲାଭ ନିମନ୍ତେ ସୁଯୋଗ ସୃଷ୍ଟି କରିଥିଲେ । କଟକ ମ୍ୟୁନିସପାଲିଟିର ଅଧ୍ୟକ୍ଷ ଭାବରେ ସମାଜମଙ୍ଗଳ କାର୍ଯ୍ୟମାନ କରି ସହରର ଶ୍ରୀବୃଦ୍ଧି କରିଥିଲେ । ସଭାସମିତି ନିମନ୍ତେ ବ୍ୟକ୍ତିଗତ ଭାବେ କଟକ ଟାଉନ ହଲ୍ ପ୍ରତିଷ୍ଠା ଓ ସାଧାରଣରେ ଏହାର ସଦ୍‌ବ୍ୟବହାର ଉଦ୍ଦେଶ୍ୟ ତାଙ୍କର ମହାନୁଭବତା ବ୍ୟତୀତ ଅନ୍ୟ କିଛି ନୁହେଁ । ସେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ ମଧ୍ୟ ଅନ୍ୟକୌଣସି ଧର୍ମପ୍ରତି ତାଙ୍କର ବିଦ୍ୱେଷ ଭାବ ନଥିଲା । ବଂଗର ସଂସ୍କାରକ ରାଜା ରାମମୋହନ ରାୟଙ୍କ ଆଧ୍ୟାତ୍ମିକ ସଂସ୍କାରମୁଖୀ ପ୍ରେରଣାରେ ଓଡ଼ିଶାରେ ନବଜାଗରଣ ନବ ସଂସ୍କୃତିର ପ୍ରେରଣା ଦେଖାଦେଇଥିଲା ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଶିକ୍ଷିତ ମଧ୍ୟବିତ୍ତ ଗୋଷ୍ଠୀର ଚିତ୍ତରେ, ଯା'ର ନେତୃତ୍ୱ ଗ୍ରହଣ କରିଥିଲେ କର୍ମଯୋଗୀ ଗୌରୀଶଙ୍କର । ଓଡ଼ିଶାର ଶାସନ, ଶିକ୍ଷା, ଚିକିତ୍ସା, କୃଷି, ଭାଷା, ସାହିତ୍ୟ, ଧର୍ମ, କଳା ଓ ସଂଗୀତ, ମୁଦ୍ରଣ ଶିଳ୍ପ, ସାମ୍ବାଦିକତା, ଜାତୀୟଚେତନା ଜାଗରଣ, ଦେଶମିଶ୍ରଣ, ଅର୍ଥନୈତିକ ବିକାଶ ତଥା ସୁସ୍ଥ ସମାଜଜୀବନ ଗଠନ ନିମନ୍ତେ ସମସ୍ୟାବହୁଳ ଘଟଣା ସମାଧାନ ଓ ସମାଜସେବା ଏପରିକି କୌଣସି ଗୋଟିଏ ଦିଗନାହିଁ ଯେଉଁଠାରେ ଗୌରୀଶଙ୍କରଙ୍କ ଦୃଷ୍ଟି ନିକ୍ଷେପ ହୋଇନଥିଲା । ଏହିପରି ଭାବରେ ଏକ ଘଟଣାବହୁଳ ଓ କର୍ମମୁଖର ଜୀବନ ଯାପନ କରି ୧୯୧୭ ମସିହା ମାର୍ଚ୍ଚ ୫ ତାରିଖ ଦିନ ୭୯ ବର୍ଷ ବୟସରେ ସେ ସ୍ୱର୍ଗବାସୀ ହୋଇଥିଲେ ।

ସଭାପତି 'ସମନ୍ୱୟ', ବାଙ୍କିସାହି,
ତେଲେଙ୍ଗା ବଜାର, କଟକ-୭୫୩୦୦୯

# ଭାରତର ସ୍ୱାଧୀନତା ସଂଗ୍ରାମକୁ ଶ୍ରୀ ଅରବିନ୍ଦ ଓ ଶ୍ରୀ ଅଭିରାମ ପରମହଂସଙ୍କ ଅବଦାନ

ତାରାକାନ୍ତ ମହାନ୍ତି

ଭାରତର ସ୍ୱାଧୀନତା ସଂଗ୍ରାମରେ ପଶ୍ଚିମବଙ୍ଗର ଜଣେ କ୍ରାନ୍ତିକାରୀ ସନ୍ଥ, ଭାରତର ପ୍ରଜ୍ଞା ସୂର୍ଯ୍ୟ ଶ୍ରୀ ଅରବିନ୍ଦଙ୍କର ୧୯୦୫ରୁ ୧୯୧୦ ଓ ଓଡ଼ିଶାର ଜଣେ ବିଶିଷ୍ଟ ସର୍ବଧର୍ମ ସମନ୍ୱୟ ମତବାଦର ପ୍ରଚଣ୍ଡ ପ୍ରବକ୍ତା ଠାକୁର ଶ୍ରୀ ଅଭିରାମ ପରମହଂସଙ୍କର ଠିକ୍ ୨୫ ବର୍ଷ ପରେ ୧୯୨୮ରେ ସମ୍ରାଟ ପଞ୍ଚମ ଜର୍ଜ୍ଙ୍କ ବିରୋଧରେ 'କଳିଭାଗବତ' ପୁସ୍ତକ ରଚନା ତାଙ୍କର ସ୍ୱାଧୀନତା ସଂଗ୍ରାମକୁ ବିଶିଷ୍ଟ ଅବଦାନ ବୋଲି ବିବେଚନା କରାଯାଏ । ଭାରତର ସ୍ୱାଧୀନତା ସଂଗ୍ରାମରେ ଏହି ଦୁଇଜଣ 'ବିପ୍ଳବୀସନ୍ଥ'ର ଆଖ୍ୟା ନେଇଛନ୍ତି । କ୍ରମାନ୍ୱୟରେ ଏହି ଦୁଇଜଣଙ୍କର ଯଥାକ୍ରମେ ଏକବର୍ଷ ଲେଖାଏଁ ଜେଲ୍ ଜୀବନ କଟାଇବାକୁ ପଡ଼ିଛି । ଭାରତରେ ଏହି ସମୟ ମଧ୍ୟରେ କେଉଁ ଉଚ୍ଚକୋଟିର ସନ୍ଥ ସ୍ୱାଧୀନତା ସଂଗ୍ରାମରେ ପ୍ରତ୍ୟକ୍ଷ ଯୋଗଦାନ କରି କାରାବରଣ କରିନଥିଲେ ।



ଶ୍ରୀ ଅରବିନ୍ଦ ଉଚ୍ଚଶିକ୍ଷା ଲାଭ କରିବା ଉଦ୍ଦେଶ୍ୟରେ ୧୮୭୯ ମସିହାରେ ଇଂଲଣ୍ଡ ଯାଇଥିଲେ ଓ ୧୮୯୩ ମସିହାରେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ । ବରୋଦାରେ ଅବସ୍ଥାନ କରିବା ପରେ ବରୋଦା କଲେଜ୍‌ରେ ଜଣେ ଇଂଲିଶ୍ ଅଧ୍ୟାପକ ଓ ଉପାଧ୍ୟକ୍ଷ ଭାବେ କାର୍ଯ୍ୟ କରିଥିଲେ । ଏହିଠାରେ ହିଁ ସେ ଗୁପ୍ତ ବୈପ୍ଳବିକ କାର୍ଯ୍ୟ ଆରମ୍ଭ କରିଥିଲେ । ଯାହାର ଉଦ୍ଦେଶ୍ୟ ଥିଲା, ସଶସ୍ତ୍ର ବିଦ୍ରୋହ ନିମନ୍ତେ ଦେଶବାସୀଙ୍କୁ ପ୍ରସ୍ତୁତ କରିବା । ସାନଭାଇ ବାରିନ୍ଦ୍ର କୁମାର ଓ ଅନ୍ୟ କେତେକ ବିଶ୍ୱସ୍ତ ଅନୁଗତଙ୍କ ସାହାଯ୍ୟରେ ଦେଶର ବିଭିନ୍ନ ସ୍ଥାନରେ ସ୍ୱଦେଶୀ ଆନ୍ଦୋଳନ ଓ ବିପ୍ଳବ ନିମନ୍ତେ ଯୁବକମାନଙ୍କୁ ପ୍ରସ୍ତୁତ କରାଇଥିଲେ । ବିଦେଶୀ ଶାସନକୁ ଦୁର୍ବଳ କରିଦେବା ସକାଶେ ସମଗ୍ର ମାନବ ଜାତିକୁ ସଂଘବଦ୍ଧ ହେବା ପାଇଁ ସେ ଆହ୍ୱାନ ଦେଇଥିଲେ । ସେ କହୁଥିଲେ ଯେ ବିଦେଶୀ ଶାସନ ଯେତେ ଉଦାର ଓ ଉନ୍ନତ ହେଲେ ମଧ୍ୟ ତାହା କଦାପି ଏକ ସୁସ୍ଥ ଜୀବନର ସ୍ଥାନ ନେଇ ପାରିବ ନାହିଁ । ସେ ସ୍ୱଦେଶୀ ଆନ୍ଦୋଳନ ମାଧ୍ୟମରେ ଭବିଷ୍ୟତ ସଶସ୍ତ୍ର ବିପ୍ଳବର କଳ୍ପନା ଲୋକମାନଙ୍କ ମନରେ ଜାଗ୍ରତ କରାଇଥିଲେ । ଯୁଗାନ୍ତର ପତ୍ରିକାରେ ବିଦ୍ରୋହର ବାଣୀ ପ୍ରଚାର କଲେ ଏବଂ ଇଂରେଜୀ ଶାସନକୁ ସମ୍ପୂର୍ଣ୍ଣ ରୂପେ ଅସ୍ୱୀକାର କରିବା ସମ୍ପର୍କରେ ଲେଖାମାନ ପ୍ରକାଶ କଲେ । ତାଙ୍କର ବିପ୍ଳବ ଧର୍ମୀ ଲେଖା ଯୁବକମାନଙ୍କୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରିଥିଲା ।

୧୯୦୫ ମସିହାରେ ବଙ୍ଗଭଙ୍ଗ ବିରୋଧରେ ହୋଇଥିବା ଆନ୍ଦୋଳନ ସମୟରୁ ହିଁ ପ୍ରକାଶ୍ୟ ଭାବରେ ରାଜନୈତିକ କାର୍ଯ୍ୟରେ ଯୋଗ ଦେଇଥିଲେ । କାରଣ ସେତେବେଳକୁ ସେ ହୃଦୟଙ୍ଗମ କରିସାରିଥିଲେ ଯେ ବରୋଦାରେ ଚାକିରି କାର୍ଯ୍ୟ ତୁଲାଇବା ଓ ସ୍ୱାଧୀନତା ସଂଗ୍ରାମ ପାଇଁ ଦିଗ୍‌ଦର୍ଶନ ଦେବା– ଏକ ସାଙ୍ଗରେ ସମ୍ଭବ ନୁହେଁ । ଶ୍ରୀ ଅରବିନ୍ଦଙ୍କ ଅର୍ଥ, କ୍ଷମତା, ପ୍ରତିପତ୍ତି ପ୍ରତି ତିଳେମାତ୍ର ଦୁର୍ବଳତା ନଥିଲା । ତେଣୁ ସେ ବରୋଦାରେ ଅଧିକ ବେତନ ପାଉଥିବା ଚାକିରିରୁ ତ୍ୟାଗ କରି ଜାତୀୟ ମହାବିଦ୍ୟାଳୟରେ ସ୍ୱଳ୍ପ

ଦରମାରେ କାର୍ଯ୍ୟକଲେ । ଏହି ସମୟରେ ଦେଶପ୍ରେମୀ ବିପିନ ଚନ୍ଦ୍ର ପାଲ ସ୍ୱାଧୀନତା ଆନ୍ଦୋଳନର ମୁଖପତ୍ର ରୂପେ ଇଂଲିଶ୍ ପତ୍ରିକାରେ ପ୍ରକାଶିତ ଶ୍ରୀ ଅରବିନ୍ଦଙ୍କ ଲେଖାଗୁଡିକ ମନକୁ ବିପ୍ଳବ ନିମନ୍ତେ ଯେଉଁଭଳି ପ୍ରସ୍ତୁତ କରିଥିଲା ତା'ର ପଟ୍ଟାନ୍ତର ନାହିଁ । ଭାରତୀୟ ରାଜନୀତିର ଲକ୍ଷ୍ୟ ପରିପୂର୍ଣ୍ଣ ଓ ଚୂଡ଼ାନ୍ତ ସ୍ୱାଧୀନତା ବୋଲି ସେ ଏହି ପତ୍ରିକାରେ ପ୍ରତିପାଦନ କରିଥିଲେ ।

କଲିକତାରେ ଏହି ପତ୍ରପତ୍ରିକା ଓ ସଭାସମିତି ମାଧ୍ୟମରେ ସେ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର, ବିଦେଶୀ ଦ୍ରବ୍ୟ ବର୍ଜନ, ଜାତୀୟ ଶିକ୍ଷା ପଦ୍ଧତି ଓ ବିପ୍ଳବ ସ୍ୱେଚ୍ଛା ସେବକ ବାହିନୀ ଗଠନର ଆଦର୍ଶ ପ୍ରଚାର କରିଥିଲେ । ଏହାକୁ କାର୍ଯ୍ୟକାରୀ କରିବାର ନେତୃତ୍ୱ ନେଇଥିଲେ ବାଲ୍ ଗଙ୍ଗାଧର ତିଲକ, ଲାଲା ଲଜପତ୍ ରାୟ ଆଦି କେତେକ ନେତା ।

୧୯୦୭ ମସିହାରେ 'ବନ୍ଦେ ମାତରମ୍' ପତ୍ରିକା ବିରୋଧରେ ଇଂରେଜ ସରକାର ରାଜଦ୍ରୋହ ଅଭିଯୋଗ ଆଣିଥିଲେ । ଶ୍ରୀ ଅରବିନ୍ଦଙ୍କୁ ଏହାର ସମ୍ପାଦକ ଭାବେ ଅଭିଯୁକ୍ତ କରାଯାଇଥିଲା । କିନ୍ତୁ ବିପିନ ଚନ୍ଦ୍ରପାଲ ପତ୍ରିକାର ସମ୍ପାଦକ ବୋଲି ତାଙ୍କୁ ସ୍ୱୀକାର କରିନଥିଲେ ଓ ସାକ୍ଷୀ ଭାବେ ସତ୍ୟପାଠ ମଧ୍ୟ କରିନଥିଲେ । ତେଣୁ ତାଙ୍କ ବିରୋଧରେ ହୋଇଥିବା ଅଭିଯୋଗ ପ୍ରମାଣ ହୋଇପାରିନଥିଲା । ଏହି ଘଟଣାପରେ ସେ କଲିକତାରେ ଜାତୀୟତାବାଦର ସର୍ବଜନ ଆଦୃତ ନେତା ହୋଇପାରିଥିଲେ । 'ବନ୍ଦେ ମାତରମ୍' ଧ୍ୱନି ଚାରିଆଡେ ଉତ୍ସାହର ବନ୍ୟା ସୃଷ୍ଟି କରିଥିଲା ଓ ଭାରତକୁ ପୂର୍ଣ୍ଣ ବିଜୟ ଦ୍ୱାରରେ ପହଞ୍ଚାଇ ଦେଇଥିଲା । ୧୯୦୮ ମସିହାରେ ମୁଜାଫରପୁରଠାରେ ଘଟିଥିବା ବୋମା ବିସ୍ଫୋରଣ ଓ ଏଥିରେ ଦୁଇଜଣ ମହିଳାଙ୍କ ମୃତ୍ୟୁ ଘଟଣାରେ ସମ୍ପୃକ୍ତ ଥିବା ସନ୍ଦେହ କରି ପୋଲିସ ତାଙ୍କୁ ଗିରଫ କରିଥିଲେ । ଏଥିପାଇଁ ସେ ଏକବର୍ଷ ଆଲିପୁର ଜେଲରେ ରହିଥିଲେ । ଜେଲରେ ଥିବା ସମୟରେ ଶ୍ରୀ ଅରବିନ୍ଦ ଅଧିକାଂଶ ସମୟ ଗୀତା, ଉପନିଷଦ ପଢୁଥିଲେ ଓ ଗଭୀର ଧ୍ୟାନ ଧାରଣାରେ ମଗ୍ନ ରହୁଥିଲେ । କିନ୍ତୁ ଏହି ଘଟଣାରେ ସେ ପ୍ରମାଣ ଅଭାବରୁ ମୁକ୍ତ ହୋଇଥିଲେ । ଏହି ଅବସରରେ ୧୯୦୯ ମସିହା ମେ' ମାସରେ କଲିକତାର ଉତ୍ତରପଡାଠାରେ ସମ୍ବର୍ଦ୍ଧନା ତାଙ୍କୁ ଦିଆଯାଇଥିଲା । ସେଠାରେ ସେ ପ୍ରଥମେ କାରାବାସରେ ଯୋଗ ସାଧନା ଓ ଆଧ୍ୟାତ୍ମିକ ଅନୁଭୂତି ସମ୍ପର୍କରେ ପ୍ରକାଶ କରିଥିଲେ । ଏହାପରେ ଶ୍ରୀ ଅରବିନ୍ଦ କଲିକତାରେ ଇଂରେଜ ବିରୋଧୀ ବିଭିନ୍ନ ସଭା ସମିତିରେ ଯୋଗ ଦେଇଥିଲେ । ଇଂରେଜ ସରକାର ମଧ୍ୟ ତାଙ୍କୁ ଗିରଫ କରିବା ନିମନ୍ତେ ପ୍ରୟାସ ଜାରି ରଖିବା ଖବର ପାଇ ସେ ଚନ୍ଦନନଗର ଚାଲି ଯାଇଥିଲେ । ସେଠାରୁ ସେ ୧୯୧୦ ମସିହାରେ ପଣ୍ଡିଚେରୀରେ ପହଞ୍ଚିଥିଲେ ଓ ଯୋଗ ସାଧନାରେ ଲିପ୍ତ ରହି ପ୍ରକାଶ୍ୟ ରାଜନୀତିରୁ ସମ୍ପର୍କ ତୁଟାଇ ଦେଇଥିଲେ । ରାଜନୀତି ସହ ତାଙ୍କର ସମ୍ପର୍କ ବିଚ୍ଛିନ୍ନ ହୋଇଥିଲା ସତ କିନ୍ତୁ ବୈପ୍ଳବିକ ମନୋଭାବ ଶେଷ ପର୍ଯ୍ୟନ୍ତ ଜାଗ୍ରତ ରଖିବାକୁ ଇଚ୍ଛା ପ୍ରକାଶ କରିଥିଲେ । ତାଙ୍କର ପ୍ରଥମ ସ୍ୱପ୍ନ ଥିଲା– ଏକ ବୈପ୍ଳବିକ ଆନ୍ଦୋଳନ ଯାହା ମଧ୍ୟରେ ଅଖଣ୍ଡ ଓ ସ୍ୱାଧୀନ ଭାରତ ଆତ୍ମପ୍ରକାଶ କରିବ ।

## ଅଭିରାମ ପରମ ହଂସଙ୍କ ସ୍ୱାଧୀନତା ସଂଗ୍ରାମରେ ଅବଦାନ

ପୁରୀ ଜିଲ୍ଲା କଣାସ ଅଞ୍ଚଳର କରମଳା ଆଶ୍ରମର ପ୍ରାକ୍ତନ କ୍ଷେତ୍ରଜ୍ଞ ଠାକୁର ଅଭିରାମ ପରମହଂସ (୧୩୧୧ ସାଲ ମକର ୫ଦିନ) ୧୯୦୪ ମସିହା ମାଘ ତ୍ରିବେଣୀ ଅମାବାସ୍ୟାର ପୁଣ୍ୟ ତିଥିରେ ପୁରୀ ଜିଲ୍ଲାର ବ୍ରହ୍ମଗିରି ଥାନା ଅନ୍ତର୍ଗତ କରମଳା ଗ୍ରାମରେ ପିତା ସତ୍ୟବାଦୀ ପଟ୍ଟନାୟକ ଓ ମାତା ରାଧାଦେବୀଙ୍କ ଗର୍ଭରୁ



ଜନ୍ମ ପ୍ରକଟ ହୋଇଥିଲେ । ମାତ୍ର ୫୯ ବର୍ଷ ବୟସରେ ୧୯୬୩ ଖ୍ରୀ.ରେ କାର୍ତ୍ତିକ ଶୁକ୍ଳ ଏକାଦଶୀ ତିଥିରେ ତାଙ୍କର ମହାସମାଧି ହୋଇଥିଲା । ସେ ଥିଲେ ଜଣେ କୃଷ୍ଣଗତ ପ୍ରାଣ ମହାସାଧୁ ଓ ସର୍ବଧର୍ମ ସମନ୍ୱୟ ମତବାଦର ପ୍ରଚଣ୍ଡ ପ୍ରବକ୍ତା ଓ ଭାରତର ସ୍ୱାଧୀନତା ଆନ୍ଦୋଳନରେ ସେ ଜଣାଶୁଣା ପ୍ରବୀଣ ସଂଗ୍ରାମୀ ଥିଲେ । ବ୍ରିଟିଶ୍ ସାମ୍ରାଜ୍ୟବାଦ ତଥା ପଞ୍ଚମ ଜର୍ଜଙ୍କ ବିରୋଧରେ ୧୯୨୯ରେ ରଚିତ 'କଳି ଭାଗବତ' ପୁସ୍ତକ ବ୍ରିଟିଶଙ୍କ ବିରୋଧରେ ୧୯୩୩ରେ ତୀବ୍ର ଆନ୍ଦୋଳନ ସୃଷ୍ଟି କରିଥିଲା ।

ଏ ଦିନ୍ ଦୁନିଆର ମାଲିକ କେବଳ ଭଗବାନ, ସେ ଏକା ତାଙ୍କ ଭାଷାରେ

" ଆଲ୍ଲା ଖ୍ରୀଷ୍ଟ କୃଷ୍ଣଙ୍କୁ ବୁଝି
ଅଦ୍ୱୈତେ କରସାର
ଯେହି ଆଲ୍ଲା ସେହି ଖ୍ରୀଷ୍ଟଟି ସାରଙ୍ଗ ଧର
କେ କହେ ଅଲେଖ ଆଲ୍ଲା
କେ କହେ ଈଶ୍ୱର,
ଏକ ଭଗବାନ ସେହି ସମସ୍ତ ବିଶ୍ୱର ।"

ତାଙ୍କର ଉକ୍ତି ଥିଲା –

"ହିଂସା ଅସତ୍ୟରେ ନରସ ।
ଅହିଂସା ସତ୍ୟେ ରସ,
ସକଳ ଘଟେ ବିଦ୍ୟମାନ ହୋଇଛନ୍ତି କୃଷ୍ଣ ।"

ଅଭିରାମ ପରମହଂସ ଶ୍ରୀ ଅରବିନ୍ଦଙ୍କ ୨୫ ବର୍ଷ ପରେ ସ୍ୱାଧୀନତା ଆନ୍ଦୋଳନର ଜଣେ ପ୍ରବୀଣ ସଂଗ୍ରାମୀ ହିସାବରେ ଜଣାଶୁଣା । ବଙ୍ଗଳା ଓ ଓଡ଼ିଶାର ଏହି ଦୁଇଜଣ ପ୍ରବୀଣ ସନ୍ଥ ସ୍ୱାଧୀନତା ସଂଗ୍ରାମରେ ପ୍ରତ୍ୟେକେ ଏକବର୍ଷ ଯାଏ କାରାବାସରେ ଦଣ୍ଡିତ ହୋଇଛନ୍ତି । ଭାରତର କେଉଁଠି ସନ୍ଥଗଣ ସ୍ୱାଧୀନତା ସଂଗ୍ରାମର ଆଲୋଚ୍ୟ ବସ୍ତୁ ହୋଇ ଏପର୍ଯ୍ୟନ୍ତ ନାହାନ୍ତି । ୧୯୩୩ରେ କଳିଭାଗବତ ପୁସ୍ତକ ରଚନା କରି ସ୍ୱାଧୀନତା ଆନ୍ଦୋଳନରେ ଧର୍ମନେତା ଭାବେ ପରିଚିତ ହୋଇଥିଲେ ।

ରାଜଦ୍ରୋହ ପାଇଁ ଠାକୁର ଶ୍ରୀ ଶ୍ରୀ ଅଭିରାମ ପରମହଂସଙ୍କୁ ପ୍ରଥମ ଦେଡ଼ମାସ ସଶ୍ରମ କାରାଦଣ୍ଡ ଆଦେଶ ମିଳିଥିଲା । ଓଡ଼ିଶାର ଛତ୍ରପୁର ଜେଲ୍‌ରେ ଦେଢ଼ମାସ ଓ ଆନ୍ଧ୍ରପ୍ରଦେଶର ରାଜମହେନ୍ଦ୍ରୀ ଜେଲ୍‌ରେ ସାଢେ ସାତମାସ ଏପରିକି ସମୁଦାୟ ମୋଟ୍ ପାଖାପାଖି ୯ମାସ କଟାଇବାକୁ ପଡିଥିଲା । ସେହିସବୁ ଜେଲ୍‌ରେ ବିଚାର କ'ଣ ଚାଲିଛି, ତାହା ଶୁଣିବାକୁ ବହୁ ଶିଷ୍ୟ ତଥା ବିଶିଷ୍ଟ ବ୍ୟକ୍ତିଙ୍କ ସମାରୋହ ଅହରହ ଲାଗିଥାଏ । ୧୯୩୪ ଖ୍ରୀରେ ଜେଲ୍ ଜୀବନ ପରେ ୧୯୩୫ ଖ୍ରୀ.ରେ ସର୍ବଧର୍ମ ସମନ୍ୱୟ ବାଣୀ ପ୍ରଚାର କରିଥିଲେ ୧୯୬୩ ଖ୍ରୀ. ପର୍ଯ୍ୟନ୍ତ ।

କଳିଭାଗବତ ଲେଖିବା ପୂର୍ବରୁ ସେ ଅବଗତ ଥିଲେ ଓଡ଼ିଶାର ଜୟୀ ରାଜଗୁରୁ ଓ ବିପ୍ଳବୀ ବକ୍ସିଜଗବନ୍ଧୁ ବିଦ୍ୟାଧର ଯେଉଁମାନେ ଇଂରେଜ ଶାସନକୁ ସଶସ୍ତ୍ର ବିପ୍ଳବ କରି ବ୍ୟତିବ୍ୟସ୍ତ କରିପକାଉଥିଲେ।

କଳିଭାଗବତର ମୁଖ୍ୟ ବିଷୟବସ୍ତୁ ତତ୍କାଳୀନ ବ୍ରିଟିଶ୍ ସମ୍ରାଟ ପଞ୍ଚମଜର୍ଜଙ୍କ ଭାରତ ଶାସନ ଆଉ ବେଶୀଦିନ ନୁହେଁ, ଏହା ଥିଲା 'କଳିଭାଗବତ' ପୁସ୍ତକର ମୁଖ୍ୟ ଭବିଷ୍ୟତବାଣୀ । ସବୁ କଂଗ୍ରେସ ଲୋକ, ବାପୁଙ୍କର ନେତୃତ୍ୱମାନି ଏକାଠି ହୋଇ ଭାରତ ଶାସନର ଡୋର ନିଜ ହାତକୁ ନେଇ ଯିବେ ଏବଂ ବିଦେଶୀ ବ୍ରିଟିଶ୍ ସୈନ୍ୟଙ୍କ ଭାରତ ମାଟିରୁ ବିଦା ପ୍ରକ୍ରିୟା ଦେଶକୁ ଲାଗି ରହିବ ଏବଂ ଭାରତ ବ୍ରିଟିଶ୍ କବଳରୁ ମୁକ୍ତ ହେବ । ଏହା ୧୯୨୮ ମସିହାରେ ପ୍ରକାଶନ ଅପେକ୍ଷାରେ ଥିଲା । ସେତେବେଳକୁ ଠାକୁର ଅଭିରାମ ପରମହଂସ କଟକ ଜିଲ୍ଲା ମାହାଙ୍ଗା ଥାନା ଅନ୍ତର୍ଗତ ଇଚ୍ଛାପୁରରେ ଅବସ୍ଥାନ କରୁଥାଆନ୍ତି । ଠାକୁରଙ୍କ ମତକୁ ବିଶ୍ୱାସ କରୁନଥିବା କେତେକ ନାସ୍ତିବାଦୀ ଏକାଠି ହୋଇ ତତ୍କାଳୀନ ମାହାଙ୍ଗା ଥାନା ଅନ୍ତର୍ଗତ ସବ୍‌ଇନ୍ସପେକ୍ଟର ଦୁର୍ଗାନନ୍ଦ ମିଶ୍ରଙ୍କ ପାଖରେ ସେମାନଙ୍କ ଅଭିଯୋଗ ଥିଲା । ଠାକୁର ଅଭିରାମ ପରମହଂସ ଦେବଙ୍କର ପ୍ରକାଶ ପାଇବାକୁ ଥିବା 'କଳିଭାଗବତ'ରେ ସମ୍ରାଟ ପଞ୍ଚମଜର୍ଜଙ୍କ ବିରୋଧରେ ସମ୍ମାନହାନି କଲା ଭଳି ଲେଖା ପ୍ରକାଶ ପାଇଛି । ସବ୍ ଇନ୍ସପେକ୍ଟର ଦୁର୍ଗାନନ୍ଦ ମିଶ୍ର ଉକ୍ତ ପୁସ୍ତକର ଏକ ପ୍ରତିଲିପି ଯୋଗାଡ କରି ତତ୍କାଳୀନ ବିହାର ଓଡ଼ିଶା ପୋଲିସ ସଦର ମହକୁମାଙ୍କ ପାଖକୁ ପଠାଇଲେ । ମାନ୍ଦ୍ରାଜ୍ ସରକାର ମୁଖ୍ୟ ଶାସନ ସଚିବ ବି.ଟି.ଏଚ୍. ବ୍ରିକେନ୍ ଏଥିରେ ସୁପାରିଶ କରିଥିଲେ ଯେ, ଏଥିପାଇଁ ପୁସ୍ତକର ରଚୟିତା ଓ ପ୍ରକାଶକ ଏବଂ ମୁଦ୍ରାକରଙ୍କ ବିରୋଧରେ ମାମଲା ରୁଜୁ କରିଥିଲେ । ସେଥିରେ ବିଚାର କରାଯିବା ପାଇଁ ବିଷୟବସ୍ତୁ ରଖାଗଲା ଯେ ପୁସ୍ତକରେ ଅନେକ ସ୍ଥାନରେ କେତେକ ରାଜଦ୍ରୋହ ପ୍ରକାଶନ ଉଲ୍ଲେଖ ରହିଛି ଏବଂ ଏଥିରେ ସମ୍ରାଟ ପଞ୍ଚମ ଜର୍ଜଙ୍କ ପ୍ରତି ଅବମାନନା କରାଯାଇଛି ଏବଂ ଏହା ବ୍ରିଟିଶ୍ ସରକାରଙ୍କ ଭାରତ ଶାସନରେ କେତେକ ଘୃଣ୍ୟ କଥା ଉଲ୍ଲେଖ ରହିଛି । ବ୍ରିଟିଶ୍ ସରକାର ସବୁ ପୁସ୍ତକକୁ ଜବତ କରିବା ପାଇଁ ଓ ଯେଉଁ ବ୍ୟକ୍ତି ଏ ପୁସ୍ତକ ପାଠ କରିବ, ତାକୁ ପଚାଶ ଟଙ୍କା ଜୋରିମାନା ଦେବାକୁ ପଡିବ ବୋଲି ସ୍ଥିର କଲେ । ଏହାପରେ ଠାକୁରଙ୍କୁ ୨୭.୭.୧୯୩୪ରେ ଗିରଫ କରାଯାଇଥିଲା ।

ଡି – ୩୫, ଷ୍ଟାର୍ ସିଟି (ପଟିଆ)
ଭୁବନେଶ୍ୱର– ୭୫୧୦୨୪

# ଭାରତୀୟ ମୁକ୍ତି ସଂଗ୍ରାମରେ ଗଣମାଧ୍ୟମର ଭୂମିକା

ମାନସ କୁମାର ମଲ୍ଲିକ

ଗଣମାଧ୍ୟମ ସବୁବେଳେ ଜନସାଧାରଣଙ୍କ ମଧ୍ୟରେ ଜାଗରଣ ସୃଷ୍ଟି କରିବାରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରି ଆସିଛି । ପୃଥିବୀର ବିଭିନ୍ନ ଘଟଣାବଳୀ ଗଣମାଧ୍ୟମରେ ସ୍ଥାନ ପାଇବା ଦ୍ୱାରା ଜନସାଧାରଣ ସଚେତନ ହୁଅନ୍ତି । ବର୍ତ୍ତମାନ ଆଧୁନିକ ଯୁଗରେ ବିଜ୍ଞାନ ଆଉ ପ୍ରଯୁକ୍ତି ବିଦ୍ୟାର ଉନ୍ନତି ସାଧନ ହେବା ଦ୍ୱାରା ଗଣମାଧ୍ୟମର ରୂପ ବଦଳିଛି । ଆଗରୁ କେବଳ ଛାପା ଗଣମାଧ୍ୟମ ଥିବାବେଳେ ଏବେ ବିଭିନ୍ନ ପ୍ରକାରର ବୈଦ୍ୟୁତିକ ଗଣମାଧ୍ୟମ ସେମାନଙ୍କର କାୟାବିସ୍ତାର କରି ଚାଲିଛନ୍ତି । ତେବେ ଦେଶରେ ବ୍ରିଟିଶ ଶାସନ ସମୟରେ ଛାପା ଗଣମାଧ୍ୟମର ଯେଉଁ ପ୍ରଭାବ ଜନସାଧାରଣଙ୍କ ଉପରେ ପଡ଼ିଥିଲା, ତା'ର ଫଳାଫଳ ଥିଲା ସୁଦୂର ପ୍ରସାରୀ । ସ୍ୱାଧୀନତା ପୂର୍ବରୁ ପ୍ରକାଶ ପାଉଥିବା ବିଭିନ୍ନ ସମ୍ବାଦପତ୍ର, ପତ୍ରପତ୍ରିକା ଇତ୍ୟାଦି ଦେଶର ସାଧାରଣ ଜନତାଙ୍କୁ ନବଜାଗରଣର ବାର୍ତ୍ତା ଦେବାରେ ସହାୟତା କରିବା ସହିତ ପରାଧୀନତାର ଶୃଙ୍ଖଳ ଛିଡ଼ାଇ ଏକ ସ୍ୱାଧୀନ ଭାରତ ଗଠନ କରିବା ପାଇଁ ପ୍ରେରଣା ମଧ୍ୟ ଯୋଗାଇଥିଲା ।

ବ୍ରିଟିଶ ଶାସନ କବଳରୁ ମୁକ୍ତି ପାଇଁ ପ୍ରଥମ ସ୍ୱାଧୀନତା ସଂଗ୍ରାମ କୁହାଯାଉଥିବା ୧୮୫୭ର ମହାନ ବିପ୍ଳବ ପୂର୍ବରୁ ଭାରତର ବିଭିନ୍ନ ପ୍ରାନ୍ତରରେ ଅନେକ ଖବରକାଗଜ ଏବଂ ପତ୍ରପତ୍ରିକା ପ୍ରକାଶ ପାଇସାରିଥିଲା, ତେବେ ସେଥିମଧ୍ୟରୁ ରାମମୋହନ ରାୟଙ୍କ ଦ୍ୱାରା ପ୍ରକାଶିତ 'ବଙ୍ଗଦୂତ' ଏବଂ ଦାଦାଭାଇ ନାରୋଜୀଙ୍କ ଦ୍ୱାରା ପ୍ରକାଶିତ 'ରସ୍ତି ଗୋଫ୍‌ତାର ଭଳି କେତେକ ସମ୍ବାଦପତ୍ର ଏବଂ ପତ୍ରପତ୍ରିକା ସାମାଜିକ କୁସଂସ୍କାର ବିରୋଧରେ ସ୍ୱର ଉତ୍ତୋଳନ କରିବା ସହିତ ଲୋକମାନଙ୍କ ମଧ୍ୟରେ ଜାତୀୟ ଚେତନା ଜାଗ୍ରତ କରିବା ପାଇଁ ଚେଷ୍ଟିତ ଥିଲେ ।

୧୮୫୭ର ବିପ୍ଳବ ବେଳେ ହିନ୍ଦୀ ଏବଂ ଉର୍ଦ୍ଦୁ ଭାଷାରେ ପ୍ରକାଶିତ 'ପାୟାମ୍-ଇ-ଆଜାଦି' ଦେଶର ଜନସାଧାରଣଙ୍କୁ ବ୍ରିଟିଶ ଶାସନ ବିରୋଧରେ ଲଢେଇ କରିବା ପାଇଁ ଆହ୍ୱାନ ଦେଇଥିଲା । ସେତେବେଳେ ଏହାର ପ୍ରକାଶନକୁ ସେଥିପାଇଁ ବ୍ରିଟିଶ ଇଷ୍ଟ ଇଣ୍ଡିଆ କମ୍ପାନୀ ବାଜ୍ୟାପ୍ତି କରିଦେବା ସହିତ ଯେଉଁମାନଙ୍କ ହାତରେ ଏହି କାଗଜ ଦେଖାଯାଉ ଥିଲା, ସେମାନଙ୍କୁ ଦେଶରେ ଅସ୍ଥିରତା ସୃଷ୍ଟି କରୁଥିବା ଅଭିଯୋଗରେ ଦଣ୍ଡିତ କରାଯାଉଥିଲା । ପ୍ରଥମ ହିନ୍ଦୀ ଦୈନିକ 'ସମାଚାର ସୁଧା ବର୍ଷଣ', ଉର୍ଦ୍ଦୁ ଭାଷାରେ ପ୍ରକାଶିତ 'ଦୂରବୀନ୍' ଏବଂ ପାର୍ସି ଭାଷାରେ ପ୍ରକାଶିତ 'ସୁଲତାନ-ଉଲ୍-ଆକବର' ମଧ୍ୟ ସରକାରୀ ମୋକଦ୍ଦମାର ସମ୍ମୁଖୀନ ହୋଇଥିଲେ । ଏଥିରେ ସେତେବେଳେ ମୋଗଲ ସମ୍ରାଟ ବାହାଦୂର ଶାହା ଜାଫରଙ୍କର ବ୍ରିଟିଶ ଇଷ୍ଟଇଣ୍ଡିଆ କମ୍ପାନୀ ଶାସନକୁ ଦେଶରୁ ହଟାଇବା ପାଇଁ ଏକ ଫରମାନ୍ ବା ରାଜାଜ୍ଞା ଲୋକମାନଙ୍କ ଉଦ୍ଦେଶ୍ୟରେ ପ୍ରକାଶିତ ହୋଇଥିଲା । ଏହା ଦେଶର ଜନସାଧାରଣଙ୍କ ଉପରେ ଏପରି ପ୍ରଭାବ ପକେଇଥିଲା ଯେ, ଇଷ୍ଟଇଣ୍ଡିଆର ତତ୍‌କାଳୀନ ଗଭର୍ଣ୍ଣର ଜେନେରାଲ ଲର୍ଡକ୍ୟାନିଂ ଖବରକାଗଜ ଏବଂ ପତ୍ରପତ୍ରିକାଗୁଡିକ ଉପରେ ବିଭିନ୍ନ ପ୍ରକାର କଟକଣା ଜାରି କରିବା ପାଇଁ 'ଗ୍ୟାଗିଙ୍ଗ୍ ଆକ୍ଟ' ୧୮୫୭ ପ୍ରଣୟନ କରିଥିଲେ ।

ବ୍ରିଟିଶ୍ ଶାସନକୁ ଦେଶରୁ ହଟେଇବା ପାଇଁ ସେତେବେଳେ ଗଣମାଧ୍ୟମ ଯେଉଁ ବିଶେଷ ଭୂମିକା ଗ୍ରହଣ କରିଥିଲା, ସେଥିମଧ୍ୟରୁ ଏକ ପ୍ରମୁଖ ଭୂମିକା ଥିଲା ୧୮୫୩ରୁ ପ୍ରକାଶିତ ହୋଇଆସୁଥିବା 'ହିନ୍ଦୀ ପାଟ୍ରିଅଟ'ର । ଏହାର ପ୍ରତିଷ୍ଠାତା ଥିଲେ ଲେଖକ ତଥା ନାଟ୍ୟକାର ଗିରିଶ ଚନ୍ଦ୍ର ଘୋଷ ଏବଂ ଏହା ବିଶିଷ୍ଟ ସାମ୍ବାଦିକ ତଥା ଦେଶଭକ୍ତ ହରିଶ ଚନ୍ଦ୍ର ମୁଖାର୍ଜୀଙ୍କ ଦ୍ୱାରା ସମ୍ପାଦିତ ହେଉଥିବା ସମୟରେ ବେଶ ଲୋକପ୍ରିୟ ହୋଇପାରିଥିଲା । ୧୮୬୧ରେ 'ପାଟ୍ରିଅଟ'ରେ ଦେଶର କୃଷକମାନଙ୍କ ପାଇଁ 'ନୀଲ୍‌ଦର୍ପଣ' ନାମରେ ଏକ ନାଟକ ପ୍ରକାଶିତ ହୋଇଥିଲା ଯେଉଁଥିରେ କୃଷକମାନେ ଗୋରା ବ୍ୟବସାୟୀମାନଙ୍କ ବ୍ୟବସାୟ ପାଇଁ ଫସଲ ଉତ୍ପାଦନ ନକରିବାକୁ ଆହ୍ୱାନ ଦିଆଯାଇଥିଲା । ଏହା ସେତେବେଳେ ଏକ ଆନ୍ଦୋଳନର ରୂପ ନେଇଥିବାରୁ ବ୍ରିଟିଶ ପ୍ରଶାସନ ବାଧ୍ୟ

ହୋଇ 'ନୀଲ କମିଶନ' ବସାଇଥିଲା । ପରବର୍ତ୍ତୀ ସମୟରେ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ଏହି ଖବର କାଗଜର ପ୍ରକାଶନ ଦାୟିତ୍ୱ ନିଜ ହାତକୁ ନେଇଥିଲେ । 'ପାଟ୍ରି ଅଟ୍' ସେତେବେଳର ବ୍ରିଟିଶ ଶାସକଙ୍କ ଅତ୍ୟାଚାରକୁ ବିରୋଧ କରିବା ସହିତ ଭାରତୀୟମାନଙ୍କୁ ପ୍ରଶାସନର ବିଭିନ୍ନ ଉଚ୍ଚପଦବୀରେ ରଖିବା ପାଇଁ ଦାବି ଉପସ୍ଥାପନା କରୁଥିଲା । 'ଇଣ୍ଡିଆନ ମିରର' ସେତେବେଳର ଆଉ ଏକ ଖବରକାଗଜ ଲୋକମାନଙ୍କୁ ବ୍ରିଟିଶ ଶାସନ ବିରୋଧରେ ସଚେତନ କରେଇବା ଯୋଗୁଁ ବେଶ୍ ଲୋକପ୍ରିୟ ହୋଇପାରିଥିଲା ।

ପ୍ରସିଦ୍ଧ 'ଅମୃତ ବଜାର ପତ୍ରିକା' ସାପ୍ତାହିକ ଭାବରେ ସେତେବେଳେ ଜେସୋର (ବର୍ତ୍ତମାନ ଏହା ବାଂଲାଦେଶ ଅଧୀନରେ ଅଛି)ରୁ ପ୍ରକାଶିତ ହୋଇ ପାଠକୀୟ ଆଦୃତି ଲାଭ କରିଥିଲା । ଏହା ବ୍ରିଟିଶ ସରକାରଙ୍କ ପାଇଁ ଏପରି ମୁଣ୍ଡବ୍ୟଥାର କାରଣ ହୋଇଥିଲା ଯେ, ଏହାର ମାଲିକ ତଥା ପ୍ରକାଶକଙ୍କୁ ମକଦ୍ଦମାର ସମ୍ମୁଖୀନ ହେବା ସହିତ ଦଣ୍ଡ ଭୋଗିବାକୁ ପଡିଥିଲା । ୧୮୭୧ରେ ଏହି ପତ୍ରିକାର କାର୍ଯ୍ୟାଳୟ କଲିକତାକୁ ସ୍ଥାନାନ୍ତରିତ ହୋଇଥିଲେ ମଧ୍ୟ ବ୍ରିଟିଶ ସରକାରଙ୍କ କୁଶାସନ ବିରୋଧରେ ତା'ର ଅଭିଯାନ ଜାରି ରଖିଥିବାରୁ ପୁଣି ଏହା କାର୍ଯ୍ୟାନୁଷ୍ଠାନର ସମ୍ମୁଖୀନ ହୋଇଥିଲା ଏବଂ ଏହିପରି ଅନ୍ୟ ଖବରକାଗଜ ତଥା ପତ୍ରପତ୍ରିକାକୁ ନିୟନ୍ତ୍ରଣ କରିବା ପାଇଁ ବ୍ରିଟିଶ ସରକାର ପୁନଶ୍ଚ ଅନେକ କଟକଣା ଜାରି କରିଥିଲେ । ମହାରାଷ୍ଟ୍ରର ବିଶିଷ୍ଟ ସଂଗ୍ରାମୀ ନେତା ମହାଦେବ ଗୋବିନ୍ଦ ରାନାଡେ ସେତେବେଳେ ପ୍ରକାଶ ପାଉଥିବା ପତ୍ରିକା 'ଜ୍ଞାନ ପ୍ରକାଶ' ଏବଂ 'ଇନ୍ଦୁ ପ୍ରକାଶ'ରେ ବିଭିନ୍ନ ସଚେତନତା ଧର୍ମୀ ପ୍ରବନ୍ଧ ଲେଖୁଥିଲେ, ଯାହା ସମାଜ ସଂସ୍କାର ପାଇଁ ଲୋକମାନଙ୍କ ଉପରେ ଅନେକ ପ୍ରଭାବ ପକାଉଥିଲା । ୧୮୮୧ରେ ବାଳଗଙ୍ଗାଧର ତିଳକଙ୍କ ଉଦ୍ୟମରେ ମରାଠୀରେ ପ୍ରକାଶିତ ହୋଇଥିଲା 'କେଶରୀ' । ତା'ପରେ ତିଳକ ଏବଂ ତାଙ୍କର ସହଯୋଗୀ ଅଗରକର ଏବଂ ଚିପ୍ଲୁଙ୍କରଙ୍କ ସହଯୋଗରେ ଇଂରାଜୀରେ ଆଉଏକ ସାପ୍ତାହିକ ସମ୍ବାଦପତ୍ର 'ମରାଠା' ପ୍ରକାଶିତ ହୋଇଥିଲା । ସେତେବେଳେ ପ୍ରକାଶିତ ହେଉଥିବା ଆଉଏକ ଇଂରାଜୀ ସମ୍ବାଦପତ୍ର 'ଡେକାନ ଷ୍ଟାର'ର ସମ୍ପାଦକ ନାମ୍‌ଯୋଶୀ ସେମାନଙ୍କ ସହିତ ଯୋଗ ଦେଇଥିଲେ । ସେମାନେ ବିଭିନ୍ନ ଲେଖା ମାଧ୍ୟମରେ ଲୋକମାନଙ୍କ ମଧ୍ୟରେ ବ୍ରିଟିଶ ସରକାରଙ୍କ ବିରୋଧରେ ସଂଗ୍ରାମ କରିବା ପାଇଁ ଏକପ୍ରକାର ଜାଗରଣ ଆଣିପାରିଥିଲେ । ସେଥିପାଇଁ ତିଳକ ଏବଂ ଅଗରକରଙ୍କୁ ଦଣ୍ଡିତ କରାଯାଇଥିଲା । ତେବେ ଏଥିରେ ଭୟଭିତ ନହୋଇ ତିଳକ ନାଗପୁର ଏବଂ ବନାରସରୁ ହିନ୍ଦୀ ଭାଷାରେ 'କେଶରୀ'କୁ ପ୍ରକାଶ କରିଥିଲେ । ଏହାଦ୍ୱାରା ବଙ୍ଗଳା ବିଭାଜନ ବିରୋଧରେ ଆନ୍ଦୋଳନକୁ ମଧ୍ୟ ତୀବ୍ର ରୂପ ଦିଆଯାଇ ପାରିଥିଲା । ୧୮୮୫ରେ ଭାରତୀୟ ଜାତୀୟ କଂଗ୍ରେସର ଜନ୍ମ ସମୟରେ ବିଭିନ୍ନ ଖବରକାଗଜର ସମ୍ପାଦକମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ସେହିବର୍ଷ ଡିସେମ୍ବର ମାସରେ ତତ୍କାଳୀନ ବମ୍ବେ ସହରରେ କଂଗ୍ରେସର ଯେଉଁ ପ୍ରଥମ ଅଧିବେଶନ ବସିଥିଲା, ସେଥିରେ ଯୋଗଦେଇଥିବା ଖବରକାଗଜର ସମ୍ପାଦକମାନଙ୍କ ମଧ୍ୟରେ ଥିଲେ 'ଦି ହିନ୍ଦୁ'ର ସି. ସୁବ୍ରମଣ୍ୟମ ଆୟାର, ଯିଏ ଅଧିବେଶନରେ ଉପସ୍ଥାପିତ ହୋଇଥିବା ପ୍ରଥମ ପ୍ରସ୍ତାବର ପ୍ରସ୍ତାବକ ଥିଲେ । ତାଙ୍କର ପ୍ରସ୍ତାବରେ ସେ ସରକାରଙ୍କୁ ପ୍ରଶାସନିକ ସ୍ତରରେ ବିଭିନ୍ନ କାର୍ଯ୍ୟର ତଦନ୍ତ ଏବଂ ତଦାରଖ କରିବା ପାଇଁ ଏକ କମିଟି ଗଢିବାକୁ ଦାବି ଜଣେଇଥିଲେ। ଅଧିବେଶନରେ ଆଗତ ହୋଇଥିବା ଦ୍ୱିତୀୟ ପ୍ରସ୍ତାବର ପ୍ରସ୍ତାବକ ଥିଲେ ପୁନାର ବିଶିଷ୍ଟ ସାମ୍ବାଦିକ ଚିପଲୁଙ୍କର । ଏଥିରେ ବ୍ରିଟେନରୁ ଭାରତକୁ ଶାସନ କରୁଥିବା 'ଇଣ୍ଡିଆ କାଉନ୍‌ସିଲ'କୁ ଉଚ୍ଛେଦ ପାଇଁ ଦାବି କରାଯାଇଥିଲା । ଅଧିବେଶନରେ ଗୃହୀତ ହୋଇଥିବା ଅନ୍ୟ ପ୍ରସ୍ତାବଗୁଡିକର ସମର୍ଥକ ଏବଂ ପ୍ରସ୍ତାବକ ଥିଲେ ସେସମୟର ବିଶିଷ୍ଟ ସାମ୍ବାଦିକ ଦାଦାଭାଇ ନାରୋଜୀ ।

ପରବର୍ତ୍ତୀ ସମୟରେ ଭାରତୀୟ ଜାତୀୟ କଂଗ୍ରେସର ଯେଉଁମାନେ ସଭାପତି ପଦରେ ରହିଥିଲେ, ସେମାନଙ୍କ ମଧ୍ୟରୁ ଅନେକ ହୁଏତ କୌଣସି ନା କୌଣସି ସମ୍ବାଦପତ୍ରର ସମ୍ପାଦକ ଥିଲେ କିମ୍ବା ସଭାପତି ହେବାପରେ ସମ୍ବାଦପତ୍ର ସହିତ ଜଡିତ ହୋଇପଡିଥିଲେ । ସେମାନଙ୍କ ମଧ୍ୟରୁ ଫିରୋଜ ଶାହା ମେହେଟ୍ଟା ଯିଏକି " ବମ୍ବେ କ୍ରନିକଲ" ଆରମ୍ଭ କରିଥିଲେ ଏବଂ ପଣ୍ଡିତ ମଦନ ମୋହନ ମାଳବ୍ୟଙ୍କ ଦ୍ୱାରା ସମ୍ପାଦିତ ହେଉଥିଲା ଦୈନିକ 'ହିନ୍ଦୁସ୍ଥାନ' । ଲାଲା ଲଜପତ ରାୟ 'ଦି ପଞ୍ଜାବି', 'ବନ୍ଦେ ମାତରମ୍' ଏବଂ ଲାହୋରରୁ ପ୍ରକାଶିତ 'ଦି ପିପୁଲ' ଭଳି ତିନୋଟି ସମ୍ବାଦପତ୍ରର ପୃଷ୍ଠପୋଷକତା ମଧ୍ୟ କରୁଥିଲେ । ଦକ୍ଷିଣ ଆଫ୍ରିକାରେ ରହୁଥିବା ସମୟରେ ଗାନ୍ଧିଜୀ 'ଇଣ୍ଡିଆନ୍ ଓପିନିୟନ' ଏବଂ ଭାରତରେ 'ୟଙ୍ଗଇଣ୍ଡିଆ', 'ନବଜୀବନ', 'ହରିଜନ' ଭଳି ପତ୍ରିକା ପ୍ରକାଶ କରିଥିଲେ, ଯାହା ଭାରତର ଅଗଣିତ ଜନସାଧାରଣଙ୍କୁ ସାମାଜିକ ସଂସ୍କାର ପାଇଁ ପ୍ରେରଣା ଯୋଗାଇବା ସହିତ ଜାତୀୟତାବାଦର ଚେତନା ଖେଳେଇବାରେ ବେଶ୍ ସହାୟକ ହୋଇଥିଲା । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଏବଂ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ଭଳି ନେତାମାନେ ସାମ୍ବାଦିକ ନଥିଲେ ବି 'ଫରୱାର୍ଡ' ଏବଂ 'ଆଡ୍‌ଭାନ୍ସ'

ଭଳି ସମ୍ବାଦପତ୍ରଗୁଡ଼ିକୁ ପରିଚାଳନା କରୁଥିଲେ । ପଣ୍ଡିତ ଜବାହରଲାଲ ନେହେରୁ ପ୍ରତିଷ୍ଠା କରିଥିଲେ 'ନ୍ୟାସ୍‌ନାଲ ହେରାଲ୍‌ଡ' । ଏହି ପତ୍ରପତ୍ରିକାଗୁଡିକ ଦେଶରେ ବ୍ରିଟିଶ ବିରୋଧୀ ଜାତୀୟ ଆନ୍ଦୋଳନକୁ ଆହୁରି ତେଜିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ଭାରତୀୟ ଜାତୀୟ ମୁକ୍ତି ଆନ୍ଦୋଳନରେ ଚରମପନ୍ଥୀ ବୈପ୍ଳବିକ ଚିନ୍ତାଧାରାକୁ ମଧ୍ୟ ତତ୍‌କାଳୀନ ଖବରକାଗଜ ଏବଂ ପତ୍ରପତ୍ରିକାଗୁଡିକ ପ୍ରଭାବିତ କରିପାରିଥିଲେ । ଏହି କ୍ରମରେ ପ୍ରଥମେ ଆସେ ବାରିନ୍ଦ୍ର କୁମାର ଘୋଷଙ୍କ ଦ୍ୱାରା ପ୍ରତିଷ୍ଠିତ ଏବଂ ସମ୍ପାଦିତ 'ଯୁଗାନ୍ତର' । ଠିକ୍ ସେହିପରି ଲାଲା ହରଦୟାଲଙ୍କ ଦ୍ୱାରା ଗଦ୍ଦରପାର୍ଟି ସଙ୍ଗଠିତ ହେବାପରେ 'ଗଦ୍ଦର' ନାମକ ସମ୍ବାଦପତ୍ର ପ୍ରକାଶିତ ହୋଇଥିଲା । ଏହା ପ୍ରକାଶିତ ହେବାର ବର୍ଷକ ଭିତରେ ଏତେ ଲୋକପ୍ରିୟ ହୋଇପାରିଥିଲା ଯେ, ଏକାଦିକ୍ରମେ ହିନ୍ଦୀ, ଉର୍ଦ୍ଦୁ, ପଞ୍ଜାବୀ, ଗୁଜୁରାଟି, ମରାଠୀ ଏବଂ ଇଂରାଜୀରେ ଲକ୍ଷ ଲକ୍ଷ ସଂଖ୍ୟାରେ ଛପାଯାଇ ଭାରତ ସମେତ ପୃଥିବୀର ବିଭିନ୍ନ ଦେଶକୁ ଯେଉଁଠି ଭାରତୀୟମାନେ ଅଛନ୍ତି ସେଠାକୁ ପଠାଯାଉଥିଲା । ପ୍ରଥମାବସ୍ଥାରେ ଭାରତକୁ ଏହା ଲୁକ୍‌କାୟିତ ଅବସ୍ଥାରେ ଆସୁଥିଲା ଏବଂ ଏହାକୁ ପଢି ଦେଶର ଲୋକମାନେ ବ୍ରିଟିଶ ବିରୋଧୀ ଆନ୍ଦୋଳନକୁ ଜୋରଦାର କରିବା ପାଇଁ ପ୍ରେରଣା ପାଉଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ଏହାର ସମ୍ପାଦକଙ୍କୁ ଆମେରିକାରେ ଗିରଫ କରାଯାଇ ଭାରତକୁ ଅଣାଯାଇଥିଲା ଏବଂ ପରେ ଏହି ସମ୍ବାଦପତ୍ରଟି ବନ୍ଦ ହୋଇଯାଇଥିଲା ।

ସେସମୟରେ ଆଉ ଏକ ସମ୍ବାଦପତ୍ର 'ବନ୍ଦେମାତରମ୍' ମଧ୍ୟ ମୁକ୍ତି ସଂଗ୍ରାମ ପାଇଁ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ୧୯୦୬ରେ ଏହାକୁ ପ୍ରତିଷ୍ଠା କରିଥିଲେ ସୁବୋଧ ଚନ୍ଦ୍ର ମଲ୍ଲିକ, ଚିତ୍ତରଞ୍ଜନ ଦାସ ଏବଂ ବିପିନି ଚନ୍ଦ୍ର ପାଲ । ଏହାର ସମ୍ପାଦକ ଅରବିନ୍ଦ ଘୋଷ, 'ସନ୍ଧ୍ୟା'ର ସମ୍ପାଦକ ବି. ଉପାଧ୍ୟାୟ ଏବଂ 'ଯୁଗାନ୍ତର'ର ସମ୍ପାଦକ ବି.ଏନ୍. ଦତ୍ତଙ୍କ ବିରୋଧରେ ଖବରକାଗଜ ମାଧ୍ୟମରେ ଲୋକଙ୍କୁ ସ୍ୱାଧୀନତା ସଂଗ୍ରାମ ପାଇଁ ପ୍ରୋତ୍ସାହିତ କରୁଥିବା ଅଭିଯୋଗରେ ମୋକଦ୍ଦମାର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

ସେତେବେଳେ ବ୍ରିଟିଶ ସରକାରଙ୍କ ଆର୍ଥିକ ସହଯୋଗରେ ପ୍ରକାଶ ପାଉଥିବା ହିନ୍ଦୀ ପତ୍ରିକା 'କବି ବଚନ ସୁଧା'ରେ ବ୍ରିଟିଶ ରାଜକୁମାରଙ୍କ ଉଦ୍ଦେଶ୍ୟରେ ଏକ ଅପମାନଜନକ କବିତା ପ୍ରକାଶ ପାଇଥିବାରୁ ଦିଆଯାଉଥିବା ସହାୟତା ବନ୍ଦ କରାଯାଇଥିଲା । ଯେଉଁଥି ପାଇଁ ଏହାର ସମ୍ପାଦକ ଭାରତେନ୍ଦୁ ହରିଶ ଚନ୍ଦ୍ର ଇସ୍ତଫା ଦେଇଥିଲେ । ତାଙ୍କର ସହଯୋଗୀ ପ୍ରତାପ ନାରାୟଣ ମିଶ୍ର ଏବଂ ବାଲକ୍ରିଷ୍ଣ ଭଟ୍ଟ 'ପ୍ରଦୀପ' ଏବଂ 'ବ୍ରହ୍ମନ' ନାମରେ ଦୁଇଟି ରାଜନୈତିକ ପତ୍ରିକା ଆଲ୍ଲାବାଦ ଏବଂ କାନପୁରରୁ ପ୍ରକାଶ କରିଥିଲେ । ପରବର୍ତ୍ତୀ ସମୟରେ ବ୍ରିଟିଶ ସରକାରଙ୍କ ବିରୋଧରେ ଜନସାଧାରଣଙ୍କୁ ଯୁଦ୍ଧ ଘୋଷଣା କରିବା ପାଇଁ ଉସ୍‌କାଉ ଥିବା ଅଭିଯୋଗରେ 'ପ୍ରଦୀପ'କୁ ୧୯୧୦ରେ ବନ୍ଦ କରିଦିଆଯାଇ ଥିଲା ।

୧୮୭୮ ମସିହାରେ କଲିକତାରୁ 'ଭାରତ ମିତ୍ର' ନାମରେ ଏକ ହିନ୍ଦୀ ପାକ୍ଷିକ ପତ୍ରିକା ପ୍ରକାଶ ପାଇଥିଲା, ଯେଉଁଥିରେ କ୍ରମାଗତ ଭାବରେ ବ୍ରିଟିଶ ସରକାରଙ୍କ ବିଭିନ୍ନ ଦମନମୂଳକ ନୀତି ବିଷୟରେ ଲେଖାଯିବା ସହିତ ଲୋକମାନଙ୍କୁ ପ୍ରତିବାଦ ଏବଂ ବିଦ୍ରୋହ କରିବା ପାଇଁ ଆହ୍ୱାନ ଦିଆଯାଉଥିଲା । କଲିକତାରୁ ସେତେବେଳେ ପ୍ରକାଶ ପାଉଥିବା ଅନ୍ୟାନ୍ୟ ସମ୍ବାଦପତ୍ର ଏବଂ ପତ୍ରପତ୍ରିକା ମଧ୍ୟରେ ପ୍ରମୁଖ ଥିଲେ ଇଂରାଜୀ ଭାଷାର 'ମଡର୍ଣ୍ଣ ରିଭ୍ୟୁ', ବଙ୍ଗଳା ଭାଷାର 'ପ୍ରବାସୀ ପତ୍ର' ଏବଂ ହିନ୍ଦୀ ଭାଷାର 'ବିଶାଳ ଭାରତ' । ସମସ୍ତଙ୍କର ଏକମାତ୍ର ଅଭିଯାନ ଥିଲା ଦେଶବାସୀଙ୍କୁ ବ୍ରିଟିଶ ସରକାରଙ୍କ କୁଶାସନ ବିରୋଧରେ ସଚେତନ କରାଇବା ସହିତ ସ୍ୱେଦେଶୀ ଜାଗରଣ ଆଣିବା ।

ଊନବିଂଶ ଶତାବ୍ଦୀର ପ୍ରଥମ ତିନି ଦଶକରେ ଜଣେ ପ୍ରସିଦ୍ଧ ଦେଶଭକ୍ତ ପତ୍ରକାର ହିସାବରେ ସୁନାମ ଅର୍ଜନ କରିଥିବା ଗଣେଷ ଶଙ୍କର ବିଦ୍ୟାର୍ଥି ହିନ୍ଦୀ ଭାଷାରେ ୧୯୧୩ ମସିହାରେ କାନପୁରରୁ ପ୍ରକାଶ କରିଥିଲେ ସାପ୍ତାହିକ 'ପ୍ରତାପ' । ହିନ୍ଦୁ ମୁସ୍‌ଲିମ୍ ଏକତା ପାଇଁ ନିଜକୁ ଉତ୍ସର୍ଗ କରିଥିବା ଏହି ପତ୍ରକାର ସେତେବେଳେ ଅନେକଙ୍କ ପାଇଁ ଆଦର୍ଶ ପାଲଟିଥିଲେ । କ୍ରିଷ୍ଣଦତ୍ତ ପାଲିଓ୍ୱାଲାଙ୍କ ସମ୍ପାଦିତ 'ସୈନିକ' ହିନ୍ଦୀ ଭାଷାରେ ଆଗ୍ରାରୁ ପ୍ରକାଶ ପାଇ ସମଗ୍ର ଉତ୍ତର ଭାରତରେ ବ୍ରିଟିଶ ବିରୋଧୀ ଆନ୍ଦୋଳନକୁ ଆହୁରି ତୀବ୍ରତର କରିବା ସହିତ ଲୋକମାନଙ୍କ ମଧ୍ୟରେ ଜାତୀୟ ଚେତନା ଜାଗ୍ରତ କରାଇବାରେ ସାହାଯ୍ୟ କରୁଥିଲା ।

ଲାହୋରରୁ ପ୍ରକାଶ ପାଉଥିବା ମହାଶୟ ଖୁସାଲ ଚାନ୍ଦଙ୍କ ସମ୍ପାଦିତ 'ମିଲାପ' ସେତେବେଳେ ଲାହୋର ଏବଂ ଅନ୍ୟାନ୍ୟ ଅଞ୍ଚଳରେ ଲୋକମାନଙ୍କ ଉପରେ ବେଶ୍ ପ୍ରଭାବ ପକାଉଥିଲା । ୧୮୮୧ରେ ସର୍ଦ୍ଦାର ଦୟାଲ ସିଂହଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା

'ଟ୍ରାଇବୁନ' ଯାହାର ସମ୍ପାଦକ ଥିଲେ ଶିତଳ କାନ୍ତ ଚାଟାର୍ଜି । ବିଶିଷ୍ଟ ବିପ୍ଳବୀ ବିପିନି ଚନ୍ଦ୍ର ପାଲ ମଧ୍ୟ କିଛିଦିନ ଏହାର ସମ୍ପାଦକ ଥିଲେ । ତାଙ୍କ ସମୟରେ ଏହି ସମ୍ବାଦପତ୍ର ଭାରତୀୟ ପାଠକଙ୍କ ମନରେ ବ୍ରିଟିଶ ବିରୋଧୀ ଅଗ୍ନି ସଂଯୋଗ କରିବାରେ ବେଶ୍ ସହାୟକ ହୋଇଥିଲା । ସେତେବେଳେ ବମ୍ବେରୁ ପ୍ରକାଶିତ ହେଉଥିବା 'ବମ୍ବେ କ୍ରନିକଲ' ପଞ୍ଜାବର ଜାଲିଓ୍ୱାନାଓ୍ୱାଲାବାଗ ହତ୍ୟାକାଣ୍ଡର ବର୍ବରତାକୁ ପ୍ରକାଶ କରି ଲୋକମାନଙ୍କୁ ବ୍ରିଟିଶ ଶାସନ ବିରୋଧରେ ବିଦ୍ରୋହ କରିବା ପାଇଁ ଆହ୍ୱାନ ଦେବାରୁ ଏହାର ସମ୍ବାଦିକ ଗୋବର୍ଦ୍ଧନ ଦାସଙ୍କୁ ତିନି ବର୍ଷ କାରାଦଣ୍ଡରେ ଦଣ୍ଡିତ କରାଯାଇଥିଲା । ସେହିପରି ଗୁଜୁରାଟି ଭାଷାରେ ପ୍ରକାଶ ପାଉଥିବା 'ଜନ୍ମଭୂମି', 'ବର୍ତ୍ତମାନ' ଇତ୍ୟାଦି ପତ୍ରିକା ସେ ଅଞ୍ଚଳରେ ଲୋକମାନଙ୍କୁ ଏକତ୍ର ହୋଇ ବ୍ରିଟିଶ ସରକାରଙ୍କ ବିରୋଧରେ ଲଢେଇ କରିବାକୁ ପ୍ରେରଣା ଯୋଗାଉଥିଲା । ସିନ୍ଧି ଭାଷାରେ ପ୍ରକାଶ ପାଉଥିବା 'ହିନ୍ଦ୍'ର ତିନିଜଣ ସମ୍ପାଦକ ଯଥା, ଜୟରାମ ଦାସ ଦୌଲତରାମ, ଡଃ. ଗିଡଓ୍ୱାନୀ ଏବଂ ହିରାନନ୍ଦ କରମଚାନ୍ଦଙ୍କୁ ବ୍ରିଟିଶ ସରକାର ବନ୍ଦୀ କରିଥିଲେ ଏବଂ ସେମାନଙ୍କର ଛାପାଖାନାକୁ ବାଜ୍ୟାପ୍ତି କରିଥିଲେ । ସେମାନଙ୍କ ବିରୋଧରେ ଅଭିଯୋଗ ଥିଲା ସେମାନେ ଖବରକାଗଜ ମାଧ୍ୟମରେ ଲୋକମାନଙ୍କୁ ସରକାରଙ୍କ ବିରୋଧରେ ବିଦ୍ରୋହ କରିବା ପାଇଁ ପ୍ରରୋଚିତ କରୁଥିଲେ ।

ଭାରତୀୟ ଜନମାନସକୁ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ କରାଇ ବ୍ରିଟିଶ ସରକାରଙ୍କ ବିରୋଧରେ ସଂଗ୍ରାମ କରିବାକୁ ବିଭିନ୍ନ ସମ୍ବାଦପତ୍ର ଏବଂ ପତ୍ରପତ୍ରିକା ମାଧ୍ୟମରେ ଯେଉଁ ଅଭିଯାନ ଆରମ୍ଭ ହୋଇଥିଲା, ସେଥିରୁ ବାଦ୍ ପଡିନଥିଲା ତତ୍‌କାଳୀନ ଓଡ଼ିଶା । ୧୮୬୬ରେ ଓଡ଼ିଶାର ମେରୁଦଣ୍ଡ ଭାଙ୍ଗି ଦେଇଥିବା ନଅଙ୍କ ଦୁର୍ଭିକ୍ଷ ସମୟରୁ ଓଡ଼ିଆ ସମ୍ବାଦପତ୍ର, ପତ୍ରପତ୍ରିକାମାନଙ୍କର ଜୟଯାତ୍ରା 'ଉତ୍କଳ ଦୀପିକା' ମାଧ୍ୟମରେ ଆରମ୍ଭ ହୋଇଥିବା ବେଳେ ପରବର୍ତ୍ତୀ ସମୟରେ 'ସମ୍ବାଦ ବାହିକା' ଉତ୍କଳ ହିତୈଷିଣୀ, ଉତ୍କଳ ଦର୍ପଣ, ସ୍ୱେଦେଶୀ, ଆଶା, ସମାଜ, ପ୍ରଜାତନ୍ତ୍ର ଇତ୍ୟାଦି ଆହୁରି ଅନେକ ଓଡ଼ିଆ ଖବରକାଗଜ ଏବଂ ପତ୍ରପତ୍ରିକା ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରୁ ପ୍ରକାଶ ପାଇ ଲୋକମାନଙ୍କୁ ନିଜ ଅଧିକାର ସଚେତନ କରେଇବା ସହିତ, ଜାତୀୟ ଚେତନା ଜାଗ୍ରତ କରେଇ ବ୍ରିଟିଶ ଶାସନ ବିରୋଧରେ ଲଢିବାକୁ ପ୍ରେରଣା ଯୋଗାଇଥିଲେ । କଟକ, ବାଲେଶ୍ୱର, ବ୍ରହ୍ମପୁର ଏବଂ ସମ୍ବଲପୁର ଇତ୍ୟାଦି ଓଡ଼ିଶାର କେତୋଟି ପ୍ରମୁଖ ସହର ଥିଲା ଏହିସବୁ ସମ୍ବାଦପତ୍ରର ଜନ୍ମସ୍ଥଳୀ । ଗୌରୀଶଙ୍କର ରାୟ, ଶଶିଭୂଷଣ ରଥ, ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ଡ. ହରେକୃଷ୍ଣ ମହତାବ, ଇତ୍ୟାଦି ଅନେକ ମହାନ୍ ବ୍ୟକ୍ତିତ୍ୱ ଥିଲେ ଏହି ଜାତୀୟ ଚେତନାର ବାହକ । ସେମାନଙ୍କ ଦ୍ୱାରା ପ୍ରକାଶିତଏବଂ ସମ୍ପାଦିତ ସମ୍ବାଦପତ୍ର ଲୋକମାନଙ୍କୁ ମୁକ୍ତି ସଂଗ୍ରାମରେ ଝାସ ଦେବା ପାଇଁ ଆହ୍ୱାନ ଦେବା ସହିତ ନିଜ ଭିତରେ ସ୍ୱଦେଶୀ ସ୍ୱାଭିମାନ ଜାଗ୍ରତ କରିବା ପାଇଁ ପ୍ରେରଣା ଯୋଗାଉଥିଲା ।

ସ୍ୱାଧୀନତା ପୂର୍ବରୁ ଭାରତର ଏମିତି କୌଣସି ପ୍ରମୁଖ ସହର ବା ଅଞ୍ଚଳ ନଥିଲା, ଯେଉଁଠୁ କୌଣସି ଖବରକାଗଜ ଏବଂ ପତ୍ରପତ୍ରିକା ପ୍ରକାଶ ପାଉନଥିଲା । ଯେଉଁ ଦେଶପ୍ରେମୀ ସମ୍ପାଦକ ଏବଂ ସାମ୍ବାଦିକମାନେ ସେମାନଙ୍କର କାଗଜ ଏବଂ ପତ୍ରିକା ମାଧ୍ୟମରେ ଲୋକମାନଙ୍କ ମଧ୍ୟରେ ଦେଶପ୍ରେମର ଜାଗରଣ ଆଣିପାରିଥିଲେ, ସେମାନଙ୍କ ମଧ୍ୟରୁ ଅନେକ ସ୍ୱାଧୀନତା ପରେ ଦେଶର ରାଜନୀତି ଏବଂ ସମାଜସେବାରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ଗ୍ରା/ପୋ– ସର୍ଦ୍ଧୋଳା
ଭା – କନକପୁର
ଜି– ଜଗତସିଂହପୁର
ପିନ୍ –୭୫୪୧୩୬

# ବାଲେଶ୍ୱର କଚେରୀ ହତାରେ ଲବଣ ସତ୍ୟାଗ୍ରହ

ଅଭୟ ବେହେରା

ଗାନ୍ଧିଜୀଙ୍କ ଆଇନ ଅମାନ୍ୟ ଆନ୍ଦୋଳନ ଓ ଲବଣ ସତ୍ୟାଗ୍ରହ ଘୋଷଣା ସାରା ଭାରତରେ ଆଲୋଡନ ସୃଷ୍ଟିକଲା । ଏହାର ପ୍ରଭାବରେ ପରବର୍ତ୍ତୀ କାର୍ଯ୍ୟକ୍ରମ ନିମନ୍ତେ ଓଡ଼ିଶାରେ ପ୍ରସ୍ତୁତି ଆରମ୍ଭ ହେଲା । ହରେକୃଷ୍ଣ ମହତାବଙ୍କ ସଭାପତିତ୍ୱରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ବୈଠକ ଗୋପବନ୍ଧୁ ଚୌଧୁରୀଙ୍କ କଟକ ବାସଭବନରେ ଅନୁଷ୍ଠିତ ହେଲା । ଓଡ଼ିଶାରେ ଲବଣ ସତ୍ୟାଗ୍ରହର ସଫଳତା ଘେନି ଅନେକ ସଦସ୍ୟ ସନ୍ଦେହ ପ୍ରକାଶ କଲେ । ମାତ୍ର ମହତାବଙ୍କ ପରାମର୍ଶକ୍ରମେ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ପ୍ରଥମେ ବାଲେଶ୍ୱରର ଇଞ୍ଚୁଡିଠାରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେବାର ସ୍ଥିର ହେଲା । ୧୯୩୦ ମସିହା ଏପ୍ରିଲ ୬ତାରିଖ ଦାଣ୍ଡିଠାରେ ସତ୍ୟାଗ୍ରହ ଆରମ୍ଭ ଦିନ ସତ୍ୟାଗ୍ରହୀମାନେ କଟକରୁ ଇଞ୍ଚୁଡି ଯାତ୍ରା କଲେ । ଗୋପବନ୍ଧୁ ଚୌଧୁରୀ ଓ ଅଟଳ ବିହାରୀ ଆଚାର୍ଯ୍ୟ କଟକଠାରେ ଗିରଫ ହେବାରୁ ଆଚାର୍ଯ୍ୟ ହରିହର ସତ୍ୟାଗ୍ରହର ନେତୃତ୍ୱ ନେଲେ ।

ଉତ୍ସାହ ଓ ଉଦ୍ଦୀପନା ସହିତ ଲୁଣମାରି ସତ୍ୟାଗ୍ରହୀମାନେ ଗିରଫ ହେଉଥାନ୍ତି । ପୋଲିସର ଲାଠିମାଡକୁ ମଧ୍ୟ ଭୟ ନଥାଏ । ବାଲେଶ୍ୱରଠାରେ ସତ୍ୟାଗ୍ରହ ଶିବିର ସ୍ଥାପନ କରାଯାଇ ସଙ୍ଗଠନ କାର୍ଯ୍ୟ ଚାଲିଥାଏ । ଲବଣ ସତ୍ୟାଗ୍ରହ ଲୋକମାନଙ୍କୁ ଏପରି ପ୍ରଭାବିତ କରିଥିଲା ଯେ ବାଲେଶ୍ୱରର କଚେରି ହତା ମଧ୍ୟରେ ଇଞ୍ଚୁଡିର ଲୁଣ ବିକ୍ରି କରିବାକୁ ଲୋକେ ଆଗେଇ ଆସିଲେ । ସରକାର ଏ ଘଟଣା ଦ୍ୱାରା ସ୍ତବ୍ଧ ହୋଇଗଲେ ।

ଏପ୍ରିଲ ମାସ ୧୫ ତାରିଖ ଦିନ କଚେରି କାମ ଆରମ୍ଭ ହୋଇସାରିଥାଏ । ଜଣେ ସତ୍ୟାଗ୍ରହୀ ସ୍ୱେଚ୍ଛାସେବକ କାଶୀନାଥ ବାରିକ ମୋତିଗଞ୍ଜ ବଜାର ଆଡୁ କଚେରୀ ହତାକୁ ଗଲେ । କଚେରି ହତା ମଧ୍ୟରେ ଥିବା ବରଗଛମୂଳେ ସତ୍ୟାଗ୍ରହୀମାନଙ୍କ ଦ୍ୱାରା ଇଞ୍ଚୁଡିଠାରେ ମରାଯାଇଥିବା ଲୁଣ ବିକ୍ରିକଲେ । ଲୋକମାନଙ୍କୁ ଆହ୍ୱାନ ଦେଇ କହିଲେ, ''ଭାଇମାନେ ! ଇଞ୍ଚୁଡିର ସ୍ୱଦେଶୀ କିଣନ୍ତୁ'' ।

ଲୁଣ କିଣିବାକୁ ଲୋକେ ଜମା ହୋଇଗଲେ । ବହୁତ ଲୋକ ଲୁଣ କିଣିଲେ । ପଇସା ଦେଇ ମୁଠାଏ ଲୁଣ କିଣିବା ଲୋକଙ୍କ ଉଦ୍ଦେଶ୍ୟ ନଥିଲା ବରଂ ଇଞ୍ଚୁଡି ଲୁଣ କିଣି ଲବଣ ଆଇନ ଅମାନ୍ୟ କରିବା ଥିଲା ଏହାର ମୁଖ୍ୟ ଉଦ୍ଦେଶ୍ୟ । ଲୁଣ ବିକ୍ରି ଘଟଣା କଚେରୀ ହତାରେ ହଇଚଇ ସୃଷ୍ଟି କରିଦେଲା । ଲୋକେ ନିଲାମ ବଢ଼ି ଲୁଣ କିଣିବାକୁ ଆଗ୍ରହ ପ୍ରକାଶ କରୁଥାନ୍ତି । ଯେଉଁ ପଦ୍ମପତ୍ରଗୁଡିକ ଉପରେ ଲୁଣ ରଖାଯାଇ ବିକ୍ରି ହେଉଥିଲା, ସେଗୁଡିକ ମଧ୍ୟ ବିକ୍ରି ହୋଇଗଲା । କେତେଜଣ ସରକାର ଅନୁଗତ ବ୍ୟକ୍ତି କଚେରି ଥାନା ଦାୟିତ୍ୱରେ ଥିବା ପୋଲିସ ସବଇନ୍ସପେକ୍ଟର ନୀଳମଣି ମହାନ୍ତିଙ୍କୁ ଲୁଣବିକ୍ରି ଖବର ଜଣାଇଦେଲେ । ତତ୍‌କ୍ଷଣାତ୍ ସବ୍‌ଇନ୍ସପେକ୍ଟର ବିକ୍ରି ହୋଇନଥିବା ଲୁଣ ଜବତ କରିବାକୁ ଚେଷ୍ଟା କରି କାଶୀନାଥଙ୍କୁ ମାଡ ଦେଲେ । ଲୁଣ ଫେରାଇ ଦେବାକୁ କିଣିଥିବା ଲୋକମାନଙ୍କୁ ଧମକ ଦେଲେ । କାଶୀନାଥ ଏତାଦୃଶ କାର୍ଯ୍ୟର ଦୃଢ ବିରୋଧ କଲେ । ଲୁଣ ଜବତ କରିବାକୁ ସବଇନ୍ସପେକ୍ଟର ଅକ୍ଷମ ହେବାରୁ ଉପସ୍ଥିତ ଥିବା ସିପାହୀ ମୁରଲୀଧର ରାୟଙ୍କ ସମେତ ତିନିଜଣ ସିପାହୀଙ୍କ ସାହାଯ୍ୟ ଲୋଡିଲେ । ଲୁଣ ଜବତ କରିବାକୁ ପୋଲିସ କାଶୀନାଥଙ୍କ ଉପରେ ବଳ ପ୍ରୟୋଗ କଲେ । କାଶୀନାଥ ମଧ୍ୟ 'ମରିବି ପଛେ ଲୁଣ ଛାଡିବି ନାହିଁ' ପଣ କରିଥାନ୍ତି । ଲୁଣ ଜବତ କରିବା ପୋଲିସର ସଫଳତା ଏବଂ ଜବତ ନକରାଇବା ସତ୍ୟାଗ୍ରହୀମାନଙ୍କ ପଣ ଥିଲା ।

ଏକାକୀ ପୋଲିସକୁ ପ୍ରତିବାଦ କରିବା ଅସମ୍ଭବ ଜାଣି ନିରୁପାୟ କାଶୀନାଥ ଉପସ୍ଥିତ ଲୋକମାନଙ୍କ ସାହାଯ୍ୟ ଲୋଡି ଡାକଦେଲେ, '' ଭାଇମାନେ ! ଦେହରେ ଶେଷ ରକ୍ତବିନ୍ଦୁ ଥିବାଯାଏ ସେମାନଙ୍କୁ ପୋଲିସ୍‌କୁ ଲୁଣ ଜବତ କରିବାକୁ ଦିଅନାହିଁ ।'' ଏହା ବାଲେଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟଙ୍କ ୧୨.୩.୩୧ର ଗୋପନୀୟ ଚିଠି ସଂଖ୍ୟା ୧୯୩ରୁ ଜଣାଯାଏ ।

ସେତେବେଳକୁ କଚେରି କାମ ଆରମ୍ଭ ହୋଇଯାଇଥିବାରୁ କଚେରି ହତା ଲୋକାରଣ୍ୟ ହୋଇଗଲା । କାଶୀନାଥଙ୍କ ଉପରେ ପୋଲିସର ଅତ୍ୟାଚାର ଦେଖି ତାଙ୍କୁ ଉଦ୍ଧାର କରିବାକୁ କଚେରିରେ କାମ କରୁଥିବା ମୋହରିରମାନେ ଧାଇଁ ଆସିଲେ । ସୋମନାଥ ପଣ୍ଡା, ଚକ୍ରଧର ମହାପାତ୍ର, ଗୌର ମୋହନ ମହାନ୍ତି, ଲାଲମୋହନ ମହାନ୍ତି, ଜଗନ୍ନାଥ ମହାପାତ୍ର ଓ ରାଧାନାଥ ଦାସ ପ୍ରଭୃତି ମୋହରିରଙ୍କ ସହ ଅନେକ ସାଧାରଣ ଲୋକ ଯୋଗଦେଲେ । ଲୋକମାନେ ପୋଲିସକୁ ଲୁଣ ଜବତ କରିବାର ସୁଯୋଗ ଦେଲେନାହିଁ । ଲୋକଙ୍କର ଏକତା ଓ ଉତ୍ସାହ ଦେଖି କାଶୀନାଥଙ୍କୁ ଛାଡିଦେବାକୁ ପୋଲିସ ବାଧ୍ୟ ହେଲା । ମାତ୍ର ମୋକଦ୍ଦମା କରିବା ନିମନ୍ତେ ପ୍ରମାଣ ସ୍ୱରୂପ କାଶୀନାଥଙ୍କର ସ୍ୱେଟର, ଚାରିଅଣା ପଇସା ଏବଂ ଗୋଟିଏ ତୋଳା ମାତ୍ର ଲୁଣ ଜବତ ହେଲା ।

ଏହି ଘଟଣା ଯୋଗୁଁ ପୋଲିସ କାଶୀନାଥଙ୍କ ନାମରେ ମୋକଦ୍ଦମା (୧୯୩୦ର ବାଲେଶ୍ୱର କେସ୍ ସଂଖ୍ୟା ୨୦୮ଜି) ଚଳାଇଲେ । ଅନ୍ୟ ଜଣେ ପୋଲିସ୍ ସବ୍‌ଇନ୍ସପେକ୍ଟର ନିଜାମୁଦ୍ଦିନ୍ କାଶୀନାଥଙ୍କ ବିରୋଧରେ ସାକ୍ଷ୍ୟ ଦେବାକୁ ମୋହରିର 'ଗୌରମୋହନ, ଲାଲମୋହନ ଓ ଜଗନ୍ନାଥଙ୍କୁ ପ୍ରବର୍ତ୍ତାଇଲେ । ମୋହରିରମାନେ ନିଜାମୁଦ୍ଦିନ୍‌ଙ୍କ ପ୍ରସ୍ତାବରେ ସହମତ ନହେବାରୁ ସେମାନଙ୍କ ନାମରେ ମିଥ୍ୟା ମୋକଦ୍ଦମା ଚାଲିଲା । ସେହିପରି ଜମାଦାର ଯୋଗେନ୍ଦ୍ର ସିଂ ପୂର୍ବଶତ୍ରୁତା ଶୁଝେଇବାକୁ ସୋମନାଥ ପଣ୍ଡାଙ୍କୁ ମିଥ୍ୟା ମୋକଦ୍ଦମାର ପକ୍ଷଭୁକ୍ତ କରାଇଲେ । ସର୍ବମୋଟ କାଶୀନାଥ ଓ ଉପରୋକ୍ତ ମୋହରିରମାନଙ୍କ ନାମରେ ମୋକଦ୍ଦମା ଚାଲିଲା । ଘଟଣାର ସାକ୍ଷୀ ଭାବେ ଦେବେନ୍ଦ୍ର ନାଥ ଗିରି (ଓକିଲ) ତଥା ଜୟଦେବ ଦାସ, ଶ୍ୟାମ ସୁନ୍ଦର ବିଶ୍ୱାସ, ଅହମ୍ମଦ ଖାଁ ବିଚାରାଳୟରେ ମିଥ୍ୟା ସାକ୍ଷ୍ୟ ଦେଲେ । ଏପରିକି ଅହମ୍ମଦ ଖାଁ ବୟାନ ଦେଇ କହିଲେ ଯେ ଉପରୋକ୍ତ ଅଭିଯୁକ୍ତମାନେ ବାଲେଶ୍ୱରର ସାମ୍ପ୍ରଦାୟିକ ଦଙ୍ଗାବେଳେ ସକ୍ରିୟ ଭୂମିକା ଗ୍ରହଣ କରି ହିନ୍ଦୁ-ମୁସଲମାନ ମଧ୍ୟରେ ତିକ୍ତତା ସୃଷ୍ଟି କରିଥିଲେ । ମାତ୍ର ମାଜିଷ୍ଟ୍ରେଟ ପି.ସି. ପାତ୍ର ଏ ପ୍ରକାର ବୟାନ ସମ୍ବନ୍ଧରେ କଟୁ ମନ୍ତବ୍ୟ ପ୍ରକାଶ କରି ତାଙ୍କର ସାକ୍ଷ୍ୟ ଅଗ୍ରାହ୍ୟ କରିଦେଇଥିଲେ । କାଶୀନାଥ ଦମ୍ଭର ସହିତ କହିଥିଲେ ଯେ ସେ ଏକାକୀ ଲୁଣ ବିକ୍ରୟ କରୁଥିଲେ ଏବଂ ବଳପ୍ରୟୋଗ କରି ପୋଲିସ ଲୁଣ ଛଡାଇ ନେଇଥିଲେ। ପୋଲିସ ଓ ସାକ୍ଷୀମାନେ ବୟାନ ଦେଇଥିଲେ ଯେ ସୋମନାଥ ପଣ୍ଡା ଓ ଚକ୍ରଧର ମହାପାତ୍ର ସିପାହୀ ମୁରଲୀଧରଙ୍କ ହାତରେ ମାଡ ଦେଇଥିଲେ ଏବଂ ଗୌରମୋହନ ଓ ରାଧାନାଥ ସବ୍‌ଇନ୍ସପେକ୍ଟରଙ୍କୁ ଧକ୍କା ମାରି ତଳେ ପକାଇ ଦେଇଥିଲେ । ସମସ୍ତେ ମିଶି ଅବଶିଷ୍ଟ ଲୁଣ ଛଡାଇ ନେଲେ । ଡେପୁଟି ମାଜିଷ୍ଟ୍ରେଟ ଏସ.ସି. ମିତ୍ରଙ୍କ ଉପସ୍ଥିତିରେ ଅଭିଯୁକ୍ତମାନଙ୍କୁ ଚିହ୍ନଟ କରାଗଲା ।

ତା ୧୧.୯.୧୯୩୦ରେ ମାଜିଷ୍ଟ୍ରେଟ ପ୍ରତ୍ୟେକ ଅଭିଯୁକ୍ତ ମୋହରିରଙ୍କୁ ଏକମାସ ସଶ୍ରମ କାରାଦଣ୍ଡ, ପଚାଶ ଟଙ୍କା ଜୋରିମାନା ଓ ଜୋରିମାନା ଅନାଦେୟ ନିମନ୍ତେ ଆଉ ଦୁଇ ସପ୍ତାହ ସଶ୍ରମ କାରାଦଣ୍ଡ ଆଦେଶ କଲେ । କାଶୀନାଥଙ୍କ ପାଇଁ ଦୁଇମାସ ସଶ୍ରମ କାରାଦଣ୍ଡ ସେହି ତାରିଖରୁ ଲାଗୁ ହେବାର ଆଦେଶ ହେଲା । ସେତେବେଳକୁ କାଶୀନାଥ ଅନ୍ୟ ଏକ ରାଜନୈତିକ ମୋକଦ୍ଦମା ଫଳସ୍ୱରୂପ ପାଟଣା କ୍ୟାମ୍ପ ଜେଲରେ କାରାଦଣ୍ଡ ଭୋଗୁଥିଲେ ଯାହା ତା.୧୮.୨.୧୯୩୧ରିଖରେ ଶେଷ ହେବାର ଥିଲା । ତେଣୁ ବର୍ତ୍ତମାନର ଦଣ୍ଡ ତା.୧୮.୨.୧୯୩୧ରିଖରୁ ଲାଗୁ ହେବାର ଆଦେଶ ହେଲା ।

ମୋହରିରମାନେ ଅତିରିକ୍ତ ସେସନ୍‌ସ ଜଜ୍ ଏସ୍. କେ. ଦାସଙ୍କ ଅଦାଲତରେ ଅପିଲ କରି ହାରିଗଲେ ଏବଂ ତା.୩୦.୩.୩୧ରିଖରେ ଉଚ୍ଚ ନ୍ୟାୟାଳୟରେ ସେମାନଙ୍କ ମକଦ୍ଦମା ବିଚାରପତିଙ୍କ ଦ୍ୱାରା ବିଚାର ହେଲା । ବିଚାରକ ସେମାନଙ୍କୁ ଦଣ୍ଡିତ କରିଥିଲେ ମଧ୍ୟ ଦଣ୍ଡ ପରିମାଣ କୋହଳ କରିଦେଲେ । ପୋଲିସ୍‌କୁ ଗୁରୁତର ଭାବେ ଆଘାତ କରିନଥିବା ହେତୁ ସେମାନଙ୍କ କାରାଦଣ୍ଡ ଆଦେଶ ରଦ୍ଦ ହେଲା । ପ୍ରତ୍ୟେକ ଅଭିଯୁକ୍ତଙ୍କ ଉପରେ ଆଉ କୋଡିଏ ଟଙ୍କା ଜୋରିମାନା ବଢେଇ ଦିଆଗଲା ଏବଂ ଜୋରିମାନା ପଇଠ ନକଲେ କାରାଦଣ୍ଡ କାଏମ ରହିଲା ।

ଏହି ଆଦେଶ ବଳରେ ମାଜିଷ୍ଟ୍ରେଟ ପାତ୍ର ତା.୧୪.୪.୩୧ରିଖ ସୁଦ୍ଧା ଆତ୍ମସମର୍ପଣ ନିମନ୍ତେ ମୋହରିରମାନଙ୍କୁ ନିର୍ଦ୍ଦେଶ ଦେଲେ । ଇତ୍ୟବସରରେ ଗାନ୍ଧୀ-ଇରଉଇନ୍ ଚୁକ୍ତି ସ୍ୱାକ୍ଷରିତ ହୋଇସାରିଥାଏ । ଲବଣ ସତ୍ୟାଗ୍ରହୀମାନଙ୍କୁ ଦଣ୍ଡିତ କରାନଯିବାକୁ ଏହି ଚୁକ୍ତିର ଗୋଟିଏ ସର୍ତ୍ତଥିଲା । ତେଣୁ ମୋହରିରମାନେ ଜୋରିମାନା ଛାଡ଼ ନିମନ୍ତେ ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ଆବେଦନ କଲେ। ମାଜିଷ୍ଟ୍ରେଟ ସେମାନଙ୍କ ଆବେଦନପତ୍ର ସରକାରଙ୍କ ବିଚାର ନିମନ୍ତେ ସୁପାରିଶ କଲେ ଏବଂ ବିଚାର ଶେଷ ହେବା ପର୍ଯ୍ୟନ୍ତ ଜୋରିମାନା ଆଦାୟ ସ୍ଥଗିତ ରଖିଲେ (ଡି.ଓ.ନଂ ୨୫୮ ତା ୧୧.୪.୩୧) ।

ଏହି ସମୟକୁ ହରେକୃଷ୍ଣ ମହତାବ ବିହାର-ଓଡ଼ିଶାର ମୁଖ୍ୟ ଶାସନ ସଚିବ ଏମ.ଜି. ହ୍ୟାଲେଟଙ୍କୁ ତା ୨୩.୩.୩୧ରିଖରେ

ପାଟଣାଠାରେ ସାକ୍ଷାତ କରି ରାଜନୈତିକ ମୋକଦ୍ଦମାଗୁଡିକର ଯଥାଶୀଘ୍ର ସମାଧାନ ନିମନ୍ତେ ଅନୁରୋଧ କରିଥିଲେ । ରାଜନୈତିକ ମୋକଦ୍ଦମାଗୁଡ଼ିକ ମଧ୍ୟରେ ଶ୍ରୀଜଙ୍ଗ ଗୁଳିକାଣ୍ଡ, ସତୀଶ-କାଳୀପଦ ମୋକଦ୍ଦମା ଓ ବାଲେଶ୍ୱର କଚେରିର ଉପରୋକ୍ତ ଘଟଣା ଅନ୍ତର୍ଭୁକ୍ତ ଥିଲା । ଗାନ୍ଧୀ-ଇରଉଇନ୍ ଚୁକ୍ତିର ସର୍ତ୍ତ ଅନୁଯାୟୀ ହ୍ୟାଲେଟ୍ଟ ତାଙ୍କ ଚିଠି ସଂଖ୍ୟା ୨୧୬୬ (ତା ୧୪.୪.୩୧) ଦ୍ୱାରା ମୋହରିରମାନଙ୍କର ଜୋରିମାନା ଛାଡ କରିଦେବାକୁ ବାଲେଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ନିର୍ଦ୍ଦେଶ ଦେଲେ। ତଦନୁଯାୟୀ ମୋହରିରମାନଙ୍କ ଜୋରିମାନା ଛାଡ କରିଦିଆଗଲା । ଗାନ୍ଧୀ-ଇରଉଇନ୍ ଚୁକ୍ତିର ସର୍ତ୍ତ କାର୍ଯ୍ୟକାରୀ ହେବା ବେଳକୁ କାଶୀନାଥ ବାରିକଙ୍କ କାରାଦଣ୍ଡର ମିଆଦ ପୂରଣ ହୋଇସାରିଥିଲା ଏବଂ ସେ ମୁକ୍ତ ହୋଇସାରିଥିଲେ ।

ମୁଖ୍ୟ ଅଧ୍ୟାପକ,
ଇତିହାସ ବିଭାଗ,
ସାମନ୍ତ ଚନ୍ଦ୍ରଶେଖର ସ୍ୱୟଂଶାସିତମହାବିଦ୍ୟାଳୟ, ପୁରୀ

# ପୁଣ୍ୟମୟୀ ମୋ ଜନନୀ ଭାରତ

ବ୍ରଜ ପାଇକରାୟ

ସାଗର ଧୁଅଇ ଚରଣ ତୋହର
ହିମାଳୟ ଗିରି ମୁକୁଟ ସମ
ପୁଣ୍ୟମୟୀ ମୋ ଜନନୀ ଭାରତ
ତୋ ପଦରେ ଶତ ଜୁହାର ମମ ।

ଗଙ୍ଗା, ଯମୁନା, ପୂତ ଗୋଦାବରୀ
ମହାନଦୀ ଆଉ କୃଷ୍ଣା, କାବେରୀ
ଶୋହେ ତୋ ବୁକୁରେ ମୁକୁତା ସମ
ପୁଣ୍ୟମୟୀ ମୋ ଜନନୀ ଭାରତ
ତୋ ପଦରେ ଶତ ଜୁହାର ମମ ।

ନାନକ, କବୀର, ଗାନ୍ଧୀ, ଶଙ୍କର
ସୁଭାଷ, ପଟେଲ, ରଘୁ-ଦିବାକର
ଜନମି ତୋ କୋଳେ ରଖିଗଲେ ନାମ
ପୁଣ୍ୟମୟୀ ମୋ ଜନନୀ ଭାରତ
ତୋ ପଦରେ ଶତ ଜୁହାର ମମ ।

କାଶୀ ବାରଣାସୀ ଜଗନ୍ନାଥ ପୁରୀ
କାଶ୍ମୀରଠାରୁ କନ୍ୟାକୁମାରୀ
ଶାନ୍ତି, ସଂହତି, ଏକତା କାମ୍ୟ
ପୁଣ୍ୟମୟୀ ମୋ ଜନନୀ ଭାରତ
ତୋ ପଦରେ ଶତ ଜୁହାର ମମ ।

ଆଡ୍‌ଭୋକେଟ୍ ଓ ନୋଟାରୀ ପବ୍ଲିକ
ଭୁବନେଶ୍ୱର କୋର୍ଟ
ଭୁବନେଶ୍ୱର-୧୪

# ଦାଣ୍ଡିମାଳରେ ଇଂରେଜ ବିରୋଧୀ ବିଦ୍ରୋହ

ଅଧ୍ୟାପକ ପବିତ୍ର ମୋହନ ବାରିକ

ଇଂରେଜମାନଙ୍କ ଦ୍ୱାରା ଖୋର୍ଦ୍ଧା ଅଧିକୃତ ହେବା ପୂର୍ବରୁ ଶାସନଗତ ସୁବିଧା ପାଇଁ ଏହାକୁ ବାରଟି ପ୍ରଗଣାରେ ବିଭକ୍ତ କରାଯାଇଥିଲା । ଏହି ପ୍ରଗଣାଗୁଡିକୁ ଜିଲ୍ଲା କୁହାଯାଉଥିଲା । ସୁନାମଧନ୍ୟ ଐତିହାସିକ ଦିଗମ୍ବର ଶ୍ରୀଚନ୍ଦନଙ୍କ ୧୯୨୭ ମସିହାରେ ପ୍ରକାଶିତ ''ଖୁରୁଧା ଦର୍ପଣ'' ଓ ଲବ୍ଧ ପ୍ରତିଷ୍ଠିତ ଗବେଷକ କେଦାର ନାଥ ମହାପାତ୍ରଙ୍କ 'ଖୋରଧା ଇତିହାସ'ରେ ଏ ସମ୍ପର୍କରେ ଅନେକ ତଥ୍ୟ ଉଲ୍ଲେଖ ଅଛି । ଏହି ଜିଲ୍ଲାମାନଙ୍କର ନାମ ନିଜି ଖୋର୍ଦ୍ଧା, ଦାଣ୍ଡିମାଳ, କୁଶପଲ୍ଲା, ମାଣିକ ଗୋଡା, ପାଞ୍ଚଗଡ, ରାମେଶ୍ୱର, କୁହୁଡି, ବଳଭଦ୍ରପୁର, ମୋଗଲବନ୍ଦୀ, ତାପଙ୍ଗ, ହଳଦିଆ ଓ ବାଣପୁର । ଦିଗମ୍ବର ଶ୍ରୀଚନ୍ଦନଙ୍କ ରଚିତ 'ଖୁରୁଧା ଦର୍ପଣ'ରେ ଉଲ୍ଲେଖ ଅଛି–

''ଏପରି ଏ ବାର ଜିଲ୍ଲା ଆଦ୍ୟ ଦାଣ୍ଡିମାଳ ହେଲା
ତାପଙ୍ଗ, ନିଜି ଖୁରୁଧା, ହଳଦିଆ ଯେ
କୁଶପଲ୍ଲା, ପାଞ୍ଚଗଡ଼ ମାଣିକ ଗୋଡା ଦିବାଡ
ତହୁଁ ରାମେଶ୍ୱର ଜିଲ୍ଲା ଡିଆଁ ସହଜେ
ପୁଣ କୁହୁଡ଼ି, ବାଣପୁର
ତହୁଁମାଳ ଯୋଗ ଅଛି କର ବିଚାର ।।''

ବାର ଜିଲ୍ଲା ମଧ୍ୟରେ ଦାଣ୍ଡିମାଳ ଅନ୍ୟତମ । ଏହାର ଅବସ୍ଥିତି ତତ୍‌କାଳୀନ ଖୋର୍ଦ୍ଧାର ରାଜନୈତିକ ଓ ସାମାରିକ ବ୍ୟବସ୍ଥା କ୍ଷେତ୍ରରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲା । ଦାଣ୍ଡିମାଳକୁ ପରଗଙ୍ଗ ଦଣ୍ଡପାଟ ବୋଲି ମଧ୍ୟ କୁହାଯାଏ । ଭୌମ ରାଜବଂଶ ସପ୍ତମ ଶତାବ୍ଦୀରୁ ଯାଜପୁରକୁ ରାଜଧାନୀ କରି ଶାସନ କରୁଥିଲେ । ଭୁବନେଶ୍ୱର ଓ କଙ୍ଗୋଦ ଅଞ୍ଚଳ ସେମାନଙ୍କର ପ୍ରତ୍ୟକ୍ଷ ଶାସନାଧୀନ ଥିଲା । ଘଞ୍ଚ ଅରଣ୍ୟ ଓ ପର୍ବତ ବହୁଳ ସ୍ଥାନକୁ ମାଳ ବୋଲି କୁହାଯାଏ । ଭୌମ ବଂଶୀୟ ନାରୀ ଶାସିକା ଦଣ୍ଡୀ ମହାଦେବୀଙ୍କ ଦ୍ୱାରା ଏହି ଅଞ୍ଚଳ ଶାସିତ ହୋଇଥିବାରୁ ଏହାକୁ ଦଣ୍ଡିମାଳ ବା ଅପଭ୍ରଂଶ ହୋଇ ଦାଣ୍ଡିମାଳ ହୋଇଅଛି । ଗବେଷକ ନୃସିଂହ ପ୍ରସାଦ ଜଗଦେବ ତାଙ୍କ ପ୍ରବନ୍ଧରେ ଏ ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ଦାଣ୍ଡିମାଳ ପ୍ରଗଣାର ସୀମାରେଖା ଦକ୍ଷିଣରୁ ଗଙ୍ଗପଡା–ଭାତଖୁରୀ ମୌଜାରୁ ଉତ୍ତରରେ ଦାରୁଠେଙ୍ଗ ପର୍ଯ୍ୟନ୍ତ । ପଶ୍ଚିମରେ ମୁକ୍ତାପୁରଠାରୁ ପୂର୍ବରେ ଶିଶୁପାଳ ଗଡ ପର୍ଯ୍ୟନ୍ତ । ବିଶ୍ୱବିଖ୍ୟାତ ଐତିହାସିକ କଳିଙ୍ଗ ଯୁଦ୍ଧ ଦାଣ୍ଡିମାଳ ପ୍ରଗଣାରେ ସଙ୍ଗଠିତ ହୋଇଥିଲା । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରୁ ପାଇକ ବିଦ୍ରୋହ ଓ ସ୍ୱାଧୀନତା ସଂଗ୍ରାମ ପର୍ଯ୍ୟନ୍ତ ଦାଣ୍ଡିମାଳର ନିସ୍ୱାର୍ଥପର ସଂଗ୍ରାମୀମାନଙ୍କର ବଳିଦାନ ଅତୁଳନୀୟ । ଦାଣ୍ଡିମାଳ ବକ୍ଷ ଉପରେ ଐତିହାସିକ ସହର ରାଜଧାନୀ ଭୁବନେଶ୍ୱର ଦଣ୍ଡାୟମାନ । ଦାଣ୍ଡିମାଳରେ ଅବସ୍ଥିତ ଥିବା ଗଡଗୁଡିକ ଦୁଇଭାଗରେ ବିଭକ୍ତ ଯଥା– ଖଣ୍ଡାୟତବାଡ ୧୮ ଓ କୋଠବାଡ ୧୨ । ଦିଗମ୍ବର ଶ୍ରୀଚନ୍ଦନଙ୍କ ଦ୍ୱାରା ଲିଖିତ ଖୁରୁଧା ଦର୍ପଣର ୧୦ମ ପୃଷ୍ଠାରେ ୧୩ଟି ଶୌରୀ ଖଣ୍ଡାୟତ ଗଡ ଥିବାର ଉଲ୍ଲେଖ ଅଛି । ଦାଣ୍ଡିମାଳ ସର୍ଦ୍ଦାରଙ୍କ ଅଧୀନରେ ୧୩ଶୌରୀ ଖଣ୍ଡାୟତ ଗଡ ଓ ଚାରି ମହାନାୟକ ଗଡ ଯଥା – କାଇମାଟିଆ, ପାତ୍ରପଡା, ବିନ୍ଧ୍ୟଗିରି ଓ ଶିଶୁପାଳଗଡ ଏବଂ ଏହା ସହିତ ସର୍ଦ୍ଦାରଙ୍କର ପୁରୁଣାଗଡ ମଳିପଡା ଓ ବରଗଡ । ଦାଣ୍ଡିମାଳସ୍ଥିତ କେତେକ ପ୍ରମୁଖ ଗଡମାନଙ୍କର ନାମ ଯଥା – ଚୁଡଙ୍ଗ ଗଡ, ବୁଆଳିଗଡ, ଘାଟିକିଆଗଡ, ଗଡ କଣ୍ଟାବାଡ, ଗଡ ମେଣ୍ଢାଶାଳ, ଗଡ ହରିଡାମଡା, ଗଡଚନ୍ଦକା, ଗଡ ଅନ୍ଧାରୁଆ ଓ ଯାଁଳା ଇତ୍ୟାଦି । ଘାଟିକିଆ ଗଡର ଗଡାଧୀପତିଙ୍କର ସଞ୍ଜ୍ଞା ଥିଲା ଚମ୍ପତି, ଅନ୍ଧାରୁଆ ଦଳ ବେହେରା ଗଡବାଡ ଉପାଧିରେ ଭୂଷିତ, ଗଙ୍ଗପଡା ଗଡାଧୀପତି ବୈରୀଗଞ୍ଜନ, ହରିଡାମଡା ଦଳ ବେହେରା ମଙ୍ଗରାଜ ଓ ଦାରୁଠେଙ୍ଗ ଗଡର ଦଳପତି ବାହୁ ବଳେନ୍ଦ୍ର ସଞ୍ଜ୍ଞାରେ

ଖୋର୍ଦ୍ଧା ଗଜପତି ମହାରାଜାଙ୍କ ଦ୍ୱାରା ପ୍ରଦତ୍ତ ହୋଇଥିଲେ । ଦାଣ୍ଡିମାଳର ଉପରୋକ୍ତ ଗଡମାନଙ୍କର ସର୍ଦ୍ଦାର, ଦଳେଇ, ଦଳ ବେହେରା ଓ ପାଇକମାନେ ମୋଗଲ ଓ ମରହଟ୍ଟାମାନଙ୍କ ବିରୋଧରେ ଖୋର୍ଦ୍ଧା ମାଟିର ସ୍ୱାଧୀନତାର ସୁରକ୍ଷା ପାଇଁ ପ୍ରାଣମୂର୍ଚ୍ଛା ସଂଗ୍ରାମ କରିଥିଲେ । ୧୮୦୪ ଖ୍ରୀଷ୍ଟାବ୍ଦରେ ଜୟୀ ରାଜଗୁରୁ ଓ ୧୮୧୭ ଖ୍ରୀଷ୍ଟାବ୍ଦରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱକୁ ସ୍ୱୀକାର କରି ଦାଣ୍ଡିମାଳ ଅଞ୍ଚଳର ବୀର ପାଇକମାନେ ଖୋର୍ଦ୍ଧାର ସମ୍ମାନ ରକ୍ଷା କରିବା ପାଇଁ ଆଗେଇ ଆସିଥିଲେ । ପୂର୍ବତନ ମଳିପଡା ଗଡ ଯାହା ବର୍ତ୍ତମାନ ମଳିପଡା ଗ୍ରାମର ଦକ୍ଷିଣ ଦିଗରେ ଥିଲା, ଏହା ଥିଲା ଦାଣ୍ଡିମାଳ ସର୍ଦ୍ଦାରଙ୍କର ଗଡ । କୌଣସି କାରଣରୁ ଦାଣ୍ଡିମାଳ ସର୍ଦ୍ଦାର ସେ ସ୍ଥାନ ପରିତ୍ୟାଗ କରି ଯାଁଳା ଗ୍ରାମରେ ଅବସ୍ଥାନ କରିଥିଲେ । ବର୍ତ୍ତମାନ ମଧ୍ୟ ସର୍ଦ୍ଦାର ବର ନାମରେ ଏକ ବିଶାଳ ବଟବୃକ୍ଷ ସେ ସ୍ଥାନରେ ଅବସ୍ଥିତ । ସର୍ଦ୍ଦାର ଗୋହି ନାମରେ ଏକ ବିଶାଳ ବଟବୃକ୍ଷ ସେ ସ୍ଥାନରେ ଅବସ୍ଥିତ । ସର୍ଦ୍ଦାର ଗୋହି ନାମରେ ଗୋଟିଏ ବୃହତ ଗୋହି ସେ ସ୍ଥାନରେ ଅଛି । ଦାଣ୍ଡିମାଳ ସର୍ଦ୍ଦାର ଲୋକନାଥ ବଳିୟାର ସିଂହ ଜଣେ ମହାବୀର ଥିଲେ । ଗଜପତି ମହାରାଜାଙ୍କର ଜଣେ ବିଶ୍ୱସ୍ତ ସେନାଦକ୍ଷ । ୧୮୦୨ ଖ୍ରୀଷ୍ଟାବ୍ଦରେ ସଙ୍ଗଠିତ ବାଙ୍କି-ଡମପଡା ଯୁଦ୍ଧରେ ଲୋକନାଥ ବଳିୟାର ସିଂହ ଜଣେ ସିଂହ ସଦୃଶ୍ୟ ସଂଗ୍ରାମ କରି ବିଜୟ ଲାଭ କରିଥିଲେ । ଐତିହାସିକ ତଥ୍ୟ ସମ୍ବଳିତ ବିପ୍ର ମଧୁସୂଦନଙ୍କ ବିରଚିତ 'ଫିରିଙ୍ଗି କଳି ଭାରତ'ରେ ଉଲ୍ଲେଖ ଅଛି -

''ଦାଣ୍ଡିମାଳ ସରଦାର ଅଟେ ମହାବୀର<br>
ଲୋକନାଥ ବଳିଆର ସିଂହ ନାମ ତା'ର ।।''

୧୮୦୪ ଖ୍ରୀଷ୍ଟାବ୍ଦରେ ଜୟୀ ରାଜଗୁରୁଙ୍କ ନେତୃତ୍ୱରେ ଦାଣ୍ଡିମାଳର ପାଇକମାନେ ଇଂରେଜମାନଙ୍କୁ ନିର୍ମମ ଆଘାତ ଦେବାରେ ସମର୍ଥ ହୋଇଥିଲେ । କିନ୍ତୁ ଏହି ସମୟରେ ଦାଣ୍ଡିମାଳ ସର୍ଦ୍ଦାର ଲୋକନାଥ ବଳିୟାର ସିଂହ ଅର୍ଥ ଓ କ୍ଷମତାର ଲୋଭ ସମ୍ବରଣ କରିନପାରି ଇଂରେଜମାନଙ୍କର ବଶତା ସ୍ୱୀକାର କରିଥିଲେ । ବିଶ୍ୱାସଘାତକତାର ଫଳ ସ୍ୱରୂପ ଇଂରେଜ କର୍ତ୍ତୃପକ୍ଷ ତାଙ୍କୁ ୧୫ବାଟି ନିଷ୍କର ଜମି ଜାଗିରି ପ୍ରଦାନ କଲେ । ଗଡ ମେଣ୍ଢାଶାଳର ସାମନ୍ତରାୟ ବଂଶର ନେତୃତ୍ୱରେ ନିକଟବର୍ତ୍ତୀ ଅଞ୍ଚଳର ପାଇକମାନେ ଇଂରେଜମାନଙ୍କ ଶେଷ ସ୍ୱାଧୀନ ଦୁର୍ଗ ଖୋର୍ଦ୍ଧା ଆକ୍ରମଣ ସମୟରେ ଦୃଢ ପ୍ରତିରୋଧ କରିଥିଲେ । ଦାଣ୍ଡିମାଳ ଅନ୍ତର୍ଗତ ମହୁଲଗଡର ଛୋଟରାୟ ବଂଶ ଗଜପତିଙ୍କ ଗଜାରୋହି ବାହିନୀର ମୁଖ୍ୟ ଥିଲେ । କିନ୍ତୁ ଇଂରେଜମାନଙ୍କର ଖୋର୍ଦ୍ଧା ଆକ୍ରମଣ ସମୟରେ ଏମାନେ ମାତୃଭୂମିର ସୁରକ୍ଷା ପାଇଁ କୌଣସି ଉଲ୍ଲେଖନୀୟ ବୀରତ୍ୱ କିମ୍ବା ସାହସିକତା ପ୍ରଦର୍ଶନ ନକରି ଗଜପତିଙ୍କୁ ନିରାଶ କରିଥିଲେ । ଏମାନେ ତତ୍କାଳୀନ ସମୟର ଘଡିସନ୍ଧି ମୁହୂର୍ତ୍ତରେ ନୀରବଦ୍ରଷ୍ଟା ସାଜି ମାତୃଭୂମି ପ୍ରତି ଚରମ ବିଶ୍ୱାସଘାତକତା ପ୍ରଦର୍ଶନ କରିଥିଲେ । ମାଜଣାର ବୀର ପାଇକମାନେ ହରିଡାମତାର ବିଷୋୟୀ ବଂଶ, କୁରାଳର ପାଇକରାୟ ବଂଶ, କଙ୍କଡାହାଡର ଜଗଦେବ ବଂଶ ପ୍ରଜାମାନଙ୍କ ସହିତ ମିଶି ଇଂରେଜମାନଙ୍କୁ ଖୋର୍ଦ୍ଧା ଆକ୍ରମଣ ସମୟରେ ନିର୍ମମ ଆଘାତ ଦେଇଥିଲେ । ଗଙ୍ଗପଡା ଗ୍ରାମର ଦୁଇ ମୌଜା ମଧ୍ୟରୁ ଗଙ୍ଗପଡା ମୌଜାଟି ଖୋର୍ଦ୍ଧା ପ୍ରଗଣା ଅନ୍ତର୍ଗତ ଓ ଭାତଖୁରୀ ମୌଜାଟି ଦାଣ୍ଡିମାଳ ପ୍ରଗଣାରେ ଅନ୍ତର୍ଗତ । ଇଂରେଜ ବିରୋଧୀ ବିଦ୍ରୋହରେ ଗଙ୍ଗପଡା ଗଡର ଅତୁଳନୀୟ ଅବଦାନ ସମ୍ପର୍କରେ ଉଲ୍ଲେଖ କରିବା ବିଧେୟ ହେବ । ଗଙ୍ଗପଡା ଗଡର ଗଡାଧୀଶ ବୈରୀଗଞ୍ଜନ ଉପାଧିରେ ବିଭୂଷିତ ହୋଇଥିଲେ । ଜଣାଯାଏ ଗଙ୍ଗେଶ୍ୱର ଦେବ ଏହି ଗଡ ନିର୍ମାଣ କରିଥିଲେ ଏବଂ ସେ ଏଠାରେ ଗଙ୍ଗେଶ୍ୱର ଦେବଙ୍କୁ ପ୍ରତିଷ୍ଠା କରିଥିଲେ । ଇଂରେଜମାନଙ୍କ ଖୋର୍ଦ୍ଧା ଆକ୍ରମଣ ସମୟରେ ଏହିଗଡ ସେମାନଙ୍କୁ ଦୃଢ ପ୍ରତିରୋଧ କରିଥିଲା । ପାଞ୍ଚନମ୍ବର ଜାତୀୟ ରାଜପଥ କଡରେ ଓ ଖୋର୍ଦ୍ଧାର ଉତ୍ତର ଦିଗରେ ଅବସ୍ଥିତ ଗଙ୍ଗପଡା ଗଡ । ସାମରିକ ଦୃଷ୍ଟିକୋଣରୁ ଏହାର ଅବସ୍ଥାନ ଗୁରୁତ୍ୱପୂର୍ଣ୍ଣ । ବୀରମାଟି ଖୋର୍ଦ୍ଧାର ସ୍ୱାଭିମାନ ଓ ସମ୍ମାନ ରକ୍ଷା ପାଇଁ ଗଡର ଦଳବେହେରା ଓ ପାଇକମାନେ ୧୮୦୪ ଖ୍ରୀଷ୍ଟାବ୍ଦ ଇଂରେଜ ବିରୋଧୀ ଯୁଦ୍ଧରେ ନିଜର ବୀରତ୍ୱ ପ୍ରଦର୍ଶନ କରିଥିଲେ । ଗଡର ଗୁରୁତ୍ୱ ସମ୍ପର୍କରେ 'ଫିରଙ୍ଗି କଳିଭାରତ'ରେ ଉଲ୍ଲେଖ ଅଛି-

'' ଘାଟିର ଉତ୍ତର ଦ୍ୱାର ଅଟେ ଗଙ୍ଗପଡ଼ା<br>
ହସ୍ତେ ଖଣ୍ଡାଧରି ବିଜୟ ଚାମୁଣ୍ଡା ।''

ବିଦ୍ରୋହୀ ଚିନ୍ତୁ ସାମନ୍ତରାୟ ଇତିହାସ ପ୍ରସିଦ୍ଧ ଗଙ୍ଗପଡା ଗଡରେ ଜନ୍ମଗ୍ରହଣ କରିଥିଲେ । ପାଇକମାନଙ୍କୁ ଏକତ୍ରୀତ କରି ପାଇକ ବିଦ୍ରୋହ ସମୟରେ ଇଂରେଜ ସରକାରଙ୍କ ବିରୋଧରେ ସଂଗ୍ରାମ କରିଥିଲେ । ଖୁଦୁପୁର ପାଇକରାୟ ବଂଶରେ ବିଷ୍ଣୁ ପାଇକରାୟ ଓ ତାଙ୍କ ଦାଦାପୁଅ ଭାଇ କପିଳେଶ୍ୱର ଡିଆଁବାଘ ଜନ୍ମଗ୍ରହଣ କରିଥିଲେ । ଏହି ଭ୍ରାତୃଦ୍ୱୟ ଇଂରେଜମାନଙ୍କ

୧୮୦୪ ମସିହା ଖୋର୍ଦ୍ଧା ଆକ୍ରମଣ ଓ ୧୮୧୭ ମସିହା ପାଇକ ବିଦ୍ରୋହ ସମୟରେ ଅଂଶଗ୍ରହଣ କରି ଇଂରେଜ କର୍ତ୍ତୃପକ୍ଷଙ୍କ ମୁଣ୍ଡବ୍ୟଥାର କାରଣ ହୋଇଥିଲେ । ଖୁଦୁପୁର ଗଡର ଏହି ଭ୍ରାତୃ ଯୁଗଳ ଗଙ୍ଗପଡା ଗଡର ଦଳ ବେହେରା ଭାଗୁ ହରିଚନ୍ଦନ ଓ ମାଖନ ସିଂହଙ୍କର ଭଣଜା ଥିଲେ । ପାଇକ ବିଦ୍ରୋହ ସମୟରେ ୧୮୧୭ ମସିହା ଅପ୍ରେଲ ୨ତାରିଖରେ ଇଂପି ସାହେବ ଗଙ୍ଗପଡାଠାରେ ପହଞ୍ଚିଥିଲେ । ବିଦ୍ରୋହୀ ପାଇକମାନଙ୍କ ଦ୍ୱାରା ଲେଫନାଣ୍ଟ ପ୍ୟାରିସ୍ ଗଙ୍ଗପଡାଠାରେ ନିହତ ହେଲେ । ଏହାପରେ ଇଂପି ସାହେବ ଭୟଭୀତ ହୋଇ ପ୍ରାଣ ରକ୍ଷା ଉଦ୍ଦେଶ୍ୟରେ ପିପିଲି ପଳାୟନ କଲେ । ଲେଫନାଣ୍ଟ ପ୍ୟାରିସ୍‌ଙ୍କ ହତ୍ୟା ପାଇଁ କମ୍ପାନୀ ସରକାର ଗଙ୍ଗପଡ଼ା ଦଳବେହେରା ଭ୍ରାତୃଦ୍ୱୟ ଭାଗୁ ହରିଚନ୍ଦନ ଓ ମାଖନ ସିଂହଙ୍କୁ ଦାୟୀ କଲେ । ଏ ଦୁହେଁ ଗୋପାଳ ଛୋଟରାୟଙ୍କ ପୁତ୍ରରା ଥିଲେ । ଏହି ଭ୍ରାତୃଦ୍ୱୟ ନିଜ ଭିଣୋଇ ଘର ଖୁଦୁପୁର ଉଆସରେ ଆତ୍ମଗୋପନ କରି ବିଦ୍ରୋହକୁ ତ୍ୱରାନୀତ କରୁଥିଲେ । କୌଣସି ସୂତ୍ରରୁ ସୂଚନା ପାଇଁ ଇଂରେଜ କର୍ତ୍ତୃପକ୍ଷ ଖୁଦୁପୁର ଗଡ଼ ଅବରୋଧ କରିବା ପୂର୍ବରୁ ଗଙ୍ଗପଡା ଦଳବେହେରା ଭ୍ରାତୃ ଯୁଗଳ ଭାଗୁ-ମାଖନ ସ୍ଥାନ ପରିତ୍ୟାଗ କରି ଅନ୍ୟତ୍ର ପଳାୟନ କଲେ । କିନ୍ତୁ ଇଂରେଜମାନେ ସେଠାରେ ଗଙ୍ଗପଡା ଦଳବେହେରାଙ୍କର ଭଣଜା ବିଷ୍ଣୁ-କପିଳଙ୍କୁ ଗିରଫ କରି ଖୋର୍ଦ୍ଧା ପଠାଇ ଦେଲେ । ଏମାନଙ୍କଠାରୁ ଭାଗୁ-ମାଖନଙ୍କ ସମ୍ପର୍କରେ ସୂଚନା ପାଇବା ପାଇଁ ଯେତେ ଚେଷ୍ଟା କଲେ ମଧ ବିଫଳ ହେଲେ । ପରିଶେଷରେ ବିଷ୍ଣୁ ଓ କପିଳଙ୍କୁ ଦୋଷୀ ସାବ୍ୟସ୍ତ କରି ଇଂରେଜ କର୍ତ୍ତୃପକ୍ଷ ଫାଶୀ ଦଣ୍ଡରେ ଦଣ୍ଡିତ କଲେ । ଖୁଦୁପୁର ଗଡର ସ୍ୱାଭିମାନୀ ପାଇକବୀର ବିଷ୍ଣୁ ପାଇକରାୟ ଓ କପିଳେଶ୍ୱର ଡିଆଁବାଘ ମା' ମାଟିର ମର୍ଯ୍ୟାଦା ରକ୍ଷା ପାଇଁ ନିଜର ଜୀବନ ଉତ୍ସର୍ଗୀକୃତ କଲେ କିନ୍ତୁ ନିଜ ମାମୁଁ ଗଙ୍ଗପଡା ଗଡର ଦଳବେହେରା ଭାଗୁ ହରିଚନ୍ଦନ ଓ ମାଖନସିଂହଙ୍କ ପ୍ରତି କେବେ ବିଶ୍ୱାସ ଘାତକତା କରିନଥିଲେ ।

୧୮୦୪ ମସିହାରେ ଜୟୀ ରାଜଗୁରୁଙ୍କ ନେତୃତ୍ୱରେ ଇଂରେଜ ସରକାରଙ୍କୁ ବିରୋଧ କରି 'ଖୋର୍ଦ୍ଧା ରାଜ ବିଦ୍ରୋହ' ଆରମ୍ଭ ହୋଇଥିଲା । ଖୋର୍ଦ୍ଧା ସମେତ ଦାଣ୍ଡିମାଳର ବିଦ୍ରୋହୀ ପାଇକମାନେ ଇଂରେଜମାନଙ୍କ ସହିତ ଯୁଦ୍ଧକରି ସେମାନଙ୍କୁ ବ୍ୟତିବ୍ୟସ୍ତ କରି ପକାଇଥିଲେ । ବିଦ୍ରୋହୀ ପାଇକମାନଙ୍କ ସହିତ ସମଗ୍ର ଦାଣ୍ଡିମାଳକୁ ଧ୍ୱଂସ କରି ଦେବା ପାଇଁ ଭୁବନେଶ୍ୱର ବୋଇତାଳ ମନ୍ଦିରରେ ତୋପ ସଂରକ୍ଷିତ ଥିଲା ବୋଲି ଦିଗମ୍ବର ଶ୍ରୀଚନ୍ଦନ ସ୍ୱରଚିତ ପୁସ୍ତକ 'ଖୋର୍ଦ୍ଧାଦର୍ପଣ'ର ପ୍ରଥମ ଭାଗରେ ଉଲ୍ଲେଖ କରିଛନ୍ତି । କମିଶନର କର୍ଣ୍ଣେଲ୍ ହାରକର୍ଟ ୧୮୦୪ ମସିହାରେ ଖୋର୍ଦ୍ଧା ତଥା ଦାଣ୍ଡିମାଳର ସମସ୍ତ ପାଇକ ଦଳେଇ ଓ ଦଳବେହରାଙ୍କୁ ସରକାରଙ୍କୁ ସହଯୋଗ କରିବା ପାଇଁ ଅନୁରୋଧ କରିଥିଲେ । ଦାଣ୍ଡିମାଳର ପିଣ୍ଡିକ ବାହୁବଳେନ୍ଦ୍ର ସରକାରଙ୍କ ଆବେଦନକୁ ପ୍ରତ୍ୟାଖ୍ୟାନ କରି ସଂଗ୍ରାମ ଜାରି ରଖିଲେ ।

୧୮୦୪ ଖ୍ରୀଷ୍ଟାବ୍ଦରେ ''ଖୋର୍ଦ୍ଧା ରାଜ ବିଦ୍ରୋହ ଓ ୧୮୧୭ ଖ୍ରୀଷ୍ଟାବ୍ଦର ଖୋର୍ଦ୍ଧା ପାଇକ ବିଦ୍ରୋହ''ରେ ପିଣ୍ଡିକି ବାହୁ ବଳେନ୍ଦ୍ରଙ୍କର ଯୋଗଦାନ ଅତୁଳନୀୟ । ଦାଣ୍ଡିମାଳର ବିଭିନ୍ନ ଅଞ୍ଚଳ ଯଥା- ଗଡ ଛତାବର, ଗଡ କଣ୍ଟାବାଡ, ଗଡ ଚନ୍ଦକା, ଗଡ ଅନ୍ଧାରୁଆ, ଗଡ ମଳିପଡା, ପାଇକରାପୁର, ମଦନପୁର, ଶ୍ୟାମପୁର ଗଡ ଅଭିସଲ, ଗଡ ମେଣ୍ଢାଶାଳ, ଗଡ ବିଞ୍ଝଗିରି ଇତ୍ୟାଦି ସ୍ଥାନରେ ପିଣ୍ଡିକି ବାହୁବଳେନ୍ଦ୍ର ନିଜର ଇଂରେଜ ବିରୋଧୀ ସଂଗ୍ରାମ ଅବ୍ୟାହତ ରଖିଥିଲେ । ସେ ଗରିଲାଯୁଦ୍ଧରେ ନିପୁଣ ଥିଲେ । ସରକାରୀ ଖଜଣା ଲୁଟ୍ କରି ଗରିବ ବ୍ୟକ୍ତିମାନଙ୍କ ମଧ୍ୟରେ ବଣ୍ଟନ କରୁଥିଲେ । ଇଂରେଜ ଫୌଜମାନଙ୍କୁ ହତ୍ୟା କରି ସରକାରଙ୍କୁ ଭୟଭୀତ ଓ ଆତଙ୍କିତ କରିଥିଲେ । କୁକୁମହୁଲ ଗ୍ରାମ ମୁଖ୍ୟରାସ୍ତା କଡରେ ଏକ ପ୍ରକାଣ୍ଡ ବରଗଛ ଅଛି ଯାହା ଲୋକମୁଖରେ 'ଖଜଣାମାରୁ ବରଗଛ ନାମରେ ପରିଚିତ' । ଏହି ଗଛ ନିକଟରେ ରହି ପିଣ୍ଡିକି ବାହୁବଳେନ୍ଦ୍ର ଇଂରେଜମାନଙ୍କଠାରୁ ଖଜଣା ଲୁଟ୍ କରୁଥିଲେ । କଣ୍ଟାବାଡର ଏକ ବୁଢା ବରଗଛ ନିକଟରେ ଇଂରେଜ ସୈନ୍ୟମାନେ ବିଶ୍ରାମ ନେଉଥିଲେ, ଏହାକୁ ଏବେ ମଧ ପଲଟଣା ପଡିଆ ବୋଲି କୁହାଯାଏ । ବିଭିନ୍ନ ପ୍ରକାର ଛଦ୍ମବେଶ ଧାରଣ କରି ପିଣ୍ଡିକି ଖଣ୍ଡଗିରି ଓ ଚନ୍ଦକା ଜଙ୍ଗଲ ମଧ୍ୟରେ ତାଙ୍କ ଇଂରେଜ ବିରୋଧୀ ସଂଗ୍ରାମୀ ଜୀବନ ଅବ୍ୟାହତ ରଖିଥିଲେ । ଇଂରେଜ ସରକାର ଶତଚେଷ୍ଟା କରି ମଧ ତାଙ୍କୁ ଧରିବାରେ ବିଫଳ ହେଉଥିଲେ । ପରିଶେଷରେ ଉତ୍ତର ଖୋର୍ଦ୍ଧା ଗଡ ମଳିପଡାର ଜମିଦାର ଧ୍ରୁବଜୟ ହରିଚନ୍ଦନ ନିଜବନ୍ଧୁ ପିଣ୍ଡିକିଙ୍କୁ ଧରାଇ ଦେବାରେ ଇଂରେଜମାନଙ୍କୁ ସହଯୋଗ କରିଥିଲେ । ସେଥିପାଇଁ ଇଂରେଜ ସରକାରଙ୍କଠାରୁ ଜାଗିରି ପ୍ରାପ୍ତ ହୋଇଥିଲେ । ଦିଗମ୍ବର ଶ୍ରୀଚନ୍ଦନଙ୍କ 'ଖୁରୁଧା ଦର୍ପଣ'ର

ଦ୍ୱିତୀୟ ଭାଗରେ ଉଲ୍ଲେଖ ଅଛି –

" ବାକି ପାଇକରାପୁର ପଞ୍ଚ ମଉଜା ମଧ୍ୟର
ଗଡ ମଳିପଡା ବୋଲି ଅଛି ବିଖ୍ୟାତ
ସେ ଗଡ ହରିଚନ୍ଦନ ଧ୍ରୁବଜୟ ନାମେ ଜାଣ
ବିଟ୍ରିଶ ସରକାରଙ୍କ ସନନ୍ଦ ପ୍ରାପ୍ତ
ସେ ଗଡର ନିଶ୍ଚିତ ଜମା
ତିନିଶହ ବୟାନବେ ଆଉ ଆଠଣା ।।"

ପିଣ୍ଡିକି ବାହୁବଳେନ୍ଦ୍ର ୧୮୧୭ ଖ୍ରୀଷ୍ଟାବ୍ଦ ପାଇକ ବିଦ୍ରୋହର ମହାନାୟକ ବକ୍ସି ଜଗବନ୍ଧୁଙ୍କର ଅତି ଘନିଷ୍ଠ ଓ ବିଶ୍ୱସ୍ତ । ଦାଣ୍ଡିମାଳ ଅଞ୍ଚଳରେ ବିଦ୍ରୋହକୁ ଅତି ଭୟଙ୍କର ରୂପ ଦେଇ ପିଣ୍ଡିକି ବାହୁବଳେନ୍ଦ୍ର ଇଂରେଜ ସରକାରଙ୍କର ନିଦ ହଜାଇ ଦେଇଥିଲେ । ଦାଣ୍ଡିମାଳ ଅଞ୍ଚଳରେ ତାଙ୍କୁ ପ୍ରବଳ ଜନ ସମର୍ଥନ ମିଳିଥିଲା । ତାଙ୍କର ମୁଖ୍ୟ ସହକର୍ମୀ ଥିଲେ ବିଷ୍ଣୁ ପାଇକରାୟ, ସାଧୁ ମଙ୍ଗରାଜ, ବିଷ୍ଣୁ ମହାନ୍ତି, ମଧୁ ମହାନ୍ତି, ଓ ଧ୍ରୁବ ଜେନା । ସେ ପରବର୍ତ୍ତୀ ସମୟରେ ବନ୍ଧୁଦ୍ୱାରା ଧରାପଡି ଇଂରେଜମାନଙ୍କଦ୍ୱାରା ନିହତ ହେଲେ ।

ଦାଣ୍ଡିମାଳରେ ଇଂରେଜ ବିରୋଧୀ ବିଦ୍ରୋହ ଚାଲୁଥିବା ସମୟରେ ଜାତିପ୍ରେମୀ ଓ ସ୍ୱାଭିମାନୀ ପାଇକମାନଙ୍କୁ ଇଂରେଜମାନଙ୍କ ହାତରେ ଧରାଇ ଦେବା ପାଇଁ ଅନେକ ଜାତିଦ୍ରୋହୀ ଓ ସ୍ୱାର୍ଥପର ବ୍ୟକ୍ତିମାନେ ନିରନ୍ତର ଉଦ୍ୟମ କରିଥିଲେ । ଅର୍ଥ ଲୋଭରେ ବଶବର୍ତ୍ତୀ ହୋଇ ଦାଣ୍ଡିମାଳରେ ଦାମୋଦର ପଟ୍ଟନାୟକ ଓ କହ୍ନେଇ ଶତପଥୀ ଇଂରେଜମାନଙ୍କର ପରମଭକ୍ତ ସାଜିଥିଲେ । ଦାଣ୍ଡିମାଳ ଅଞ୍ଚଳର ଅନେକ ଦଳପତିମାନଙ୍କ ପରମଭକ୍ତ ସାଜିଥିଲେ । ଦାଣ୍ଡିମାଳ ଅଞ୍ଚଳର ଅନେକ ଦଳପତିମାନଙ୍କର ବକ୍ସି ଜଗବନ୍ଧୁଙ୍କ ସହିତ ନିବିଡ ସମ୍ପର୍କ ଥିଲା । ସେହି ସଂଗ୍ରାମୀମାନେ ନିସ୍ୱାର୍ଥପର ଭାବରେ ମାତୃଭୂମି ପାଇଁ ବକ୍ସି ଜଗବନ୍ଧୁଙ୍କୁ ସର୍ବଦା ସାମରିକ ସହଯୋଗ ଯୋଗାଇ ଆସୁଥିଲେ । ସେମାନଙ୍କ ମଧ୍ୟରେ ଭାତଖୁରୀ ମୌଜାର କେଳୁଚରଣ ଶତୃଶଲ୍ୟ ଓ ବରଗଡ ଗ୍ରାମର ପଦ୍ମନାଭ ଛୋଟରାୟ । ପାଇକ ବିଦ୍ରୋହର ଅନ୍ୟତମ ଯୋଦ୍ଧା କେଳୁଚରଣ ଶତୃଶଲ୍ୟ ଦାଣ୍ଡିମାଳ ଅନ୍ତର୍ଗତ ଭାତଖୁରୀ ମୌଜାରେ ଜନ୍ମଗ୍ରହଣ କରିଥିଲେ । ଖାଦ୍ୟରେ ବିଷ ମିଶାଯାଇ କେଳୁଚରଣ ଶତୃଶଲ୍ୟଙ୍କୁ ହତ୍ୟା କରାଯାଇଥିଲା ।

ଖଣ୍ଡଗିରି ଥାନା ଅନ୍ତର୍ଗତ ଯଦୁପୁର ନିବାସୀ ଢୁମୁଢୁମା ଦଳ ବେହେରା ମିର ହାଇଦର ଅଲ୍ଲି ଇଂରେଜମାନଙ୍କ ବିରୋଧରେ ସଂଗ୍ରାମ କରିବା ପାଇଁ ବକ୍ସିଙ୍କୁ ସମର୍ଥନ ଦେଇଆସିଥିଲେ । ଯାଁଳା ଗ୍ରାମ ନିବାସୀ ଜଗବନ୍ଧୁ ସାନ୍ତା ଓ ଗଙ୍ଗପଡାର ରାମଚନ୍ଦ୍ର ସାମନ୍ତ ସିଂହାର ପ୍ରଭୃତି ଦାଣ୍ଡିମାଳର ଲଢୁଆପାଇକ ଓ ଦଳ ବେହେରା ବକ୍ସି ଜଗବନ୍ଧୁଙ୍କର ଘନିଷ୍ଠ ସହଯୋଗୀ ଥିଲେ । ଦାଣ୍ଡିମାଳ ଅନ୍ତର୍ଗତ ଦେଉଳିଆ ପାଟଣା ଗ୍ରାମ ନିକଟରେ ଦେଉଳିଆ ମୁଣ୍ଡିଆ ଅବସ୍ଥିତ । ଏହି ମୁଣ୍ଡିଆ ପାଇକ ବିଦ୍ରୋହ ସହିତ ସମ୍ପୃକ୍ତ । ଦେଉଳିଆ ମୁଣ୍ଡିଆ ନିକଟସ୍ଥ ହରିପୁର ଗଡର ଗଡାଧୀଶ ଥିଲେ ଓଗାଳଷଣ୍ଢ । ପାଇକମାନେ ବିଦ୍ରୋହ ସମୟରେ ଦେଉଳିଆ ମୁଣ୍ଡିଆରେ ଆଶ୍ରୟ ନେଇ ସାମରିକ ପ୍ରସ୍ତୁତି ସମ୍ପର୍କରେ ଆଲୋଚନା କରିଥାନ୍ତି । ମୁଣ୍ଡିଆର ପାଦଦେଶରେ ହରିପୁର ଗଡର ଦଳବେହେରା ଓଗାଳଷଣ୍ଢଙ୍କ ପୁତ୍ର କାହାଳିଧରି ସତର୍କ ଦୃଷ୍ଟିରେ ରହିଥାନ୍ତି । ସୂଚନା ପାଇ ଇଂରେଜମାନେ ପାଇକ ମେଳିକୁ ଦୁର୍ବଳ କରିବା ଉଦ୍ଦେଶ୍ୟରେ ମୁଣ୍ଡିଆ ଉପରକୁ ଚଢିବା ସମୟରେ ତଳେଥିବା ହରିପୁର ଗଡାଧୀଶଙ୍କ ପୁତ୍ର କାହାଳି ବଜାଇ ଉପରେ ଥିବା ପାଇକମାନଙ୍କୁ ସତର୍କ କରାଇ ଦେଇଥାନ୍ତି । ପାଇକମାନେ ବଡ ବଡ ପଥର ଖଣ୍ଡମାନ ଖସାଇ ଇଂରେଜମାନଙ୍କୁ ଆହତ କରୁଥିଲେ । ହରିପୁର ଗଡାଧୀଶଙ୍କ ପୁତ୍ରକୁ 'କାହାଳିଆ ଷଣ୍ଢ' ବୋଲି କୁହାଯାଏ । ଇଂରେଜମାନଙ୍କ ଦ୍ୱାରା କାହାଳିଆ ଷଣ୍ଢ ନିହତ ହେଲେ । ପରବର୍ତ୍ତୀ ସମୟରେ ସ୍ଥାନୀୟ ଲୋକେ ତାଙ୍କ ଉପରେ ଦେବତ୍ୱ ଆରୋପ କରି ପୂଜାର୍ଚ୍ଚନା କରୁଛନ୍ତି । ମେଣ୍ଢାଶାଳଗଡର ସଗ୍ରାମୀ ଅର୍ଜ୍ଜୁନ ପାଣ୍ଡବ ସ୍ୱରଚିତ "ବୀର କାହାଳିଆ ପାଇକରଥୀ" ପୁସ୍ତକରେ ଏ ସମ୍ପର୍କରେ ଅନେକ ତଥ୍ୟ ଉପସ୍ଥାପନ କରିଛନ୍ତି –

"ବୀର କାହାଳିଆ ଯେଉଁ ସ୍ଥାନେ ବସି
କାହାଳୀ ଫୁଙ୍କିଣ ଦେଲା ସଙ୍କେତ
କାହାଳିଆ ସାହି ନାମରେ ବସତି
ଏବେବି ସେ ସ୍ଥାନ ଲୋକେ ବିଦିତ
ଦୁର୍ଦ୍ଧାନ୍ତ ଫିରିଙ୍ଗି ସୈନ୍ୟ କବଳୁ
ରଖେ ସେ ପାଇକେ ବାଇ କାହାଳୀ
ଏବେବି ରଖଇ ଡାକିଲେ ସଙ୍କଟେ
ଯାଚିଥାନ୍ତି ଲୋକେ ଅଶ୍ୱ କାହାଳୀ ।।"

ଦାଣ୍ଡିମାଳ ଅନ୍ତର୍ଗତ କେତୋଟି ଗଡ ଯଥା– କାଇମାଟିଆ, ଘାଟିକିଆ, ମଳିପଡା, ଅନ୍ଧାରୁଆ, ଦାରୁଠେଙ୍ଗ ଓ ସରକନ୍ତରାର ପାଇକ, ଦଳବେହେରା ଓ ଦଳେଇମାନେ ନିର୍ଭୀକତାର ସହିତ ଇଂରେଜମାନଙ୍କ ସହ ଯୁଦ୍ଧ କରିଥିଲେ । ବର୍ତ୍ତମାନ ମଧ୍ୟ ଏହି

ଗ୍ରାମମାନଙ୍କରେ ଅଧିବାସୀମାନେ ଦୁଃସାହାସୀ ଓ ନିର୍ଭୀକ । ଏକ ସୁନ୍ଦର ଲୋକଗୀତରୁ ସ୍ପଷ୍ଟ ପ୍ରମାଣ ମିଳେ –

''କାଇମାଟି ଘାଟି ମଳି ଅନ୍ଧାର
ଦାରୁଠେଙ୍ଗ, ସରକନ୍ତାର
ଏମାନଙ୍କୁ ହାର ମାନିଲେ
ବିଟ୍ରିଶ ସରକାର ।''

ଦାଣ୍ଡିମାଳ ଅଞ୍ଚଳର ସତ୍ ସାହାସୀ ପାଇକରଥୀମାନେ ନିରବଚ୍ଛିନ୍ନ ଭାବରେ ଇଂରେଜମାନଙ୍କ ବିରୋଧରେ ସଂଗ୍ରାମ କରିଆସିଥିଲେ । ୧୮୦୪ ଖ୍ରୀଷ୍ଟାବ୍ଦ ଖୋର୍ଦ୍ଧା ରାଜାଙ୍କ ନେତୃତ୍ୱରେ ଇଂରେଜ ବିରୋଧୀ ବିଦ୍ରୋହ ଓ ୧୮୧୭ ଖ୍ରୀଷ୍ଟାବ୍ଦର ପାଇକ ବିଦ୍ରୋହକୁ ଦାଣ୍ଡିମାଳ ଅଞ୍ଚଳର ଯୋଗଦାନ ଇତିହାସ ପୃଷ୍ଠାରେ ଏହାର ନିର୍ଭରଯୋଗ୍ୟ ତଥ୍ୟ ଓ ପ୍ରମାଣ ଉଲ୍ଲେଖ ଅଛି ।

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଆରମ୍ଭ ହେଲା ଇଂରେଜ ବିରୋଧୀ ଆନ୍ଦୋଳନ । ଦାଣ୍ଡିମାଳ ଅଞ୍ଚଳରେ ସଂଗ୍ରାମୀମାନେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱକୁ ସ୍ୱୀକାର କରି ଅସହଯୋଗ, ଆଇନ ଅମାନ୍ୟ ଓ ଭାରତଛାଡ ଆନ୍ଦୋଳନରେ ଝାସ୍ ଦେଇଥିଲେ । ଦିଗମ୍ବର ଶ୍ରୀଚନ୍ଦନ (୧୮୬୭-୧୯୪୫ ଖ୍ରୀଷ୍ଟାବ୍ଦ) ନାରଗୋଦା ଦଳବେହେରା ବଂଶର ଦାୟାଦ । ଦାଣ୍ଡିମାଳ ଅଞ୍ଚଳର ଜଣେ ସଂଗ୍ରାମୀ ଐତିହାସିକ, ସଙ୍ଗଠକ ଓ ଶିକ୍ଷାବିତ୍ ଭାବରେ ତାଙ୍କର ଅନେକ ସୁଖ୍ୟାତି ରହିଛି । ସେ ଖୁରୁଧା ଦର୍ପଣ' ନାମକ ଦୁଇଖଣ୍ଡ ତଥ୍ୟ ସମ୍ବଳିତ ଐତିହାସିକ ପୁସ୍ତକ ରଚନା କରିଥିଲେ । ବିହାରର ଚକ୍ରଧରପୁରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ସେ ୧୯୨୦ ମସିହା ସେପ୍ଟେମ୍ବର ମାସ ୬ତାରିଖରେ ଯୋଗଦାନ କରିଥିଲେ । ଦିଗମ୍ବର ଶ୍ରୀଚନ୍ଦନଙ୍କ ଉଦ୍ୟମରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସଭାପତିତ୍ୱରେ ଖଣ୍ଡଗିରିଠାରେ ଉତ୍କଳ କଂଗ୍ରେସର ଅଧିବେଶନ ଆୟୋଜିତ ହୋଇଥିଲା । ଖୋର୍ଦ୍ଧା ବକ୍ସି ଜଗବନ୍ଧୁ ଉଚ୍ଚ ବିଦ୍ୟାଳୟର ପ୍ରତିଷ୍ଠାତା ସଦସ୍ୟ ଭାବରେ ତାଙ୍କୁ ଅନେକ କଷ୍ଟ ସ୍ୱୀକାର କରିବାକୁ ପଡିଥିଲା । ଜଣେ ଶିକ୍ଷାପ୍ରେମୀ ଭାବରେ ସେ ଅନେକ କାର୍ଯ୍ୟ ସମ୍ପାଦିତ କରିଛନ୍ତି ।

ଯୁଧିଷ୍ଠିର ସାମନ୍ତ ସିଂହାର ଏ ଅଞ୍ଚଳର ଅନ୍ୟଜଣେ ସଂଗ୍ରାମୀ । ଭୁବନେଶ୍ୱର ସମୀପବର୍ତ୍ତୀ ଅନ୍ଧାରୁଆ ଗ୍ରାମରେ ସେ ୧୯୧୫ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ସେ ଇଂରେଜ ସରକାରଙ୍କ ବିରୋଧରେ ନିର୍ଭୀକତାର ସହିତ ସଂଗ୍ରାମ କରିଥିଲେ । ସ୍ୱାଧୀନତା ପରେ ଭୁବନେଶ୍ୱର ପଞ୍ଚାୟତ ସମିତିର ପ୍ରଥମ ଚେୟାରମ୍ୟାନ ପଦକୁ ଅଳଙ୍କୃତ କରିଥିଲେ । ଦୀର୍ଘ ୧୮ବର୍ଷ ଧରି ଅନ୍ଧାରୁଆ ଗ୍ରାମପଞ୍ଚାୟତର ସରପଞ୍ଚ ଭାବରେ ଜନହିତକର କାର୍ଯ୍ୟ କରି ସେ ସ୍ମରଣୀୟ ହୋଇ ରହିଛନ୍ତି । ଯୁଧିଷ୍ଠିର ସାମନ୍ତ ସିଂହାର ୧୯୭୬ ମସିହା ବୈଶାଖ ପୂର୍ଣ୍ଣିମାରେ ଇହଲୀଳା ସମ୍ବରଣ କଲେ । ଅନ୍ଧାରୁଆ ନିକଟସ୍ଥ ଚନ୍ଦକା ଗ୍ରାମର ଉପେନ୍ଦ୍ର ନାଥ ଦାସ ଜଣେ ସତ୍ୟନିଷ୍ଠ ସ୍ୱାଧୀନତା ସଂଗ୍ରାମୀ । ପରାଧୀନତାର ଶୃଙ୍ଖଳରୁ ମାତୃଭୂମିର ମୁକ୍ତି ପାଇଁ ସେ କାରାବରଣ କରିବାକୁ ସେ କେବେ ପଛଘୁଞ୍ଚା ଦେଇନଥିଲେ । ବାନର ସେନାର ସେ ଜଣେ ସକ୍ରିୟ ବାଳ ସଂଗ୍ରାମୀ ଥିଲେ । ଏଥିପାଇଁ ତାଙ୍କୁ ବହୁବାର କାରାବରଣ କରିବାକୁ ପଡିଥିଲା । ତତ୍କାଳୀନ ପ୍ରଜା ଆନ୍ଦୋଳନରେ ଯୋଗଦାନ କରିଥିବାରୁ ତାଙ୍କୁ ଢେଙ୍କାନାଳ ଜେଲ୍‌ରେ ବହୁଦିନ ଧରି ବନ୍ଦୀ କରାଯାଇଥିଲା । ଜଣେ ହୋମିଓପାଥିକ ଚିକିତ୍ସକ ଭାବରେ ଏ ଅଞ୍ଚଳରେ ତାଙ୍କର ସୁନାମ ଥିଲା । ୧୯୭୫ ମସିହା ଅକ୍ଟୋବର ମାସ ୩୦ ତାରିଖରେ ସେ ପାର୍ଥିବ ଜଗତରୁ ବିଦାୟ ନେଲେ । ଦାଣ୍ଡିମାଳ ଅଞ୍ଚଳରେ ଅବସ୍ଥିତ ସଂସ୍କୃତି ସମ୍ପନ୍ନ ଗ୍ରାମ ମେଣ୍ଢାଶାଳ । ମେଣ୍ଢାଶାଳଗଡର ସୁଯୋଗ୍ୟ ସନ୍ତାନ ଅର୍ଜ୍ଜୁନ ପାଣ୍ଡବ । ସ୍ୱାଧୀନତା ସଂଗ୍ରାମରେ ସେ ଯୋଗଦାନ କରିଥିଲେ । ମାଳତୀ ଚୌଧୁରୀଙ୍କ ନେତୃତ୍ୱରେ ସେ ବୀର ଅର୍ଜ୍ଜୁନ ପରି ଢେଙ୍କାନାଳ ଗଡରେ ପ୍ରବେଶ କରି ଜାତୀୟ ପତାକା ଉତ୍ତୋଳନ କରିଥିଲେ । ଅତ୍ୟାଚାରୀ ରାଜତନ୍ତ୍ର ବିରୋଧରେ ସେ ସଂଗ୍ରାମ କରି ୧୫ଦିନ ପର୍ଯ୍ୟନ୍ତ ଢେଙ୍କାନାଳ ଜେଲ୍‌ରେ ରହିଥିଲେ । ଜଣେ ସତ୍ୟନିଷ୍ଠ ସଂଗ୍ରାମୀ ଭାବରେ ସେ ସୁପରିଚିତ । ଓଗାଳପଡା ସ୍ଥିତ ଉତ୍କଳସେବା ଅନୁଷ୍ଠାନ ପକ୍ଷରୁ ସ୍ୱାଧୀନତା ସଂଗ୍ରାମରେ ତାଙ୍କର ବହୁମୂଲ୍ୟ ଅବଦାନ ପାଇଁ ସମ୍ବର୍ଦ୍ଧିତ କରାଯାଇଥିଲା । ଏହି ଅବସରରେ ତାଙ୍କ ସଂଗ୍ରାମୀ ଜୀବନ ସମ୍ପର୍କରେ ଜାଣିବାର ମୋର (ଲେଖକ) ସୁଯୋଗ ମିଳିଥିଲା । ସ୍ୱର୍ଗତଃ ଅର୍ଜ୍ଜୁନ ପାଣ୍ଡବ ଅଗାଧ୍ୟ ପାଣ୍ଡିତ୍ୟର ଅଧିକାରୀ । ଅନେକ ପୁସ୍ତକ ସେ ରଚନା କରିଥିଲେ । 'କାହାଳିଆ ଷଣ୍ଢ ପାଇକରଥି' ନାମକ ତଥ୍ୟ ସମ୍ବଳିତ ଏକ ଐତିହାସିକ କବିତା ପୁସ୍ତକ ରଚନା କରିଥିଲେ । ଏ ଅଞ୍ଚଳର ଐତିହାସିକ, ସାଂସ୍କୃତିକ ଓ ଧାର୍ମିକ ଘଟଣାବଳୀମାନଙ୍କୁ ସେ ସୁନ୍ଦର ଭାବରେ ତାଙ୍କ ପୁସ୍ତକରେ ସ୍ଥାନ ଦେଇଛନ୍ତି । ଅନନ୍ତ ଚରଣ ଡେଙ୍ଗ ଏ ଅଞ୍ଚଳର ଜଣେ ସ୍ମରଣୀୟ ସଂଗ୍ରାମୀ । ଛତାବର ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ସଂଗ୍ରାମୀ ଜୀବନର ପଟାନ୍ତର

ନାହିଁ । ଇଂରେଜ ସରକାରଙ୍କ କୁଶାସନ ବିରୋଧରେ ସଂଗ୍ରାମ କରି ପୁରୀ, ଖୋର୍ଦ୍ଧା ଓ ଢେଙ୍କାନାଳ ଜେଲ୍‌ରେ ତାଙ୍କୁ ବନ୍ଦୀ ଜୀବନ ବିତାଇବାକୁ ପଡିଥିଲା । ସ୍ୱର୍ଗତଃ ଲକ୍ଷ୍ମୀଧର ଷଡଙ୍ଗୀ ଏ ଅଞ୍ଚଳର ଜଣେ ସୁପରିଚିତ ସଂଗ୍ରାମୀ । ଇଂରେଜ ସରକାରଙ୍କ ବିରୋଧରେ ସେ ନିରବଚ୍ଛିନ୍ନ ଭାବରେ ଜନଜାଗରଣ ସୃଷ୍ଟି କରି ଆସୁଥିଲେ । କାଟେଣୀ ଗ୍ରାମରେ ଜନ୍ମଗ୍ରହଣ କରିଥିବା ଲକ୍ଷ୍ମୀଧର ଷଡଙ୍ଗୀ ବାମପନ୍ଥୀ ଆଦର୍ଶରେ ଅନୁପ୍ରାଣିତ ଥିଲେ । ଚାଷୀ, ମୂଲିଆ ଓ ମଜୁରିଆମାନଙ୍କର ସେ ଜଣେ ସତୀର୍ଥ ବନ୍ଧୁଥିଲେ । କୁଳମଣି ସାମନ୍ତରାୟ ମୁଣ୍ଡ ମୁହାଣ ଗ୍ରାମର ଜଣେ ସ୍ମରଣୀୟ ସଂଗ୍ରାମୀ । ସେ ଥିଲେ ଜଣେ ସୁନାମଧନ୍ୟ ଗାନ୍ଧୀବାଦୀ । ଅହିଂସା ଓ ସତ୍ୟାଗ୍ରହ ପ୍ରଭୃତି ଗାନ୍ଧୀବାଦ ଚିନ୍ତାଧାରାରେ ତାଙ୍କର ଅସୀମ ଶ୍ରଦ୍ଧା ଓ ସମ୍ମାନ ଥିଲା । ଗାନ୍ଧିଜୀଙ୍କର ପ୍ରଥମ ଓଡ଼ିଶା ଆଗମନ ଓ କଟକ କାଠଯୋଡି ବାଲିପଠାରେ ଆୟୋଜିତ ସାଧାରଣ ସଭାରେ ଆୟୋଜନ ନିମନ୍ତେ କୁଳମଣି ସାମନ୍ତରାୟ ଏକ ହଜାର ଟଙ୍କା ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ପ୍ରଦାନ କରିଥିଲେ । ତାଙ୍କ ମୁଣ୍ଡମୁହାଣସ୍ଥିତ ବାସଭବନରେ ସ୍ୱାଧୀନତା ସଂଗ୍ରାମୀ ପୋଲିସ ଆଖିରେ ଧୂଳି ଦେଇ ଆତ୍ମଗୋପନ କରୁଥିଲେ । କୁଳମଣି ସାମନ୍ତରାୟଙ୍କ ଉଦ୍ୟମରେ ଅନେକ ଦେଶପ୍ରେମୀ ମୁକ୍ତି ଯୁଦ୍ଧରେ ସୈନିକ ରୂପେ ଯୋଗଦାନ କରିଥିଲେ । ସେମାନଙ୍କ ମଧ୍ୟରେ ଯାଁଙ୍କା ଗ୍ରାମର ରାଧାଶ୍ୟାମ ମହାରାଜା ଅନ୍ୟତମ । କୁଳମଣି ସାମନ୍ତରାୟ ଅବିବାହିତ ଥିଲେ ଏବଂ ଆଜୀବନ ଦେଶ ଓ ଜାତି ସେବାରେ ନିଜକୁ ସମର୍ପିତ କରିଥିଲେ । କିଶୋର ଚନ୍ଦ୍ର ସାମନ୍ତରାୟ ଏ ମାଟିର ଅନ୍ୟତମ ସ୍ମରଣୀୟ ସଂଗ୍ରାମୀ ୮୬ ବର୍ଷ ବୟସରେ ଉପନୀତ ହୋଇ ମଧ୍ୟ ସଂଗ୍ରାମୀ ଜୀବନକୁ କେବେ ପରିହାର କରିନାହାନ୍ତି । ୧୯୨୩ ମସିହା ନଭେମ୍ବର ମାସ ୬ତାରିଖ ଦିନ ଦକ୍ଷିଣମୁଣ୍ଡ ମୁହାଣର ଏକ ସମ୍ଭ୍ରାନ୍ତ ଜମିଦାର ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ରେଭେନ୍ସା କଲେଜରେ ସେ ଅଧ୍ୟୟନ କରୁଥିବା ସମୟରେ ଛାତ୍ରନେତା ବିଭୁଦେନ୍ଦୁ ମିଶ୍ର, ମନମୋହନ ମିଶ୍ର ଓ ସୁରଜ ମଲ୍ଲ ସାହାଙ୍କ ନେତୃତ୍ୱରେ ଇଂରେଜ ସରକାରଙ୍କ ବିରୋଧରେ ଛାତ୍ର ଆନ୍ଦୋଳନରେ ଯୋଗଦାନ କରିଥିଲେ । ସଂଗ୍ରାମୀ ଛାତ୍ରନେତାମାନେ ତାଙ୍କ ମୁଣ୍ଡମୁହାଁଣସ୍ଥିତ ବାସଭବନରେ ଆଶ୍ରୟ ନେଇ ସଂଗ୍ରାମ ପରିଚାଳନା କରୁଥିଲେ । ଉତ୍କଳସେବା ଅନୁଷ୍ଠାନର ବାର୍ଷିକ ମୁଖପତ୍ର 'ଉଷା'ର ରୌପ୍ୟ ଜୟନ୍ତୀ ବିଶେଷାଙ୍କ ୨୦୦୯କୁ ଏକ ସାକ୍ଷାତକାର ପ୍ରଦାନ କରି କିଶୋର ଚନ୍ଦ୍ର ସାମନ୍ତରାୟ ଉଲ୍ଲେଖ କରିଥିଲେ ତାଙ୍କ ପରିବାରକୁ ସମସ୍ତେ 'ସତ୍ୟାଗ୍ରହୀ' ପରିବାର ଭାବରେ ସମ୍ମାନିତ କରୁଥିଲେ । ସ୍ୱାଧୀନତା ସଂଗ୍ରାମ ସମ୍ପର୍କୀୟ ଅନେକ ଗୁପ୍ତ ଆଲୋଚନା ଓ ଯୋଜନା ତାଙ୍କ ଘରେ ପ୍ରସ୍ତୁତ କରାଯାଉଥିବାର ତାଙ୍କ ସାକ୍ଷାତକାର ବକ୍ତବ୍ୟରୁ ଜଣାଯାଏ । ୧୯୫୪ ମସିହାରୁ ୧୯୮୭ ମସିହା ପର୍ଯ୍ୟନ୍ତ ଯାଁଙ୍କା କୃଷ୍ଣଚନ୍ଦ୍ର ବିଦ୍ୟାପୀଠର ସମ୍ପାଦକ ଦାୟିତ୍ୱ ସେ ନିଷ୍ଠାର ସହିତ ସମ୍ପାଦନା କରି ଆସୁଥିଲେ । ଅର୍ଥ, କ୍ଷମତା, ପଦ-ପଦବୀର ଲାଳସା ତାଙ୍କୁ କେବେ ସ୍ପର୍ଶ କରିନଥିଲା । ମାଟି ମାଆ ପାଇଁ ତାଙ୍କର ସମଗ୍ର ଜୀବନ ସମର୍ପିତ । ମେଣ୍ଢାଶାଳ ଗ୍ରାମରେ ୧୯୨୦ ମସିହା ଜୁନ୍ ୨ତାରିଖରେ ଜନ୍ମଗ୍ରହଣ କରିଥିବା ବନମାଳୀ ପଟ୍ଟନାୟକ ଇଂରେଜମାନଙ୍କ ବିରୋଧରେ ତାଙ୍କ ଛାତ୍ରଜୀବନରୁ ସଂଗ୍ରାମ ଆରମ୍ଭ କରିଥିଲେ । ୧୯୪୨ ମସିହାର ଐତିହାସିକ ଭାରତଛାଡ ଆନ୍ଦୋଳନ ସମୟରେ ବନମାଳୀ ପଟ୍ଟନାୟକଙ୍କୁ ଗିରଫ କରି ଇଂରେଜ କର୍ତ୍ତୃପକ୍ଷ ପୁରୀ ଜେଲ୍‌ରେ ରଖିଥିଲେ । ତାଙ୍କୁ 'ବିପଦଜନକ ଅପରାଧୀ' ବୋଲି ଇଂରେଜ ସରକାର ବିବେଚନା କରି କଟକ ଓ ପରେ ବ୍ରହ୍ମପୁର ଜେଲ୍‌କୁ ସ୍ଥାନାନ୍ତରିତ କରିଥିଲେ । ସେ ବ୍ରହ୍ମପୁର ଜେଲ୍‌ରେ ଥିବା ସମୟରେ ୧୯୪୩ ମସିହା ମାର୍ଚ୍ଚ ମାସ ୨୯ ତାରିଖରେ ଲକ୍ଷ୍ମଣ ନାଏକଙ୍କୁ ଫାଶୀ ଦିଆଯାଇଥିଲା । ସେଦିନ ପ୍ରତ୍ୟୁଷରେ ବନମାଳୀ ପଟ୍ଟନାୟକ ସହବନ୍ଦୀମାନଙ୍କ ସହିତ ନୀରବ ପ୍ରାର୍ଥନା କରି ଲକ୍ଷ୍ମଣ ନାଏକଙ୍କୁ ଶେଷ ବିଦାୟ ଦେଇଥିଲେ । ଦାଣ୍ଡିମାଳର ସ୍ୱତନ୍ତ୍ର ସେନାନୀମାନଙ୍କର ଦେଶମାତୃକା ପାଇଁ ପ୍ରାଣବଳି ଇତିହାସ ପୃଷ୍ଠାରେ ଚିର ଅମର । ଓଡ଼ିଶାର ଗୌରବମୟ ଇତିହାସରେ ସେମାନେ ନିଜ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିଛନ୍ତି । ଦାଣ୍ଡିମାଳ ସଂଗ୍ରାମୀମାନଙ୍କର ଇଂରେଜ ବିରୋଧୀ ବିଦ୍ରୋହର ଲୋମହର୍ଷଣକାରୀ କାହାଣୀ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ପ୍ରେରଣାର ଉତ୍ସ ହେବ, ଏହା ନିଃସନ୍ଦେହ ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା - ୭୫୨୦୫୪
ଫୋନ୍ - ୯୩୩୮୪୧୨୯୩୨

# କବି ମାନସରେ ସ୍ୱାଧୀନତା ସଂଗ୍ରାମର ଝଲକ

ଉମାଶଙ୍କର ପ୍ରସାଦ

'ଅପାରେ କାବ୍ୟ ସଂସାରେ କବିରେବ ପ୍ରଜାପତି' କବିତାର ସୃଷ୍ଟିରେ କବିତାର ଅନୁପମ ସ୍ରଷ୍ଟା । କବିର କାବ୍ୟଚେତନା କେବଳ ବ୍ୟକ୍ତି କୈନ୍ଦ୍ରିକ ନହୋଇ ଜାତୀୟ ମାନସ ସୃଷ୍ଟ, ଆଧାତ୍ମିକ ଓ ବୌଦ୍ଧିକ ତଥା ମନସ୍ତାତ୍ତ୍ୱିକ ପରମ୍ପରା ଓ ପରିବେଶ ଦ୍ୱାରା ପ୍ରଭାବିତ ତଥା ନିୟନ୍ତ୍ରିତ ହୋଇଥାଏ । ତେଣୁ ଅରବିନ୍ଦ ଯଥାର୍ଥରେ କହିଥିଲେ– 'The Work of the poetry not only depends on himself and his age but on the mentality of the nation to which he belongs and the spiritual and the asthetic tradition and environment which it creaes for him'. ୧୯୨୧ ମସିହାରେ ଗାନ୍ଧିଜୀଙ୍କ ସ୍ୱାଧୀନତା ସଂଗ୍ରାମ ଜାତୀୟ ଜୀବନରେ ପ୍ରଚୁର ପ୍ରାଣ ପ୍ରାଚୁର୍ଯ୍ୟ ଭରିଦେବା ସହ ଭାରତୀୟ ସାହିତ୍ୟକୁ ମଧ୍ୟ ଏହା ଅନେକାଂଶରେ ପ୍ରଭାବିତ କରିଥିଲା । କବି ମାନସରୁ ଏହା ବାଦପଡନ୍ତା କିପରି ।

ଊନବିଂଶ ଶତାବ୍ଦୀର ଶେଷ ଭାଗକୁ, ରାଧାନାଥ ଓ ନନ୍ଦକିଶୋରଙ୍କ କାବ୍ୟକୃତିରେ ମୁକ୍ତିକାମୀ ଜନତାଙ୍କ ଆଶା ଆକାଂକ୍ଷାର ପ୍ରତିଫଳନ ଘଟିଥିଲା । ସତ୍ୟବାଦୀ ଯୁଗର ଏହି ସାଧକମାନେ ଏହି ଚେତନାକୁ କବିମାନସରେ ଝଙ୍କୃତ କରିଥିଲେ । ୧୯୨୦ମସିହାରେ ନାଗପୁରରେ ଆୟୋଜିତ କଂଗ୍ରେସ ଅଧିବେଶନରେ ଅସହଯୋଗ ଆନ୍ଦୋଳନ ଓ ବିଦେଶୀ ବର୍ଜନ ଭଳି ଦୁଇଟି ବ୍ୟାପକ ଗଣାଭିମୁଖୀ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା । ଯାହାଦ୍ୱାରା ଉତ୍କଳମଣି ଗୋପବନ୍ଧୁ ଗଭୀର ଭାବରେ ପ୍ରଭାବିତହୋଇଥିଲେ । ୧୯୨୦ ମସିହା ଡିସେମ୍ବର ୩୦ତାରିଖରେ ଚକ୍ରଧରପୁରରେ ଆୟୋଜିତ ଉତ୍କଳ ସମ୍ମିଳନୀରେ ଏହାର ଆଭିମୁଖ୍ୟ ପରିବର୍ତ୍ତନ ଘଟାଇ ସ୍ୱତନ୍ତ୍ର ଉତ୍କଳ ଗଠନ ସହ ଭାରତର ସ୍ୱାଧୀନତାକୁ ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ଭାବରେ ଗ୍ରହଣ କରାଯାଇଥିଲା, ଯାହାକି କବି ମାନସରେ ପରିବର୍ତ୍ତନ ଆଣିବା ସହ ଓଡ଼ିଆ କବିମାନଙ୍କର ଲେଖନୀ ଅଗ୍ନିବର୍ଷା କରିବାକୁ ଲାଗିଲା । କେତେକ କବି ନିଜକୁ ଜାତୀୟ ସଂଗ୍ରାମରେ ଝାସ ଦେଇ କାରାବରଣ କଲେ । ମୁକ୍ତ ସଂଗ୍ରାମର ଅନୁଭୂତି ତାଙ୍କ କାବ୍ୟବୃତ୍ତିକୁ ଶାଣିତ କରିଥିଲା । ଉତ୍କଳମଣି ଗୋପବନ୍ଧୁ ଥିଲେ ଜାତୀୟ ମୁକ୍ତି ସଂଗ୍ରାମର କାଣ୍ଡାରୀ, ଯିଏ ନିଜେ କାନ୍ଦି ଅନ୍ୟମାନଙ୍କୁ ଜନ୍ମଭୂମି ପାଇଁ କନ୍ଦାଇ ପାରିଥିଲେ । ଯାହାର ରାଜନୀତି ସରଳତା, ସାହିତ୍ୟାନୁରାଗ ସରସତା, ସେବା ମନୋବୃତ୍ତିରେ ଆତୁରତା, ପରଦୁଃଖରେ କାତରତା ସହ ଶିକ୍ଷାଦାନରେ ଆବେଗତା ଥିଲା ନିଜର ଅମୂଲ୍ୟ ସମ୍ପଦ 'ଜୀବନକୁ' ଦେଶ ଓ ଜାତି ପାଇଁ ବଳି ଦେଇ ଲେଖିଛନ୍ତି –

'ଏକ ଆଶା ଏକଲକ୍ଷ୍ୟ ଏକ ଧ୍ୟାନ
ଏକତ୍ର ଏକୁଡି ଏକତ୍ର ଶ୍ମଶାନ
ଏକ କର୍ମ ଖେଳ ଏକ ମାତୃପଦେ
କର ଏକ ପ୍ରାଣ ସମ୍ପଦେ ବିପଦେ
ଏକତା ମନ୍ତ୍ରରେ ରଖ ସଦା ମତି
ହେବ ଏହି ଭାବେ ସ୍ୱରାଜ୍ୟ ପ୍ରାପତି'
(ବନ୍ଦୀର ଆତ୍ମକଥା)

ତାଙ୍କ ଜୀବନ ସରିତା ଦୁଇଟି ଧାର ହୋଇ ବହିଯାଇଛି । ଗୋଟିଏ ହେଉଛି ତାଙ୍କର କବି–ସାହିତ୍ୟିକ ଜୀବନ ଓ ଅନ୍ୟଟି ହେଉଛି ରାଜନୈତିକ କର୍ମୀ ଜୀବନ । ଯେଉଁ ଉଭୟଧାର ଥିଲା ପରସ୍ପରର ପରିପୂରକ । ସତ୍ୟବାଦୀ ବନବିଦ୍ୟାଳୟ ଥିଲା ତାଙ୍କର ମାନସ ସନ୍ତାନ । ତାଙ୍କର ସମସ୍ତ ଚିନ୍ତାଧାରା ସହ ଏହି ଅନୁଷ୍ଠାନକୁ ସେ ସାମିଲ

କରିଥିଲେ । ହଜାରୀବାଗ ଜେଲ୍‌ରେ ବନ୍ଦୀ ସମୟରେ ତାଙ୍କର ମୁକ୍ତିକାମୀ କବିପ୍ରାଣ ଆହ୍ୱାନ ଦେଉଥିଲା ।

'ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାନ୍ତୁ ପିଠିରେ
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ
ପୂରୁ ପଡି ତହିଁ ମୋର ମାଂସ ହାଡ
ସ୍ୱାଧୀନତା ପଥେ ତିଳେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର'

ପିଲାଟି ଦିନରୁ ସେ ଥିଲେ ମୁକ୍ତିକାମୀ, ଛାତ୍ର ଅବସ୍ଥାରୁ ତାଙ୍କ ରଚିତ 'ଗୋଟିଏ କାଙ୍କଣ ଗଛ' କିପରି ରଞ୍ଜା ଦିଆଯିବାରୁ ନିଜର ସ୍ୱଚ୍ଛନ୍ଦ ଗତିକୁ ହରାଇ ମୃତ୍ୟୁମୁଖରେ ପଡିଥିଲା । କାଙ୍କଣ ଗଛର ଅସହାୟ ପରିଣତି ମାଧ୍ୟମରେ ପରାଧୀନତାରେ ଗ୍ଲାନି ଜର୍ଜର ଭାରତୀୟ ଜାତୀୟ ଜୀବନର ଚିତ୍ର ପ୍ରତିଫଳିତ ହୋଇଛି 'ବନ୍ଦୀର ଆତ୍ମକଥା' କାବ୍ୟର ପ୍ରତ୍ୟେକ ପଂକ୍ତି, ପ୍ରତ୍ୟେକ ଶବ୍ଦ, ବଜ୍ର ନିର୍ଘୋଷ ତୁଲ୍ୟ ଆଗ୍ନେୟାସ୍ତ୍ର ସ୍ଫୁରଣରେ ସମୁଜ୍ଜ୍ୱଳ ମୁକ୍ତିକାମୀ କବି ଉଦାର କଣ୍ଠରେ ସ୍ୱାଧୀନତାର ଉଦ୍‌ଘୋଷଣରେ ପରାଂମୁଖ ହୋଇନାହାଁନ୍ତି । ମହାନ ସ୍ୱାଧୀନତା ସଂଗ୍ରାମୀ ବାଲ ଗଙ୍ଗାଧର ତିଲକ୍ ପ୍ରକାଶ କରିଥିଲେ ସ୍ୱାଧୀନତା ମାନବର ଜନ୍ମସିଦ୍ଧ ଅଧିକାର । ଏହି ପଦକ କଥା ଗୋପବନ୍ଧୁଙ୍କ ହୃଦୟକୁ ଉଦ୍‌ବେଳିତ କରିଥିଲା ଏବଂ ସେ ପ୍ରକାଶ କରିଥିଲେ–

'ସ୍ୱାଧୀନତା ମାନବର ଜନ୍ମ ଅଧିକାର
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିହାର
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି
ଚାରିସ୍ତମ୍ଭେ ମାନବର ସମାଜ ସଂସ୍ଥିତି'

ଏହି ମହାନ ଉତ୍କଳର ମଣିଙ୍କ ଉତ୍ସର୍ଗୀକୃତ ଜୀବନ ବହୁ ସମସାମୟିକ ସାହିତ୍ୟ ସାଧକଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରିଥିଲା । ସ୍ୱାଧୀନତା ସଂଗ୍ରାମକୁ ଓଡ଼ିଶାର ଅଣେ କୋଣେ ଝଙ୍କୃତ କରାଇ ଓଡ଼ିଆବାସୀଙ୍କ ହୃଦୟ ଭିତରେ ସ୍ୱାଧୀନତାର ଫଲଗୁ ପ୍ରବାହିତ କରିବାରେ ଯେଉଁ ସମର୍ପିତ ବ୍ୟକ୍ତିତ୍ୱ ନିଜକୁ ପ୍ରତ୍ୟକ୍ଷ ଭାବେ ସାମିଲ କରିଥିଲେ, ସେ ହେଉଛନ୍ତି କବି ବାଞ୍ଛାନିଧି । ଉତ୍କଳ ବୀଣାର ପ୍ରଥମ ଝଙ୍କାରର ମୁଖବନ୍ଧରେ ସ୍ପଷ୍ଟ ରୂପେ ଉଲ୍ଲେଖ କରିଛନ୍ତି । ସାଧାରଣ ଲୋକେ ହୃଦୟଙ୍ଗମ କଲାଭଳି ଭାବ ଓ ଭାଷା ଦରକାର । ତାଙ୍କର କବିତାର ଭାଷା ସରଳ ହେଲେ ମଧ ସେଥିରେ ପ୍ରାଣ ପ୍ରାଚୁର୍ଯ୍ୟର ଅଭାବ ନଥିଲା । ଅତ୍ୟାଚାରୀ ଇଂରେଜ ଶାସନରେ ସାଧାରଣ ଜନତା ଅତିଷ୍ଠ ହୋଇପଡିଥିଲେ । ସେ ଅନୁଭବ କରିଥିଲେ ' ହାରି ଗୁହାରୀରେ ଭୀକ ମିଳିପାରେ ମାତ୍ର ହକ୍ ନୁହେଁ' ତେଣୁ ସେ ବଜ୍ର ଗମ୍ଭୀର କଣ୍ଠରେ ଅନ୍ୟାୟ ବିରୋଧରେ ସାଲିସ ବିହୀନ ସଂଗ୍ରାମ ଜାରି ରଖିବାକୁ ଆହ୍ୱାନ ଦେଇଥିଲେ ।

'କହ କେଉଁ ଜାତି ପାଇଛି ମୁକତି କରି ହୁରି ହାରି ଗୁହାରୀ
କହ ପାଇଛି କେ ସୁଖ ଲିଭାଇଛି ଦୁଃଖ ଭିକମାଗି ପଥ ଭିକାରୀ
ଯେବେ ବାଘମୁଖେ ପଡେ ଶିକାର
ମିନତୀରେ ପାଏ କି ସେ ଉଦ୍ଧାର
ଛାଡିକି ଦିଏ କେବେ ଧୀବର ଜାଲରୁ
ନଗଲେ ମୀନ ଆପେ ବାହାରି ।

ସେ ସମଗ୍ର ଓଡ଼ିଶାବାସୀଙ୍କୁ ଇଂରେଜ ସରକାରଙ୍କ ସହ ଲଢି ତାଙ୍କଠାରୁ ଆମର ନ୍ୟାଯ୍ୟ ଅଧିକାର ସ୍ୱାଧୀନତା ହାସଲ କରିବାକୁ ସେ ପ୍ରେରଣା ଦେଉଥିଲେ ଏବଂ ଉଦାତ୍ତକଣ୍ଠରେ ମୁକ୍ତିର ସାମସଙ୍ଗୀତ ଗାଇଥିଲେ ।

'ଗାଅ ସ୍ୱାଧୀନ ଭାରତ/ସ୍ୱାଧୀନ ଭାରତ
ସ୍ୱାଧୀନ ସ୍ୱାଧୀନ, ସ୍ୱାଧୀନରେ
ଗାଅ ସାଗର ଭୁଧର ଅମ୍ବର ଚୁମ୍ବିତ
ଭାଲେ ହିମାଚଳ କମ୍ପିତ
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନରେ ।

୧୯୩୦ ମସିହାରେ ଲବଣ ସତ୍ୟାଗ୍ରହୀ ସତ୍ୟାଗ୍ରହ କାଳରେ ଏହି ସଙ୍ଗୀତ ଗାନକରି ବ୍ରିଟିଶ ଅତ୍ୟାଚାରକୁ ଭ୍ରୂକ୍ଷେପ ନକରି ଅଗ୍ରସର ହୋଇଥିଲେ । ଓଡ଼ିଶାର ପ୍ରତିନିଧିମାନେ ଏହି ସଙ୍ଗୀତ ଗାନ କରି କଂଗ୍ରେସ ଅଧିବେଶନରେ ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିଥିବା କଥା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସୁରେନ୍ଦ୍ରନାଥ ପ୍ରକାଶ କରିଛନ୍ତି । ସେ କେବଳ ଏ ଦେଶର ରାଜନୈତିକ ସ୍ୱାଧୀନତା ଚାହିଁ ନଥିଲେ । ସେ ଅନୁଭବ କରିଥିଲେ ସାମାଜିକ ଓ ଅର୍ଥନୈତିକ ସ୍ୱାତନ୍ତ୍ର୍ୟ ବ୍ୟତିରେକ ରାଜନୈତିକ ସ୍ୱାଧୀନତା ମୂଲ୍ୟହୀନ । ତେଣୁ ସାହୁକାରମାନଙ୍କ ଲୋଲୁପ ଦୃଷ୍ଟିରୁ ସମାଜକୁ ରକ୍ଷା କରିବାକୁ ନେତାଙ୍କୁ ସଚେତନ କରିବା ଉଦ୍ଦେଶ୍ୟରେ ସେ ପ୍ରକାଶ କରିଥିଲେ ।

'କି ହେବ ସ୍ୱରାଜ୍ୟଘେନି ଯେବେ ମୋର ନପୂରେ ପେଟ
ଖଟିଖଟି ମଲେଣି ମୂଲିଆ, ଚାଷୀ ତଥାପି ଦାନାକନା ନିଅଣ୍ଟ
ଅଧମାଣେ ଜମି ଜଣକା
କୋରଖରେ ସେ ପୁଣିବିକା'

ଜଣେ ସଂଗ୍ରାମୀ ପରିବାରର ଦାୟାଦ ରୂପେ କାନ୍ତକବି ଲକ୍ଷ୍ମୀକାନ୍ତ ଜାତୀୟ ମୁକ୍ତି ସଂଗ୍ରାମର ସ୍ୱତନ୍ତ୍ର ଦାବିଦାର କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କ ପରିବାରର ସମସ୍ତେ ଲବଣ ସତ୍ୟାଗ୍ରହରେ ଅଂଶ ଗ୍ରହଣ କରି କାରାବରଣ କରିଥିଲେ । କାନ୍ତକବିଙ୍କର ପ୍ରତିଟି ରକ୍ତ ବିନ୍ଦୁ ଥିଲା ଜାତୀୟ ମୁକ୍ତି ସଂଗ୍ରାମ ପ୍ରତି ସମର୍ପିତ ପରାଧୀନତା ଥିଲା ଭାରତୀୟ ଜାତୀୟ ଜୀବନର ଏକ ଗ୍ଲାନିକର ଅଧ୍ୟାୟ । କାନ୍ତକବି ଏ ଗ୍ଲାନିରୁ ଜାତିକୁ ମୁକ୍ତ କରିବାକୁ ତାଙ୍କର ସାରସ୍ୱତ ପ୍ରୟାସ ଜାରି ରଖି ଦୃଢ ସ୍ୱରରେ ଗାଇ ଉଠିଥିଲେ ।

‘ଜାତୀୟ ଜୀବନ ଆକାଶେ ଆସିଛି ବିଷାଦ ବଉଦମାଡି
କିଏ କାହିଁ ଅଛ ବୀର ସନ୍ତାନ ଆସରେ ଅଳସ ଛାଡି
ପୂର୍ଣ୍ଣ ଆହୂତ ଡାକ ପଡିଲାଣି ଆସଲୋ ସାଥିସଙ୍ଗିନୀ ।
ଆସ ବୀରମାତା ବୀରର ଘରଣୀ ଆସ ଆସ ରଣ ରଙ୍ଗିନୀ ।’

କବିଙ୍କ ରଚିତ ବହୁ କବିତାରେ ଜାତୀୟବାଦୀ କାବ୍ୟସ୍ୱର ସୁସ୍ପଷ୍ଟ ହୁଏ । ଓଡ଼ିଶାର ଗଣଜୀବନକୁ ଜାତୀୟତାର ମହାସ୍ରୋତରେ ସାମିଲ କରାଇବାରେ କବି ବୀର କିଶୋରଙ୍କ ଭୂମିକା ଅବିସ୍ମରଣୀୟ । ଜାତୀୟ କବି ବୀର କିଶୋର ଥିଲେ ମହାତ୍ମାଗାନ୍ଧୀଙ୍କର ପରମ ଅନୁଗାମୀ । ତାଙ୍କର ‘ରଣଭେରୀ’ ଓ ‘ଦୁନ୍ଦୁଭି’ ଜାତୀୟ ଜୀବନରେ ବିପ୍ଲବର ଭେରୀ ବଜାଇଥିଲା ବେଳେ ତତ୍କାଳୀନ ସରକାର ଏହି ସଙ୍କଳନଗୁଡିକୁ ବାଜ୍ୟାପ୍ତ କରିଦେଇଥିଲେ ।

କବି ସାମାଜିକ କୁସଂସ୍କାର ବିରୋଧରେ ଅତ୍ୟନ୍ତ ମର୍ମସ୍ପର୍ଶୀ ଭାଷାରେ ପ୍ରକାଶ କରିଛନ୍ତି ।

ୟାର୍ବାଦ ମନ୍ଦିରେ ଯୋଗୀ ଯେଉଁଦିନ ବୁଦ୍ଧ ଅବତାର ଧରି
ହରିଜନ ଦୁଃଖ ହରିବାକୁ ଯୋଗେ ବସିଲେ ଉପାସ କରି
ସେହିଦିନ କିଆଁ ବନ୍ଦୀଶାଳେ ମୋର ବନ୍ଧୁ ମୁହଁ ପଡିଲା ମନେ
ନୂଆ ବୋହୂପରି ଲୁଚି ରହିଥିଲା ମୋର ହୃଦୟ କବାଟ କୋଣେ ।

ଜାତୀୟତାର ପୃଷ୍ଠ ଭୂମିରେ ଜଣେ ଦରଦୀ ଗୀତିକାର ରୂପେ ବୀର କିଶୋର ନିଶ୍ଚୟ ନମସ୍ୟ ଓ ସ୍ମରଣୀୟ ହୋଇ ରହିବେ ।

ଯେତେବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଭାରତ ମିତ୍ରପକ୍ଷଙ୍କୁ ସମର୍ଥନ କରି ମଧ୍ୟ ନିଜ ଲକ୍ଷ୍ୟରେ ସଫଳ ହୋଇପାରି ନଥିଲା । ତେଣୁ ଗାନ୍ଧିଜୀ ସ୍ୱାଧୀନତା ପ୍ରାପ୍ତି ପାଇଁ ‘କର ବା ମର’ ଆହ୍ୱାନ ଦେଇଥିଲେ । ବାପୁଙ୍କର ମୁକ୍ତି ସଂଗ୍ରାମ ଓଡ଼ିଶାରେ ବାଂମୟ ପ୍ରତିଧ୍ୱନି ତୋଳିଥିଲା । କବିଙ୍କ ‘ପଞ୍ଚଜନ୍ୟ’ ଜାତୀୟ ଭାବୋଦ୍ଦୀପକ। କବି ତାଙ୍କର କାବ୍ୟ କଳାରେ ସାଉଁଟି ଆଣିଛନ୍ତି ନିଧି ମହାଳିକ, ଲକ୍ଷ୍ମଣ ନାୟକ, ମୂଷା, ଚାରୁ ଓ ରାମେଶ୍ୱର ଭଳି ପ୍ରାଣବଳୀ ଦେଉଥିବା ବ୍ୟକ୍ତିତ୍ୱମାନଙ୍କୁ ‘ସଂଗ୍ରାମୀ ଚିରକାଳ ମୃତ୍ୟୁଞ୍ଜୟୀ’ ଓ ଚେତନାର ଅନିର୍ବାଣ ଶିଖା ସେ । କବି ମହାପାତ୍ର ସମାଜର ବଡପଣ୍ଡାମାନଙ୍କ ବିପକ୍ଷରେ ନିଜ ଲେଖନୀରେ ପରିସ୍ଫୁଟ କରିଛନ୍ତି ।

‘ଆରେ ଡକେଇତ ପରଧନ ରଖାରେ ବଡଜାତି
ଶେଷଥର ପାଇଁ ଠିଆ ହୁଅ ଏଠି ଏ ରଣମାଟି ।
ଦେଖିବ ତୁମର କେଡେ ମଜବୁତ ମାରଣ କଳ
ତମେରେ ଦେଖିବ ଆମ ଦେହେ କେତେ ମାରିବା ବଳ ।

ଗାନ୍ଧିଜୀଙ୍କ ଅହିଂସା ସଂଗ୍ରାମ କବିଙ୍କୁ ଗଭୀର ଭାବରେ ଅନୁପ୍ରାଣିତ କରିଛି । ତାଙ୍କର କବିତା ସଂକଳନର ଅନେକ କବିତା ଗାନ୍ଧିଜୀଙ୍କ ପ୍ରତି ସମର୍ପିତ । ଯଦିଓ ଗାନ୍ଧୀ ଶରୀର ବଳରେ ବଳିୟାନ ନଥିଲେ ମାତ୍ର ଆତ୍ମବଳରେ ସେ ଥିଲେ ବଳିୟାନ । ତେଣୁ ଗାନ୍ଧୀଙ୍କ ପ୍ରତି ପ୍ରଣତି ଜଣାଇ ସେ ଲେଖନ୍ତି –

‘ତୁମେ ଶିଖାଉଛ ଦୁର୍ବଳ ଜନେ
ଆତ୍ମ ବା କବି ବଳ
ଶତ୍ରୁ ହୃଦୟରେ କରିବାର
ଅଭିନବ କୌଶଳ ।’

ସତ୍ୟ ଓ ଅହିଂସା ଗାନ୍ଧୀଙ୍କର ଦୁଇଟି ଫୁସଫୁସ ବୋଲି ପ୍ରକାଶ କରୁଥିଲେ ।

କବି ଶାନ୍ତିର ଜୟଗାନ କରି ଆହ୍ୱାନ କରିଥଲେ–

ଉଡାଅରେ ଚିରଶାନ୍ତି ଚିରାଳ ଏ ଜାତି ହୋଇବ ଧନ୍ୟ
ଏଇ ଶୁଣ ଶୁଭେ ନବରଙ୍ଗିତ ମୁକତି ପଞ୍ଚଜନ୍ୟ ।

ଏହିପରି ଭାବରେ ବିଭିନ୍ନ କବି ନିଜର ସ୍ୱକୀୟ କାବ୍ୟ କଳାରେ କାରାଗାରର ଲୌହ କବାଟ ଉନ୍ମୁକ୍ତ କରି ସ୍ୱାଧୀନତା ସଂଗ୍ରାମର ଫଲଗୁ ଧାର ପ୍ରତ୍ୟେକ ମୁକ୍ତିକାମୀ ନେତା ତଥା ଓଡ଼ିଆ ପ୍ରାଣରେ ପ୍ରବହମାନ କରି ଜାତିୟତା ମୁକ୍ତି ସଂଗ୍ରାମରେ ଝାସ ଦେବା ପାଇଁ ଆହ୍ୱାନ ଦେବା ସହ ଦେଶକୁ ସ୍ୱାଧୀନ କରାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ସମ୍ପାଦକ, ମାର୍ଗଦର୍ଶୀ
ମୋ– ୮୮୯୫୫୪୭୪୯୦

# ବିସ୍ମୃତ ସ୍ୱାଧୀନତା ସଂଗ୍ରାମୀ ଡାଃ ଏକ୍ରାମ ରସୁଲ

ହୁସେନ ରବିଗାନ୍ଧୀ

ଭାରତ ଆଜି ଅତ୍ୟନ୍ତ ଗର୍ବ ଓ ଗୌରବର ସହିତ ନିଜ ସ୍ୱାଧୀନତା ହାସଲର ୬୫ତମ ଜୟନ୍ତୀ ପାଳନ କରୁଛି । ବହୁ ଜଣା-ଅଜଣା ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଇତିହାସର ଫର୍ଦ୍ଦ ମଧ୍ୟରୁ ଉଦ୍ଧାର କରି ସେମାନଙ୍କ ସଂଗ୍ରାମୀ ବ୍ୟକ୍ତିତ୍ୱ ଓ ଲଢୁଆ କାର୍ଯ୍ୟକଳାପରୁ ପ୍ରେରଣା ତଥା ଶିକ୍ଷା ଘେନିବା ପାଇଁ ନୂତନ ପିଢିକୁ ପ୍ରୋତ୍ସାହିତ କରାଯାଉଛି । ଉଭୟ ସରକାରୀ ଓ ବେସରକାରୀ ସ୍ତରରେ ଏବଂ ଗଣମାଧ୍ୟମଗୁଡିକ ଜରିଆରେ ସେଇ ସ୍ୱାଧୀନତା ସଂଗ୍ରାମୀ ତଥା ସେମାନଙ୍କ ସମୟର ଅଗ୍ନିମୟ ସଂଗ୍ରାମର ଗାଥାକୁ ପୁନଃ ଉଜ୍ଜୀବିତ କରାଯାଇ ସମଗ୍ର ଦେଶ ସମ୍ମୁଖରେ ପ୍ରସ୍ତୁତ କରାଯାଉଛି । ଜୀବିତ ସଂଗ୍ରାମୀମାନଙ୍କୁ ଯଥୋଚିତ ସମ୍ମାନ ଏବଂ ମୃତ ସଂଗ୍ରାମୀମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ଭାବାବେଗର ସହ ଶ୍ରଦ୍ଧାସୁମନ ଅର୍ପଣ କରାଯାଉଛି, ଏହା ଏକ ଶୁଭଙ୍କରୀ ଲକ୍ଷଣ ।

କିନ୍ତୁ ସ୍ୱାଧୀନତାର ଏହି ୬୫ତମ ବାର୍ଷିକ ଜୟନ୍ତୀ ଅବସରରେ ଏପରି କେତେକ ଅମର ବ୍ୟକ୍ତିତ୍ୱଙ୍କ ସମ୍ପର୍କରେ ଆଦୌ ଆଲୋଚନା ହେଉନାହିଁ, ଯେଉଁମାନେ କି ଏକଦା ଭାରତବର୍ଷରେ ଗାନ୍ଧୀବାଦୀ ଆନ୍ଦୋଳନର ଶୀର୍ଷସ୍ଥାନ ଅଧିକାର କରି ବ୍ରିଟିଶ୍ ରାଜଶକ୍ତି ଦ୍ୱାରା ଲାଞ୍ଛିତ ଓ କାରାଗାରରେ ନିକ୍ଷେପିତ ହୋଇ ଘୋର ଦାରିଦ୍ର୍ୟ, ଅଭାବ, ଅନଟନ ଭିତରେ ପ୍ରାଣତ୍ୟାଗ କରିଥିଲେ । ସେମାନେ ନିଜର ସର୍ବସ୍ୱ ତ୍ୟାଗ କରି, ନିଜ ପରିବାରଜନଙ୍କୁ କ୍ଷୁଧା ଓ ଦାରିଦ୍ର୍ୟ ମଧ୍ୟକୁ ଠେଲି ମାତୃଭୂମିର ମୁକ୍ତି ପାଇଁ ପ୍ରାଣପାତ କରିଯାଇଛନ୍ତି । ଯେହେତୁ ସେମାନେ ସଂଖ୍ୟାଲଘୁ ସମ୍ପ୍ରଦାୟର ବ୍ୟକ୍ତି, ତେଣୁ ସଂଖ୍ୟାଗୁରୁ ସମ୍ପ୍ରଦାୟ ସେମାନଙ୍କୁ ସ୍ମରଣ କରିବାକୁ ଆବଶ୍ୟକ ମନେ କରିନାହିଁ । ସରକାରୀ ଓ ବେସରକାରୀ - ଉଭୟ ସ୍ତରରେ ସେମାନେ ଅବହେଳିତ ଏବଂ ବିସ୍ମୃତ ହୋଇ ରହିଯାଇଛନ୍ତି । ଆଜିର ଏଇ ଗୌରବାନ୍ୱିତ ଓ ମହିମା ମଣ୍ଡିତ ଅବସରରେ ଯେତେବେଳେ ଆମେ ଆମ ମୁକ୍ତିର ୬୫ତମ ଜୟନ୍ତୀ ପାଳନ କରୁଅଛୁ, ସେତେବେଳେ ଏହି ବିସ୍ମୃତ ସ୍ୱାଧୀନତାର ମହାନ ସିପାହୀ ତଥା ଦେଶମାତୃକାର ସୁଯୋଗ୍ୟ ସନ୍ତାନମାନଙ୍କୁ ଉଚିତ୍ ସମ୍ମାନ ନଜଣାଇଲେ ଇତିହାସ ନିକଟରେ ଆମେ ଅପରାଧୀ ହୋଇ ରହିଯିବୁ ।

ଓଡ଼ିଶାର ସ୍ୱାଧୀନତା ସଂଗ୍ରାମରେ ଏହିପରି କତିପୟ ମହାନ ବ୍ୟକ୍ତିତ୍ୱଙ୍କ ସମ୍ପର୍କରେ ଆଲୋଚନା ନହୋଇଥିବା ପରିତାପର ବିଷୟ । ଓଡ଼ିଶାର ମୁସଲମାନ ସମ୍ପ୍ରଦାୟରୁ ଡାକ୍ତର ଏକ୍ରାମ ରସୁଲ, ସ୍ୱର୍ଗତଃ ମହମ୍ମଦ ହନିଫ୍, ସ୍ୱର୍ଗତଃ ମୌଲାନା ଅତହର୍ ଏବଂ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଅନ୍ୟତମ ମହାନ୍ ବିନ୍ଧାଣୀ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଅନନ୍ୟ ସହଯୋଗୀ ସ୍ୱର୍ଗତଃ ଲତିଫୁର ରହମାନ୍, ଆଡ୍‌ଭୋକେଟ୍ ଓ ସ୍ୱର୍ଗତଃ ଅବଦୁସ୍ ଶୋଭାନ ଖାଁ ଆଡ୍‌ଭୋଟେ୍‌ଙ୍କର ସ୍ୱାଧୀନତା ସଂଗ୍ରାମ ପ୍ରତି ଥିବା ଅବଦାନକୁ ଓଡ଼ିଶା ଆଜି ଭୁଲାଇ ଦେବାକୁ ବସିଛି ।

ଗୋଟିଏ ଛୋଟିଆ ପ୍ରବନ୍ଧରେ ଏ ସମସ୍ତ ମହାନ୍ ଦେଶପ୍ରେମୀ ମୁକ୍ତି ଯୋଦ୍ଧାମାନଙ୍କ ସମ୍ପର୍କରେ ଲେଖିବା ଆଦୌ ସମ୍ଭବପର ନୁହେଁ, ଏ ସମସ୍ତଙ୍କ ଜୀବନୀ ଏକ ଏକ ଗ୍ରନ୍ଥ । ତଥାପି ଏଇ ପ୍ରବନ୍ଧରେ ମୁଁ କେବଳ ଡାକ୍ତର ଏକ୍ରାମ ରସୁଲଙ୍କ ଜୀବନୀ ପ୍ରତି କିଞ୍ଚିତ ଆଲୋଚନା କରୁଅଛି । ଓଡ଼ିଶାର ମୁସଲିମ୍ ସମ୍ପ୍ରଦାୟ ପ୍ରଦେଶର ଅନ୍ୟାନ୍ୟ ସମ୍ପ୍ରଦାୟ ତୁଳନାରେ ସଂଖ୍ୟାରେ ଅତ୍ୟନ୍ତ ନଗଣ୍ୟ । ୧୯୧୧ର ଜନଗଣନା ଅନୁସାରେ ଓଡ଼ିଶାରେ ମାତ୍ର ଶତକଡା ୩ ଭାଗ ଇସ୍ଲାମ ଧର୍ମାବଲମ୍ବୀ ଲୋକେ ବାସ କରନ୍ତି । ସେମାନେ ମୁଖ୍ୟତଃ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଅଧିକ ବାସ କରିଥାନ୍ତି, ଯେଉଁ ଅଞ୍ଚଳକୁ 'ମୋଗଲବନ୍ଦୀ' ଅଞ୍ଚଳ ବୋଲି କୁହାଯାଏ । ପୂର୍ବତନ ଗଡଜାତମାନଙ୍କରେ ଇସ୍ଲାମ ଧର୍ମାବଲମ୍ବୀଙ୍କ ସଂଖ୍ୟା ଅତି ନଗଣ୍ୟ ।

କଟକ ଜିଲ୍ଲାର ସାଲେପୁର ଥାନା ଅନ୍ତର୍ଗତ 'ସୁଂଗୁଡା' ନାମକ ପ୍ରଗଣାରେ 'ଦରିଆପୁର' ଗ୍ରାମରେ ୧୮୭୩ ଖ୍ରୀଷ୍ଟାବ୍ଦରେ ଏକ

ଶିକ୍ଷିତ ପରିବାରରେ ଡାକ୍ତର ଏକ୍ରାମ ରସୁଲ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତାଙ୍କ ନାମ ମୌଲାନା ସୟଦ୍ ଅତାଉଲ୍ଲା । କଲିକତା ମେଡିକାଲ୍ ସ୍କୁଲରୁ ସଫଳତାର ସହ ଡାକ୍ତରୀ ପାଠ୍ୟକ୍ରମ ଶେଷ କରି ସେ ଓଡ଼ିଶା ଫେରିଲେ ଏବଂ କଟକଠାରେ ନିଜର ଚିକିତ୍ସା ବ୍ୟବସାୟ ଆରମ୍ଭ କଲେ । ଏଇ ଚିକିତ୍ସା ବ୍ୟବସାୟରେ ଖୁବ୍ ଅଳ୍ପ ଦିନରେ ସେ ଜଣେ ସଫଳ ଚିକିତ୍ସକ ଭାବେ ବ୍ରିଟିଶ ଓଡ଼ିଶାରେ ସୁନାମ ଅର୍ଜନ କରିଥିଲେ । କଟକରେ ସେ କେଶରପୁରଠାରେ ଘର ଓ ଡାକ୍ତରଖାନା ତିଆରି କରିଥିଲେ । ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରୁ ଫେରି ଜାତୀୟ କଂଗ୍ରେସର ନେତୃତ୍ୱ ଗ୍ରହଣ କରିବା ପରେ ୧୯୨୦ରେ ଗାନ୍ଧୀ ଦର୍ଶନରେ ଉଦ୍‌ବୁଦ୍ଧ ହୋଇ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ 'ଉତ୍କଳ ପ୍ରଦେଶ କଂଗ୍ରେସ କମିଟି' ଗଠନ କରିବାରେ ମୁଖ୍ୟ ଭୂମିକା ନେଇଥିଲେ । ୧୯୨୦ରେ ଜାତୀୟ କଂଗ୍ରେସର ନାଗପୁର ଅଧିବେଶନରୁ ଫେରି ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଗଠିତ ହୋଇଥିଲା । ଉତ୍କଳମଣି ଗୋପବନ୍ଧୁ ଏହାର ପ୍ରଥମ ସଭାପତି ରୂପେ ଦାୟିତ୍ୱ ଗ୍ରହଣ କରିଥିଲେ । ସେତେବେଳେ ନାଗପୁର କଂଗ୍ରେସ ଅଧିବେଶନରୁ ତାଙ୍କ ସହିତ ଫେରିଥିବା ଡାକ୍ତର ଏକ୍ରାମ ରସୁଲଙ୍କୁ ଉତ୍କଳମଣି ଗୋପବନ୍ଧୁ ପ୍ରଥମ ଉପ-ସଭାପତି ଆସନ ପ୍ରଦାନ କରିଥିଲେ । ଦୁଃଖର କଥା, ଏବର ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ସ୍ୱାଧୀନତାର ଦୀର୍ଘବର୍ଷ ପରେ ମଧ୍ୟ ନିଜର ପ୍ରଥମ ପ୍ରାଦେଶିକ ଉପସଭାପତି ତଥା ଓଡ଼ିଶାର ସଂଖ୍ୟାଲଘୁ ସମ୍ପ୍ରଦାୟର ମହାନ୍ ନେତା ଡାକ୍ତର ଏକ୍ରାମ ରସୁଲଙ୍କୁ ପାଶୋରି ଦେବା ଏକ ଐତିହାସିକ ଅପରାଧ ବ୍ୟତୀତ ଆଉ କ'ଣ ହୋଇପାରେ ?

ଉତ୍କଳମଣି ଗୋପବନ୍ଧୁଙ୍କ ସହିତ କାନ୍ଧକୁ କାନ୍ଧ ମିଳାଇ ଡାକ୍ତର ରସୁଲ ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିଥିଲେ । ଆଇନ ଅମାନ୍ୟ ସତ୍ୟାଗ୍ରହରେ ଯୋଗଦେଇ ସର୍ବପ୍ରଥମେ ସେ ୧୯୨୩ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ ସରକାର ଦ୍ୱାରା ବନ୍ଦୀ ହୋଇ ଏକବର୍ଷ ଯାଏଁ ବିହାରର 'ହଜାରୀବାଗ' ଜେଲ୍‌ରେ ରହିଥିଲେ । ଜେଲ୍‌ରୁ ଖଲାସ ହେବା ପରେ ନିଜର ଚିକିତ୍ସା ବ୍ୟବସାୟକୁ ତ୍ୟାଗ କରି ପୂରା ସମୟ ସେ ଗାନ୍ଧିଜୀଙ୍କ ବାଣୀ ପ୍ରଚାର କରିବାରେ ଲାଗିପଡିଲେ । ଓଡ଼ିଶାର ପୁରପଲ୍ଲୀରେ ବୁଲିବୁଲି ସେ ଗାନ୍ଧୀବାଣୀ ଓ କଂଗ୍ରେସର ବାର୍ତ୍ତା ପ୍ରଚାର କରିଥଲେ । ବିଭିନ୍ନ ସତ୍ୟାଗ୍ରହରେ ତାଙ୍କୁ ବାରମ୍ବାର ଗିରଫ କରାଯାଇଥିଲା । ଏପରିକି ତାଙ୍କର କଟକ କେଶରପୁରସ୍ଥିତ ବାସଗୃହକୁ ମଧ୍ୟ ସରକାର ବାଜ୍ୟାପ୍ତ କରି ନିଲାମ କରି ଦେଇଥିଲେ । ତାଙ୍କର ପରିବାର ଘୋର ଆର୍ଥିକ ଦୁରବସ୍ଥାର ସମ୍ମୁଖୀନ ହୋଇ ଅତି ଦାରୁଣ ଦୁଃଖଦ ପରିସ୍ଥିତି ମଧ୍ୟ ଦେଇ କାଳାତିପାତ କରୁଥିଲେ ।

ତତ୍କାଳୀନ ଜାତୀୟ କଂଗ୍ରେସର ତୁଙ୍ଗନେତା ତଥା ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍‌ଙ୍କ ପିତା ପଣ୍ଡିତ ମୋତିଲାଲ ନେହେରୁ, ଡାକ୍ତର ରସୁଲଙ୍କର ଦୟନୀୟ ସ୍ଥିତି ସମ୍ପର୍କରେ ଖବର ପାଇ ତାଙ୍କ ପରିବାରର ଭରଣପୋଷଣ ପାଇଁ କିଛି ଆର୍ଥିକ ସାହାଯ୍ୟ ପ୍ରେରଣ କରିଥିଲେ । ମାତ୍ର ଜେଲ୍ ଭିତରେ ଥିବା ଡାକ୍ତର ରସୁଲ ବିନମ୍ରତା ସହିତ ପଣ୍ଡିତ ମୋତିଲାଲଙ୍କର ଆର୍ଥିକ ସହାୟତା ନେବାକୁ ମନା କରି କହିଥିଲେ- ଦେଶର ସ୍ୱାଧୀନତା ପାଇଁ ଲଢୁଥିବା ଧର୍ମଯୋଦ୍ଧାମାନେ କାହାରିଠାରୁ ସାହାଯ୍ୟ ନେଲେ, ତାହା ପାରିଶ୍ରମିକ ହୋଇଯିବ ଏବଂ ଧର୍ମଯୁଦ୍ଧରେ ପାରିଶ୍ରମିକ ଗ୍ରହଣ କରିବା ଇସ୍ଲାମଧର୍ମରେ ପାପ ଅଟେ। ଧୈର୍ଯ୍ୟ ଓ ସାହସର ସହିତ ଏହି ଧର୍ମଯୁଦ୍ଧରେ ମୁଁ ସମ୍ମିଳିତ ହୋଇଛି ଏବଂ ଦେଶ ମାତୃକାର ମୁକ୍ତି ହିଁ ଆମପରି ସିପାହୀର ଏକମାତ୍ର ପାରିଶ୍ରମିକ ।

ଡାକ୍ତର ସୟଦ ଏକ୍ରାମ ରସୁଲ କେବଳ ଜଣେ ମହାନ୍ ସ୍ୱାଧୀନତା ସଂଗ୍ରାମୀ ନଥିଲେ, ଅନେକଗୁଡିଏ ଗଠନମୂଳକ କାର୍ଯ୍ୟକ୍ରମ ସହିତ ମଧ୍ୟ ସେ ସଂଶ୍ଳିଷ୍ଟଥିଲେ, ସେ ସମୟର ଓଡ଼ିଶାର ମୁସଲିମ ସମ୍ପ୍ରଦାୟ ଶିକ୍ଷା ଏବଂ ଅର୍ଥନୀତି, ଉଭୟ କ୍ଷେତ୍ରରେ ଅତି ପଛରେ ପଡିଥିଲେ, ଏବେବି ଏହି ସମ୍ପ୍ରଦାୟର ଆର୍ଥିକ ଓ ଶିକ୍ଷା କ୍ଷେତ୍ରରେ ଅଗ୍ରଗତି ଅନ୍ୟମାନଙ୍କ ତୁଳନାରେ ଯଥେଷ୍ଟ ପଛରେ ରହିଛି । ଏହି କଥାକୁ ହୃଦୟଙ୍ଗମ କରି ଡାକ୍ତର ରସୁଲ ନିଜ ଜନ୍ମସ୍ଥାନ ସୁଂଗୁଡା ପ୍ରଗଣାରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠା କରିଥିଲେ । ଯାହାକୁ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ଡାକ୍ତର ରସୁଲଙ୍କର ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ସହଯୋଦ୍ଧା ଡଃ ହରେକୃଷ୍ଣ ମହତାବ ପରବର୍ତ୍ତୀ କାଳରେ 'ଡାଃ ଏକ୍ରାମ ରସୁଲ ହାଇସ୍କୁଲ' ରୂପେ ନାମକରଣ କରିଥିଲେ । ସେ ସୁଂଗୁଡାଠାରେ ଏକ ଘରୋଇ ଡାକ୍ତରଖାନା ମଧ୍ୟ ପ୍ରତିଷ୍ଠା କରିଥିଲେ ।

ଗାନ୍ଧୀବାଦୀ ଦର୍ଶନରେ ଉଦ୍‌ବୁଦ୍ଧ ହୋଇ ସେ ନିଜ ଗ୍ରାମରେ ଖଦୀ କେନ୍ଦ୍ରମାନ ପ୍ରତିଷ୍ଠା କରି ଗରିବ ମୁସଲମାନ ମହିଳାମାନଙ୍କୁ ଖଦୀ ସୂତାକାଟି ଉପାର୍ଜନକ୍ଷମ ହେବାର ପ୍ରେରଣା ଦେଇଥିଲେ । ଡାଃ ରସୁଲ ତାଙ୍କର ମୃତ୍ୟୁ ଯାଏଁ ଜିନ୍ନାଙ୍କର ଦୁଇ ଜାତି ତତ୍ତ୍ୱକୁ ଘୋର ବିରୋଧ କରୁଥିଲେ । ତାଙ୍କ ମତରେ ଭାରତବର୍ଷ ଏକ ଓ ଅବିଚ୍ଛିନ୍ନ ଅଟେ ଏବଂ ଉଭୟ ହିନ୍ଦୁ ଓ ମୁସଲମାନ ଏହାର ଦୁଇଟି

ଆଖି ସଦୃଶ ଅଟନ୍ତି । ଅସ୍ପୃଶ୍ୟତା ନିବାରଣ କ୍ଷେତ୍ରରେ ମଧ୍ୟ ସେ ଗାନ୍ଧିଜୀଙ୍କ ଆଦର୍ଶକୁ ଆପଣେଇ ଥିଲେ ଏବଂ ସାଲେପୁର ଅଞ୍ଚଳରେ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନରେ ଯୋଗଦେଇ ଉଚ୍ଚବର୍ଗର ଲୋକମାନଙ୍କଠାରୁ ବହୁ ଲାଞ୍ଛନା ତଥା ନିର୍ଯାତନା ସହ୍ୟ କରିଥିଲେ । ରାଇସୁଙ୍ଗୁଡା ଅଞ୍ଚଳର କେତେକ ଜମିଦାରଙ୍କ ଗୁଣ୍ଡାମାନଙ୍କଠାରୁ ସେ ଶାରୀରିକ ନିର୍ଯାତନା ମଧ୍ୟ ସହ୍ୟ କରିଥିଲେ । ମାତ୍ର ଡାଃ ଏକ୍ରାମ ରସୁଲଙ୍କର ଗାନ୍ଧିଜୀଙ୍କ ଆଦର୍ଶରେ ନିଷ୍ଠା ଓ ଏକାଗ୍ରତା ଦେଖି ଏମାନେ ତାଙ୍କଠାରୁ କ୍ଷମା ପ୍ରାର୍ଥନା କରିଥିଲେ ଏବଂ କଂଗ୍ରେସ ଆନ୍ଦୋଳନରେ ଯୋଗଦାନ କରିଥିଲେ ।

ଏହି ମହାନ୍ ସଂଗ୍ରାମୀ ଡାଃ ରସୁଲ ସ୍ୱାଧୀନତାର ଶତଦଳ ପ୍ରସ୍ଫୁଟିତ ହେବାଯାଏଁ ବଞ୍ଚିନଥିଲେ । ବାରମ୍ବାର ଜେଲ୍ ଯିବା ଏବଂ ପୋଲିସର ନିର୍ଯାତନା ହେତୁ ଶାରୀରିକ ଓ ମାନସିକ ଆଘାତ ପାଇ ଘୋର ଆର୍ଥିକ ଅଭାବ ଅନଟନ ଭିତରେ ୧୯୪୩ ସାଲ୍‌ରେ ଅବେଳରେ ସ୍ୱର୍ଗାରୋହଣ କରିଥିଲେ ।

ଏହି ମହାନ୍ ଦେଶ ଭକ୍ତଙ୍କୁ ବିଳମ୍ବରେ ହେଲେବି ଯଦି ସରକାରୀ ଓ ବେସରକାରୀ ସ୍ୱୀକୃତି ମିଳିପାରନ୍ତା, ତେବେ ଦେଶମାତୃକାର ସେବାରେ ନିଜକୁ ସମର୍ପଣ କରିଥିବା ଏହି ଅମର ସେନାନୀର ଆତ୍ମା ଅନ୍ତତଃ ଶାନ୍ତି ପାଇପାରନ୍ତା । ଏଥିପାଇଁ ରାଜ୍ୟ ସରକାରଙ୍କର ଆନ୍ତରିକତା ଓ ଆଗ୍ରହ ରହିଲେ ତାଙ୍କ ନାମରେ କଟକ ବା ଭୁବନେଶ୍ୱରଠାରେ କୌଣସି ରାସ୍ତାକୁ ବା କୌଣସି ଅଞ୍ଚଳକୁ ନାମିତ କରାଯାଇ ତାଙ୍କ ସ୍ମୃତିକୁ ସୁରକ୍ଷା ଦିଆଯାଇପାରନ୍ତା ।

ଅମିନ୍ ଷ୍ଟ୍ରୀଟ୍, ଆଜମ୍‌ଖାନ୍ ବଜାର,
କଟକ-୧

## ଚାଷୀଙ୍କ ପାଇଁ କୋରାପୁଟ ଜିଲ୍ଲାର କୁନ୍ଦୁଲିଠାରେ ଶୀତଳ ଭଣ୍ଡାର ଖୁବ୍‌ଶୀଘ୍ର ପ୍ରତିଷ୍ଠା କରାଯିବ :କୃଷିମନ୍ତ୍ରୀ

କୋରାପୁଟ ଜିଲ୍ଲାର କୁନ୍ଦୁଲିଠାରେ ଜିଲ୍ଲାର ପରିବା ଚାଷୀମାନଙ୍କ ପାଇଁ ଖୁବ୍‌ଶୀଘ୍ର ଏକ ଶୀତଳ ଭଣ୍ଡାର ପ୍ରତିଷ୍ଠା କରାଯିବ ବୋଲି କୃଷିମନ୍ତ୍ରୀ ଶ୍ରୀ ପ୍ରଦୀପ ମହାରଥୀ ଘୋଷଣା କରିଛନ୍ତି । କୃଷିମନ୍ତ୍ରୀ ଶ୍ରୀ ପ୍ରଦୀପ ମହାରଥୀ କୋରାପୁଟ ଜିଲ୍ଲା ଗସ୍ତରେ ଆସି ଜୟପୁର ବ୍ଲକ୍ ଅନ୍ତର୍ଗତ ବାରିଣୀପୁଟ ପଞ୍ଚାୟତର ବଡିଗୁଡା ଗ୍ରାମର ଚାଷୀମାନଙ୍କ ସହ ସାକ୍ଷାତ ଆଲୋଚନା କରି କହିଥିଲେ ଯେ କୁନ୍ଦୁଲି ଓ ସେମିଳିଗୁଡା ହାଟରୁ ପ୍ରତ୍ୟହ ଟ୍ରକ ଟ୍ରକ ପନିପରିବା ଆନ୍ଧ୍ରକୁ ଯାଉଥିବା ଓ ସେଠାରୁ ଗାଡି ପରିବର୍ତ୍ତନ କରି ପୁଣି ଓଡ଼ିଶା ବଜାରରେ ତାହା ଚଢାଦରରେ ବିକ୍ରି କରାଯିବା ଉଦ୍‌ବେଗର ବିଷୟ । ତେଣୁ ଜିଲ୍ଲାର ଚାଷୀମାନଙ୍କ ସୁବିଧା ପାଇଁ କୁନ୍ଦୁଲିଠାରେ ଶୀତଳ ଭଣ୍ଡାର ପ୍ରତିଷ୍ଠା କରିବାକୁ ଯୋଜନା କରାଯାଉଛି । ପରିବା ଚାଷୀମାନଙ୍କ ପାଇଁ ଉପଯୁକ୍ତ ବଜାର ସୃଷ୍ଟି କରାଯିବା ନିତାନ୍ତ ଆବଶ୍ୟକ । ଚାଷୀ ଓ ଉପଭୋକ୍ତାମାନଙ୍କ ସୁବିଧାକୁ ବିଚାରକୁ ନେଇ ଜଣେ କୃଷି ଅଧିକାରୀଙ୍କୁ ପନିପରିବାର ବିପଣନ ବ୍ୟବସ୍ଥା ତଦାରଖ କରିବାକୁ ଦାୟିତ୍ୱ ଦିଆଯିବ ଓ ସେ କୃଷି ବିଭାଗ ଓ ଚାଷୀମାନଙ୍କ ସହିତ ସିଧାସଳଖ ସମ୍ପର୍କ ରକ୍ଷା କରିବେ । ବେସରକାରୀ କ୍ଷେତ୍ରରେ ଶୀତଳ ଭଣ୍ଡାର ପ୍ରତିଷ୍ଠା କଲେ ସରକାର ଶତକଡା ୪୦ ଭାଗ ରିହାତି ଯୋଗାଇ ଦେବେ । ଜୟପୁର ନିକଟସ୍ଥ ବିଜୁ କଲୋନୀର ଭାନୁ ମାଳି ନାମକ ଜଣେ ମହିଳା ଚାଷୀଙ୍କ ଘରେ ପହଞ୍ଚି ସେହି ଗ୍ରାମରେ ବର୍ତ୍ତମାନ ସୁଦ୍ଧା ବିଜୁଳି ଆଲୁଅ, ପାନୀୟ ଜଳ ଓ ପକ୍କା ରାସ୍ତା ନଥିବା ଜାଣି ଅସନ୍ତୋଷ ପ୍ରକାଶ କରିଥିଲେ । ବିଜୁ ଗ୍ରାମ ଜ୍ୟୋତି ଯୋଜନାରେ ଉକ୍ତ ଗ୍ରାମକୁ ସାମିଲ କରିବା ପାଇଁ ସେ ଜିଲ୍ଲା ପ୍ରଶାସନକୁ ନିର୍ଦ୍ଦେଶ ଦେଇଥିଲେ । କୁନ୍ଦୁଲି ହାଟରୁ କିଣିଥିବା ଫୁଲକୋବି ଭାନୁକୁ ଦେଇଥିବା ବେଳେ ତା'ଠାରୁ ସତେଜ ମୂଳା ଗ୍ରହଣ କରିଥିଲେ । କୃଷି ଅଧିକାରୀମାନେ ଗାଁକୁ ଆସୁଛନ୍ତି କି ନାହିଁ ମନ୍ତ୍ରୀ ଶ୍ରୀ ମହାରଥୀ ପଚାରି ବୁଝିଥିଲେ । ମାସକୁ ଥରେ ଆସୁଥିବା ବିଷୟ ମନ୍ତ୍ରୀ ଜାଣିବାକୁ ପାଇଥିଲେ । ପ୍ରତି ସପ୍ତାହରେ ଗାଁକୁ ଗାଁ ବୁଲିବାକୁ ସେ କର୍ମଚାରୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଶ୍ରୀନିବାସ ରାଓ ନାମକ ଜଣେ ଶିକ୍ଷକ ନିରୀହ ଆଦିବାସୀମାନଙ୍କ ପନିପରିବାକୁ କମ୍ ଦରରେ କିଣି ଆନ୍ଧ୍ର ଚାଲାଣ କରୁଥିବାରୁ, କୁନ୍ଦୁଲି ହାଟ ମଧ୍ୟରେ ଜଣେ ବ୍ୟବସାୟୀ ସାର ଚଢା ଦରରେ ବିକ୍ରି କରୁଥିବାରୁ ଦୁଇଜଣଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଜିଲ୍ଲାପାଳଙ୍କୁ କୃଷିମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ ।

କୃଷି ସଚିବ ଶ୍ରୀ ରଙ୍ଗଲାଲ ଜାମୁଦା, ନିର୍ଦ୍ଦେଶକ ଏସ୍. ଗୋପାଳନ, ଉଦ୍ୟାନ ବିଭାଗ ଯୁଗ୍ମ ସଚିବ ରମେଶ ଦାସ, ଆପିକଲ ଅଧ୍ୟକ୍ଷ ବାଳକୃଷ୍ଣ ରଥ, ବିଭାଗୀୟ ଅଧିକାରୀ, ଜିଲ୍ଲାସ୍ତରୀୟ ଅଧିକାରୀମାନେ ଉପସ୍ଥିତ ରହି ଚାଷୀମାନଙ୍କ ସମସ୍ତ ଅଭାବ ଅସୁବିଧା ଦୂର କରାଯିବ ବୋଲି କହିଥିଲେ ।

# ନୟାଗଡ଼ ପୃଷ୍ଠଭୂମିରେ ଭଞ୍ଜଙ୍କ ସମୟସୀମା

ଗୀତା ଦେବୀ

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର କାଳ ନିରୂପଣ କରିବାରେ ଓଡ଼ିଶାର ପଣ୍ଡିତମାନେ ଭିନ୍ନ ଭିନ୍ନ ମତ ପୋଷଣ କରିଥାଆନ୍ତି। ତେବେ ଭଞ୍ଜଙ୍କ ନୂଆଗଡ଼ ରହଣି ତଥା ରାଜପରିବାର ସହ ତାଙ୍କର ସମ୍ପୃକ୍ତି ଏହି କାଳ ନିରୂପଣରେ ଯେ ଏକ ନିର୍ଣ୍ଣୟାତ୍ମକ ଭୂମିକା ଗ୍ରହଣ କରିପାରେ ଏହାକୁ ଅସ୍ୱୀକାର କରାଯାଇନପାରେ ।

ଭଞ୍ଜଙ୍କ ସମୟସୀମା ନିର୍ଦ୍ଧାରଣ କରିବା ପୂର୍ବରୁ ତା.୧୮.୫.୯୭ରିଖ 'ସମାଜ'ରେ ଶ୍ରୀଯୁକ୍ତ ରଜତ କୁମାର କର ମହାଶୟଙ୍କ ଦ୍ୱାରା ଲିଖିତ 'ଭଞ୍ଜଙ୍କ ଜୀବନ କାଳ' ପ୍ରବନ୍ଧ ଉପରେ କିଞ୍ଚିତ ଆଲୋଚନା କରିବା ପ୍ରୟୋଜନ ମନେହୁଏ।

ଶ୍ରୀଯୁକ୍ତ କର 'ଲାବଣ୍ୟବତୀ' (ପ୍ରକାଶିତ ପୁସ୍ତକ)ର ଶେଷରେ ଥିବା ପଦାବଳୀ ଉଦ୍ଧାର କରିଛନ୍ତି। ତାହା ଏହିପରି –

''ଉପଇନ୍ଦ୍ର ଭଞ୍ଜ ମନ କୁମୁଦ
ବିଚିତ୍ର କର୍ମୀ ଶ୍ରୀରାମଚନ୍ଦ୍ର
ରଜନୀ ଦିବସେ ବିକାଶ କରି
ଅଧିକ ପଦ ଏଣୁ ବିହରି
ପ୍ରବନ୍ଧ ଦୁଇ ସହସ୍ର ତିନିଶ
ଷାଠିଏ ଏକ ପଦରେ ଶେଷ।''

ରାଜ୍ୟ ସଂଗ୍ରହାଳୟ ପୋଥି ବିଭାଗରେ ସଂରକ୍ଷିତ ବଡ଼ମ୍ବା ରାଜାଙ୍କଠାରୁ ପ୍ରାପ୍ତ ମଞ୍ଜୁଷା ରାଜବଂଶର ଏକ 'ଲାବଣ୍ୟବତୀ' ପୋଥି (ନଂ– ୦୨୧୯୨୭)ରେ ଏହା ବିଭିନ୍ନ ରୂପରେ ଲିଖିତ। ତାହା ଏହିପରି –

ଉପଇନ୍ଦ୍ର ଭଞ୍ଜ ଚିତ କୁମୁଦ
ବିଚିତ୍ର କର୍ମୀ ଶ୍ରୀରାମଚନ୍ଦ୍ର ।

ରଜନୀ ଦିବସ ବିଳାସ କରି
ଅଧିକ ପଦ ଏଣୁ ବିହରି ।

ପ୍ରବନ୍ଧ ଦୁଇ ସହସ୍ର ତିନିଶ
ଷାଠିଏ ଏକ ପଦରେ ଶେଷ ।

ଶ୍ରୀ ବୀର କେଶରୀ ପଞ୍ଚଶ ଅଙ୍କେ
ଏ ଗୀତ ପୂର୍ଣ୍ଣ ହେଲା ନିଃଶଙ୍କେ ।

ନୀଳକଣ୍ଠ ଭଞ୍ଜ ଜ୍ୟେଷ୍ଠ ତନୁଜ
ନାମ ମୋର ଉପଇନ୍ଦ୍ର ଭଞ୍ଜ ।

ତାରକ ମନ୍ତ୍ର ପରସାଦୁ କରି
କବିତ୍ୱ ପଣ ଉଦେ ମୋହରି ।

ପ୍ରଭୁ ରଘୁବଂଶ କଇରବ ଚନ୍ଦ୍ର
ସୀତା ନୟନ ଚକୋର ଚନ୍ଦ୍ର ।

ସୀତା ରାମ ଲକ୍ଷ୍ମଣ ଷଟପଦ
ପଦ୍ମେଣ ମୋ ମନ ଷଟପଦ ।

ସୁଜନମାନଙ୍କୁ ମୋର ଜଣାଣ
ଦୋଷ ନଧରିବ ମୋହର ପୁଣ ।

ପୋଥିରେ ଲିଖିତ 'ପଞ୍ଚଶ' ଅଙ୍କକୁ ଶ୍ରୀଯୁକ୍ତ କର ମହାଶୟ ବୀରକେଶରୀ ଦେବଙ୍କ '୨୫' ଅଙ୍କ ମନେ କରିଥିଲେ। (ପ୍ରକାଶ ଥାଉକି ବୀର କେଶରୀ ଦେବଙ୍କ '୨୫' ଅଙ୍କ ତା ୫.୯.୧୭୫୬ରୁ ତା.୨୫.୮.୧୭୫୭ରିଖ ପର୍ଯ୍ୟନ୍ତ ଚଳିଥିଲା ।) ତେଣୁ ପୂର୍ବରୁ କର ମହାଶୟ ଭଞ୍ଜଙ୍କ ଜୀବନକାଳ ଖ୍ରୀ. ୧୬୮୫ରୁ ଖ୍ରୀ. ୧୭୫୬ ମଧ୍ୟରେ ସୀମିତ କରିଥିଲେ । କିନ୍ତୁ ତା.୧୮.୫.୯୭ରିଖରେ 'ସମାଜ'ରେ ସେ ତାଙ୍କର ପୂର୍ବ

ମତ ପରିବର୍ତ୍ତନ କରି ଲେଖିଛନ୍ତି – ''ଦିବ୍ୟସିଂହ ଦେବ ବା ତାଙ୍କ ପରବର୍ତ୍ତୀ ହରେକୃଷ୍ଣ ଦେବଙ୍କ ସମୟରେ ପୁରୀରେ ଉପେନ୍ଦ୍ରଙ୍କ ଦେହାବସାନ ହୋଇଥିବା ସମ୍ଭବ ।'' କିନ୍ତୁ କେଉଁ ପୃଷ୍ଠଭୂମି ଉପରେ ନିର୍ଭର କରି ସେ ମହାଶୟ ଉକ୍ତ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି, ତାହା ଦର୍ଶାଇ ନାହାଁନ୍ତି । ପ୍ରକାଶ ଥାଉକି ହରେକୃଷ୍ଣ ଦେବଙ୍କ ସମୟ ହେଲା ଖ୍ରୀ. ୧୭୧୬ରୁ ୧୭୨୦ । ଅର୍ଥାତ୍ କର ମହାଶୟଙ୍କ ମତରେ ଭଞ୍ଜଙ୍କ ଆୟୁଷ '୩୫' ବର୍ଷ ।

ଶ୍ରୀ ବୀରକେଶରୀ ଦେବଙ୍କ '୨୫' ଅଙ୍କକୁ ପ୍ରତ୍ୟାଖ୍ୟାନ କରିବାର କାରଣ ସ୍ୱରୂପ ପୋଥିର ଅଧିକ ପଦଗୁଡ଼ିକ ନିମ୍ନମାନର ହୋଇଥିବାରୁ ଏହା ନକଲକାରୀଙ୍କ ସଂଯୋଗ ବୋଲି ମତ ଦେଇଛନ୍ତି ଶ୍ରୀଯୁକ୍ତ କର ।

ସର୍ବପ୍ରଥମେ ଏହି ବିରଳ ପୋଥିର ମୂଲ୍ୟବାନ ଉପାଦାନ (ଶ୍ରୀ ବୀରକେଶରୀ ଦେବଙ୍କ ନାମୋଲ୍ଲେଖ) ଲୋକଲୋଚନକୁ ଆଣିଥିବାରୁ ପୋଥି ବିଭାଗର ତତ୍‌କାଳୀନ କ୍ୟୁରେଟର ପଣ୍ଡିତ ନୀଳମଣି ମିଶ୍ର ଏବଂ ଅଧ୍ୟାପକ ରଜତ କୁମାର କର ଧନ୍ୟବାଦର ପାତ୍ର । ଅଧ୍ୟାପକ କରଙ୍କ ଆଲୋଚନା ପ୍ରତି ସମ୍ମାନ ବୋଧ ସହ ଏ ପ୍ରସଙ୍ଗରେ ଯତ୍‌ସାମାନ୍ୟ ପର୍ଯ୍ୟାଲୋଚନା କରାଯାଇପାରେ ।

ବର୍ତ୍ତମାନ ପୋଥିରେ ଲିଖିତ ଶେଷ ପଦଗୁଡ଼ିକୁ ତିନିଭାଗରେ ବିଭକ୍ତ କରାଯାଉ ।

ପ୍ରଥମ ଛ' ଧାଡ଼ି – ୧ମ ଭାଗ
୭ମ – ୮ମ ଧାଡ଼ି –୨ୟ ଭାଗ
୯ମ ଠାରୁ ଶେଷ ପର୍ଯ୍ୟନ୍ତ – ୩ୟ ଭାଗ

ପୋଥିର ୧ମ ଭାଗର ଧାଡ଼ିଗୁଡ଼ିକ ପ୍ରକାଶିତ ଲାବଣ୍ୟବତୀ ପୁସ୍ତକର ଶେଷ ଛ' ଧାଡ଼ି ସହ ପ୍ରାୟତଃ ସମାନ ।

ଦ୍ୱିତୀୟ ଭାଗର ପ୍ରଥମ ଧାଡ଼ି (୭ମ ଧାଡ଼ି)ରେ ଥିବା 'ପଞ୍ଚଶ' ଶବ୍ଦଟିକୁ ଶ୍ରୀଯୁକ୍ତ କର ମହାଶୟ 'ପଚିଶ' (୨୫) ବୋଲି ଧରିନେଇଥିଲେ । ଯେତେଦୂର ମନେହୁଏ, ଏହା 'ପଞ୍ଚମ' । ଲେଖନକାରମାନଙ୍କର ଭ୍ରମର କ୍ରମବିବର୍ତ୍ତନରେ –

(ପଞ୍ଚମ --- ପଞ୍ଚସ --- ପଞ୍ଚଶ) ଏହା 'ପଞ୍ଚଶ' ରୂପ ଧାରଣ କରିଅଛି । ଦ୍ୱିତୀୟ ଭାଗର ଦ୍ୱିତୀୟ ଧାଡ଼ିରେ ଥିବା 'ପୂର୍ଣ୍ଣ' ମଧ୍ୟ ଖଣ୍ଡିତ ମନେହୁଏ । ଏହା ସମ୍ପୂର୍ଣ୍ଣ ହୋଇଥିବା ସମ୍ଭବ । ଯେତେଦୂର ମନେହୁଏ ମୂଳପୋଥି ଏହିଠାରେ ଶେଷ କରାଯାଇଥିବ ।

ଏହା ପରଠାରୁ ଅର୍ଥାତ୍ ତୃତୀୟ ଭାଗରେ ସ୍ଥାନିତ ପଦଗୁଡ଼ିକ ନିକୃଷ୍ଟ ଲେଖନୀ ପ୍ରସୂତ ହୋଇଥିବାରୁ ଏହା ନିଶ୍ଚିତ ରୂପେ ଲେଖନକାରର ପ୍ରକ୍ଷେପ ।

ଦ୍ୱିତୀୟ ଭାଗରେ ଥିବା ପଦଟିକୁ ମୌଳିକ ବୋଲି ଧରାଗଲେ ଶ୍ରୀ ବୀରକେଶରୀ ଦେବଙ୍କର ପଞ୍ଚମ ଅଙ୍କରେ (ଖ୍ରୀ. ୩.୯.୧୭୩୯ରୁ ୨୩.୮.୧୭୪୦) ଭଞ୍ଜେ ଲାବଣ୍ୟବତୀ ଶେଷ କରିଥିବାରେ ପ୍ରଶ୍ନବାଚୀ ରହିବ ନାହିଁ ।

ବର୍ତ୍ତମାନ କବିଙ୍କର ଅନ୍ୟତମ ରଚନା 'ରସଲେଖା'କୁ ବିଚାର କରାଯାଉ । 'ରସଲେଖା'ରେ କବି କାବ୍ୟରଚନାର ସମୟ ସୂଚନା ନିମ୍ନମତେ ଦେଇଛନ୍ତି –

''ଦିବ୍ୟସିଂହ ଗଜପତି ଅଙ୍କ
ସପତବିଂଶତି ଶେଷ ଦିନେ
ଶେଷ ଏହୁ ଗୀତ ।'' (କେଦାର ନାଥ ମହାପାତ୍ର
ଖୁରୁଧା ଇତିହାସ – ପୃ ୧୪)

ଦିବ୍ୟସିଂହ ଗଜପତିଙ୍କର '୨୭' ଅଙ୍କ ତା ୪.୮.୧୭୦୯ ଠାରୁ ୨୩.୮.୧୭୧୦ ପର୍ଯ୍ୟନ୍ତ ଚଳିଥିଲା । ଅତଏବ ଗଜପତି ଦିବ୍ୟସିଂହ ଦେବଙ୍କ ସମୟରେ ଭଞ୍ଜେ ଜୀବିତ ଥିଲେ ।

ତେବେ ଭଞ୍ଜଙ୍କ କାଳ ନିର୍ଣ୍ଣୟରେ ଆଲୋଚକମାନଙ୍କର ଦୃଷ୍ଟି ଆକର୍ଷଣ କରିନଥିବା ଏକ ଉପାଦେୟ ଉପାଦାନକୁ ବର୍ତ୍ତମାନ ଆଲୋଚନାର ପରିସରଭୁକ୍ତ କରାଯାଉ । ଏହା ହେଲା ନୟାଗଡ଼ର ଐତିହାସିକ ଜୀବନ ସ୍ରୋତ ସହ ଭଞ୍ଜଙ୍କ ସମ୍ପୃକ୍ତି ।

କିମ୍ବଦନ୍ତୀ ତଥା 'ଭଞ୍ଜ ବଂଶାନୁଚରିତ' ଏବଂ 'ଭଞ୍ଜ ବଂଶାବଳୀ' (ଶ୍ରୀଯୁକ୍ତ ଚ୍ୟାଉ ପଟ୍ଟନାୟକ ଓ ମାଗୁଣି ଦାଶଙ୍କ ସମ୍ପାଦିତ) ନାମକ ଦୁଇଖଣ୍ଡି ପୋଥିକୁ ଆଧାର କରି ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ ଯେ ଉପେନ୍ଦ୍ରଙ୍କ ପିତା ନୀଳକଣ୍ଠ ଖ୍ରୀ ୧୭୦୩–୦୪ରେ ସପରିବାର ଘୁମୁସର ପରିତ୍ୟାଗ କରି ପ୍ରଥମେ ଧରାକୋଟ, ପରେ କୋଦଳା ଆଠଗଡ଼ ଏବଂ ସର୍ବଶେଷରେ ନୟାଗଡ଼ରେ ବସବାସ କରିଥିଲେ । ନୟାଗଡ଼ ତାଙ୍କର ମାତୁଳାଳୟ ଥିଲା ।

''...............

ନୂଆଗଡ଼ ମାଳିସାହି ଗ୍ରାମରେ

ରହିଲେ କୁଟୁମ୍ବ ଘେନି ସଜରେ ।''

(‘ଭଞ୍ଜ ବଂଶାବଳୀ’ ଉଦ୍ଧୃତାଂଶ ପଣ୍ଡିତ ନୀଳମଣି ମିଶ୍ର, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ପୃ-୧୨)

ବର୍ତ୍ତମାନ ପ୍ରଶ୍ନ ଉଠୁଛି ନୟାଗଡ଼ର କେଉଁ ରାଜା ୧୭୦୩-୪ରେ ନୀଳକଣ୍ଠ ତଥା ପରିବାରକୁ ଆତିଥ୍ୟ ପ୍ରଦାନ କରିଥିଲେ? ସେତେବେଳେ ଗଦାଧର ସିଂହ ମାନଧାତା (ଖ୍ରୀ: ୧୬୯୦ରୁ ୧୭୨୦) ନୟାଗଡ଼ର ରାଜାଥିଲେ । ରାଜା ଗଦାଧର ସିଂହ ନୀଳକଣ୍ଠଙ୍କ ମାତୁଳ ହୋଇଥିଲେ ତାଙ୍କର ମାତା ନୟାଗଡ଼ର ରାଜା ଗୋକୁଳେଶ୍ୱର ସିଂହଙ୍କ କନ୍ୟା ହୋଇଥିବା ଅଧିକତର ସଙ୍ଗତ ।

ଅତଏବ ନୟାଗଡ଼ରେ ମାଳିସାହି ରହଣିର ମାତ୍ର ଛଅ/ ସାତ ବର୍ଷ ବେଳକୁ ସେ ରସଲେଖା ସମ୍ପୂର୍ଣ୍ଣ କରିବାକୁ ସମର୍ଥ ହୋଇଥିଲେ ।

ଗଦାଧର ସିଂହ ମାନଧାତାଙ୍କ ପରେ ତାଙ୍କ ପୁତ୍ର ରାମଚନ୍ଦ୍ର ସିଂହ ମାନଧାତା (୧୭୨୦ - ୩୦) ଏବଂ ନାତି ଚନ୍ଦ୍ରଶେଖର ସିଂହ ମାନଧାତା (୧୭୩୦ - ୫୦) ନୟାଗଡ଼ର ଶାସନଭାର ଗ୍ରହଣ କଲେ । ଚନ୍ଦ୍ରଶେଖର ସିଂହ ରାଜା ହେଲା ବେଳକୁ ତାଙ୍କୁ ଯଦି ମାତ୍ର ୩୦ ବର୍ଷ ବୟସ ହୋଇଥିବ ତେବେ ଘୁମୁସର ବିଦ୍ରୋହ ଏବଂ ନୟାଗଡ଼ରେ ନୀଳକଣ୍ଠଙ୍କର ଆତିଥ୍ୟ ଗ୍ରହଣ, ତାଙ୍କ ବାଲ୍ୟକାଳରେ ଘଟିଥିବ । ଚନ୍ଦ୍ରଶେଖର ସିଂହ ରାଜା ହେଲା ବେଳକୁ ସବୁ ନାଟର ଗୋବର୍ଦ୍ଧନ ଘନଭଞ୍ଜ ଘୁମୁସରର ରାଜା ଥାଆନ୍ତି । କୌଣସି କୌଣସି କାରଣରୁ ଉଭୟଙ୍କ ମଧ୍ୟରେ ଥିବା ତିକ୍ତତା ବୃଦ୍ଧି ପାଇଁ ୧୭୩୬ ଖ୍ରୀ ବେଳକୁ ତାହା ଏକ ଭୟଙ୍କର ଯୁଦ୍ଧର କାରଣ ହୋଇଥିଲା । (ଗୀତାଦେବୀ - ନୟାଗଡ଼ ଘୁମୁସର ଅନ୍ତର୍ବିବାଦ (ହୃଦବାକ୍ୟ - ୧୯୯୩-୯୪) ଚନ୍ଦ୍ରଶେଖରଙ୍କ ସମୟରେ ଉପେନ୍ଦ୍ର ଲାବଣ୍ୟବତୀ ସମ୍ପୂର୍ଣ୍ଣ କରିଥିବା ସମ୍ଭବ ।

ଚନ୍ଦ୍ରଶେଖରଙ୍କ ପରେ ପୁତ୍ର ପୁରୁଷୋତ୍ତମ ସିଂହ ମାନଧାତା (ଖ୍ରୀ. ୧୭୫୦ - ୫୫) ନୟାଗଡ଼ର ରାଜା ହେଲେ । ଯେତେଦୂର ମନେହୁଏ ଉପେନ୍ଦ୍ର ଏହି ସମୟରେ ଶୋଭାବତୀ କାବ୍ୟ ରଚନା କରିଥିଲେ । ନୟାଗଡ଼ ରାଜବଂଶ ପ୍ରତି କୃତଜ୍ଞତାର ଚିହ୍ନ ସ୍ୱରୂପ ଏହାକୁ ପୁରୁଷୋତ୍ତମ ସିଂହ ମାନଧାତାଙ୍କ ନାମରେ ଭଣତି କରିଥିବା ମନେହୁଏ । ପୁରୁଷୋତ୍ତମ ସିଂହଙ୍କ ସମୟରେ ଭଞ୍ଜେ ଜୀବିତ ଥିବା ବିଷୟରେ ଓଡ଼ିଶାର କେତେକ ବିଦ୍ୱାନ ଏକମତ । ପୁରୁଷୋତ୍ତମ ସିଂହଙ୍କ ସମୟରେ ମରହଟ୍ଟାମାନେ ଓଡ଼ିଶା ଅଧିକାର (୧୭୫୧) କଲେ । ମରହଟ୍ଟାମାନଙ୍କର ଓଡ଼ିଶା ଆକ୍ରମଣ ସମୟକୁ ଭଞ୍ଜେ ଜୀବିତ ଥିଲେ ବୋଲି ପ୍ରଫେସର ଚିତ୍ତରଞ୍ଜନ ଦାସ ମତ ଦିଅନ୍ତି । (C.R. Das, qlimpse into Oriya literature p. 350) ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଭଞ୍ଜଙ୍କ ସମୟ ଖ୍ରୀ: ୧୬୮୮ରୁ ୧୭୫୧ ମଧ୍ୟରେ ସୀମିତ କରିଛନ୍ତି । (ଓଡ଼ିଆ ସାହିତ୍ୟର ଇତିହାସ, ଦ୍ୱିତୀୟ ଭାଗ, ପୃ ୩୪୩) । ପଣ୍ଡିତ ନୀଳମଣି ମିଶ୍ର ଭଞ୍ଜଙ୍କ ସମୟ ଖ୍ରୀ: ୧୬୮୫ରୁ ଖ୍ରୀ: ୧୭୫୫ ବୋଲି ଗ୍ରହଣ କରିଛନ୍ତି । ( ମିଶ୍ର - ପୃ ୩୮)

ରାଜା ପୁରୁଷୋତ୍ତମ ସିଂହ ଖୁବ୍ କମ୍ ସମୟ ଶାସନ କରି ମୃତ୍ୟୁବରଣ କରିବାରୁ ତାଙ୍କ ପୁତ୍ର ମୃତ୍ୟୁଞ୍ଜୟ ସିଂହ ରାଜା ହେଲେ (୧୭୫୫-୮୩) । ନୟାଗଡ଼ର ଉଭୟ ପ୍ରକାଶିତ ଏବଂ ପାଣ୍ଡୁଲିପି ଇତିହାସରୁ ଜଣାଯାଏ ଯେ - ଉପେନ୍ଦ୍ର ମୃତ୍ୟୁଞ୍ଜୟଙ୍କ ଶାସନ ସମୟକୁ ନୟାଗଡ଼ରେ କାବ୍ୟ କବିତା ରଚନା କରୁଥିଲେ ।

ନୟାଗଡ଼ର ଓଡ଼ଗାଁସ୍ଥିତ ରଘୁନାଥ ମନ୍ଦିରରେ ରାମ ଲକ୍ଷ୍ମଣ ସୀତାଙ୍କର ଯେଉଁ ଦାରୁମୂର୍ତ୍ତି ପୂଜିତ ହେଉଛନ୍ତି, ତାହା ମୃତ୍ୟୁଞ୍ଜୟ ସିଂହଙ୍କ ଦ୍ୱାରା ୧୭୬୩ରେ ପ୍ରତିଷ୍ଠିତ । ଏହା ଦେବତାମାନଙ୍କର ବନବାସ ମୂର୍ତ୍ତି । କିନ୍ତୁ କେବଳ ଏହିଠାରେ ମୂର୍ତ୍ତିମାନଙ୍କରେ ‘ଦାଢ଼ି’ ଥିବାର ଦେଖାଯାଏ । ଉପେନ୍ଦ୍ରଙ୍କ ରଚନାରେ ରାମଚନ୍ଦ୍ରଙ୍କର ଯତି ବେଶର ବର୍ଣ୍ଣନା ଥିବାରୁ ତାଙ୍କ ପରିକଳ୍ପନାର ପ୍ରଭାବ ଏହି ମୂର୍ତ୍ତି ଗଠନରେ ପଡ଼ିଥିବା ମନେହୁଏ ।

‘ରସଲେଖା’ କାବ୍ୟ ରଚନା ବେଳକୁ ଉପେନ୍ଦ୍ରଙ୍କୁ ଅନ୍ୟୂନ ‘୨୫’ ବର୍ଷ ହୋଇଥିଲେ ତାଙ୍କର ଜନ୍ମ ୧୬୮୫ ଖ୍ରୀ:ରେ ବୋଲି ଧରାଯାଇପାରେ । ପୁରୁଷୋତ୍ତମ ସିଂହଙ୍କ ସମୟକୁ ସେ ‘ଶୋଭାବତୀ’ କାବ୍ୟ ରଚନା କରିଥିଲେ । ତେଣୁ ନିଶ୍ଚିତ ଭାବେ ୧୭୫୦ - ୫୫ ବେଳକୁ ଜୀବିତ ଥିଲେ । ମୃତ୍ୟୁଞ୍ଜୟ ସିଂହଙ୍କ ସମୟକୁ ଜୀବିତ ଥିବାର ବିଶ୍ୱାସ ହେଉଥିବାରୁ ଏବଂ ତାଙ୍କ ଜୀବଦ୍ଦଶାରେ ୧୭୬୩ରେ ଓଡ଼ଗାଁ ରଘୁନାଥ ପ୍ରତିଷ୍ଠିତ ହୋଇଥିଲେ, ଭଞ୍ଜ ଅନ୍ୟୂନ ୧୭୬୫ ପର୍ଯ୍ୟନ୍ତ ଜୀବିତ ଥିବା ଧରାଗଲେ, ତାଙ୍କୁ ସେତେବେଳକୁ ‘୮୦’ ବର୍ଷ ବୟସ ହୋଇଥିବ ।

ଅତଏବ ତାଙ୍କର ଜନ୍ମ ୧୬୮୫ ଏବଂ ମୃତ୍ୟୁ ୧୭୬୫ ଖ୍ରୀ.କୁ ଧରାଗଲେ, ତାଙ୍କର ମୃତ୍ୟୁ ବେଳକୁ ଶ୍ରୀ ବୀରକେଶରୀ ଦେବଙ୍କର ୩୭ ଅଙ୍କ ଚଳୁଥିବ । ତେଣୁ ‘ଲାବଣ୍ୟ ବତୀ’ରେ ଲିଖିତ ଥିବା ଶ୍ରୀ ବୀରକେଶରୀ ଦେବଙ୍କର ଅଙ୍କ ଲେଖନକାରଙ୍କ ପ୍ରକ୍ଷେପ ନହୋଇ ସତ୍ୟ ଘଟଣା ହୋଇଥିବା ଅଧିକ ଯୁକ୍ତିସଙ୍ଗତ ।

ଏହାଛଡ଼ା ଭଞ୍ଜଙ୍କର ଯେତିକି କାବ୍ୟକୃତିର ସଂଧାନ ମିଳୁଅଛି, ତାହା ନିଶ୍ଚିତ ଭାବରେ ଏକ ଦୀର୍ଘକାଳୀନ ଅଧ୍ୟବସାୟର ଫଳ । ଭଞ୍ଜ ଯେ ଦୀର୍ଘଜୀବୀ ଥିଲେ ଏହି ଭକ୍ତିର ପ୍ରମାଣ ସେ ନିଜେ । 'ନୀଳାଦ୍ରୀଶ ଚଉତିଶା'ରେ ଉପେନ୍ଦ୍ର ଲେଖିଛନ୍ତି –

"........

ହେ ନୀଳାଦ୍ରୀଶ<br>
କ୍ଷୟତ ହେଲାଣି ଏ ପିଣ୍ଡ<br>
କ୍ଷାଳ ମୋ ଜଞ୍ଜାଳର ଦଣ୍ଡ<br>
................"

ପୁନଶ୍ଚ ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ ଓଡ଼ିଆ ଭଜନ – ଦ୍ୱିତୀୟ ଭାଗରେ ଭଞ୍ଜଙ୍କ ଅନ୍ୟଏକ ଭଜନରେ ଲେଖାଅଛି –

"ସାଧୁ ସଙ୍ଗ କର, ସୁମରି ଶ୍ରୀ ଗୁରୁନାମ ସାଧୁସଙ୍ଗ କର<br>
ନକଲେ ତୁ ପରଲୋକେ ହେବୁ ହରବର<br>
.............................<br>
ଭଣେ ଉପଇନ୍ଦ୍ର ଭଞ୍ଜ ହୋଇଆସୁଅଛି ସଞ୍ଜ<br>
ଭାବି ଭାବି ଉପାୟଟି କରମର ସାର ।"

ଭଞ୍ଜ ସାହିତ୍ୟରେ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱମୂଳକ ରଚନା ନିଶ୍ଚିତଭାବେ ଏକ ପରିଣତ ବୟସର ସୂଚନା ଦିଏ । ଏ ସମସ୍ତ ଆଲୋଚନାକୁ ଆଧାର କରି ଭଞ୍ଜଙ୍କ ସମୟସୀମା ୧୬୮୫ ଖ୍ରୀ.ରୁ ୧୭୬୫ ପର୍ଯ୍ୟନ୍ତ ଧାର୍ଯ୍ୟ କରାଯିବା ସଙ୍ଗତ ମନେହୁଏ ।

ଅବସରପ୍ରାପ୍ତ ଅଧକ୍ଷା,<br>
ପୁରୁଣାସହର, ନୟାଗଡ଼–୨<br>
ମୋ – ୯୪୩୭୦୪୭୫୨୫

---

# ତ୍ରିରଙ୍ଗା

ଦିଲ୍ଲୀପ କୁମାର ବେହୁରା

ଆମରି ତ୍ରିରଙ୍ଗା ବାନା ଆକାଶେ ଉଡଇ ସିନା<br>
ବିଶ୍ୱକୁ ବାଣ୍ଟଇ ଶାନ୍ତି ଭରେ ପୀରତି<br>
ଅହିଂସାର ଚକ୍ରଚିହ୍ନ ପ୍ରଗତି ରଥର ଜାଣ<br>
ଚବିଶି ଅଖରେ ଧରେ ଦିନକୁ ରାତି<br>
ତିନି ରଙ୍ଗ ମହିମା ଅଛି<br>
ସମୟକୁ ଜଗିଚାଲ କହି ଦେଉଛି ।

ନାରଙ୍ଗୀ ରଙ୍ଗଟି ଆମ ବୀରତ୍ୱ ପ୍ରତୀକ ଜାଣ<br>
ଧଳା ରଙ୍ଗ ସତ୍ୟ ଶାନ୍ତି ଜଗତ ପାଇଁ<br>
ରଙ୍ଗ ଅଟେ ସବୁଜର ବିଶ୍ୱାସ ଓ ଭ୍ରାତୃତ୍ୱର<br>
ମୈତ୍ରୀ ଭାବ କଥାଟିକ ଯାଏଟି କହି<br>
ଧରିଥିବ ମନରେ ଏହା<br>
ଦେଶର ପ୍ରଗତି ପଥେ ହୋଇବା ଠିଆ ।

ଜାତୀୟ ପତାକା ଆମ ଭରେ ହୃଦୟରେ ପ୍ରେମ<br>
ଜାତୀୟତା ଭାବଡୋରେ ବାନ୍ଧେ ସଭିଁଙ୍କୁ<br>
ଆମ ଜାତି ନନ୍ଦିଘୋଷ ଭିଡିନେବା ମିଶି ଆସ<br>
ଦୂରକରି ମନୁ ଆଜି ନିଜ ସ୍ୱାର୍ଥକୁ<br>
ଗଢିବାରେ ସୁନାର ଦେଶ<br>
ଜାତି ବର୍ଣ୍ଣ ମନୁ ହେଜି ରଖିବା ଯଶ ।

ଗ୍ରାମ – ପୋଖରୀଆ<br>
ପୋ.ଅ.– ମହୁଲିଆ<br>
ଥାନା– ରାଜନଗର<br>
ଜିଲ୍ଲା– କେନ୍ଦ୍ରାପଡ଼ା

# ସ୍ୱାଧୀନତାର ଅଧ୍ୟାୟ

ଲକ୍ଷ୍ମୀନାରାୟଣ ପାଠୀ

୧୯୪୭ ଅଗଷ୍ଟ ୧୫ ତାରିଖ – ଭାରତର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଅନ୍ତିମ ପର୍ଯ୍ୟାୟ ଓ ଉଦ୍‌ଯାପନୀ ମୁହୂର୍ତ୍ତ । ବ୍ରିଟିଶ ରାଜତ୍ୱର ଶୃଙ୍ଖଳରୁ ମୁକ୍ତ ହୋଇ ଭାରତ ଏହିଦିନ ସ୍ୱାଧୀନ ରାଷ୍ଟ୍ର ଘୋଷିତ ହେଲା । ଫଳରେ ଭାରତୀୟ ସ୍ୱାୟତ୍ତ ଶାସନର ପ୍ରଥମ ମନ୍ତ୍ରିମଣ୍ଡଳ ଗଠିତ ହେଲା । ସ୍ୱାଧୀନତା ପୂର୍ବରୁ ଭାରତବର୍ଷ ଥିଲା ଅଖଣ୍ଡ । ମାତ୍ର ସ୍ୱାଧୀନତା ପରେ ବିଭାଜନ ହୋଇ ଭାରତ ଓ ପାକିସ୍ତାନ ଦ୍ୱୟ ରାଷ୍ଟ୍ର ଜନ୍ମଲାଭ କରିଥିଲା । ଏହାର ବହୁପୂର୍ବରୁ ଉଭୟ ରାଷ୍ଟ୍ରକୁ ସ୍ୱୟଂଶାସନ କ୍ଷମତା ଦେବାଲାଗି ବ୍ରିଟିଶ କର୍ତ୍ତୃପକ୍ଷ ସ୍ଥିର କରିସାରିଥିଲେ। ମାତ୍ର କୂଟନୀତିର ପଶାପାଲିରେ ତାହା ପ୍ରାୟ ସାତବର୍ଷ ବିଳମ୍ବ ଘଟିଥିଲା । ପ୍ରଥମ ପର୍ଯ୍ୟାୟରେ ବିଭିନ୍ନ ପ୍ରଦେଶର ରାଜ୍ୟପାଳଙ୍କ ଚୂଡାନ୍ତ ତାଲିକା ଇଂରେଜ ସରକାରଙ୍କ ଦ୍ୱାରା ୧୯୪୭ ଅଗଷ୍ଟ ୩ତାରିଖ ରାତ୍ରିରେ ଘୋଷିତ ହୋଇଥିଲା । ଅଗଷ୍ଟ ୧୫ତାରିଖରୁ ସେମାନଙ୍କ କାର୍ଯ୍ୟଦିବସ ଆରମ୍ଭ ହେବ ବୋଲି ଇଂଲଣ୍ଡର ରାଜା ଅନୁମୋଦନ କରିଥିଲେ । ତାଲିକାଭୁକ୍ତ ରାଜ୍ୟପାଳମାନେ ଥିଲେ ।

ସ୍ୱୟଂଶାସିତ ଭାରତ

ଡଃ କେ. ଏନ୍. କାଟ୍‌ଜୁ – ଓଡ଼ିଶା  
ସି. ରାଜଗୋପାଳନଚାରୀ – ପଶ୍ଚିମବଙ୍ଗ  
ସାର୍ ସି. ଏମ୍. ତ୍ରିବେଦୀ – ପୂର୍ବବଙ୍ଗ  
ମଙ୍ଗଳଦାସ ପାକ୍‌ବାସା – କେନ୍ଦ୍ରାଞ୍ଚଳ ଓ ବେରାର୍  
ଜୟରାମ ଦାସ ଦୌଲତରାମ – ବିହାର

ସ୍ୱୟଂଶାସିତ ପାକିସ୍ଥାନ

ସାର୍ ଫ୍ରାନ୍‌ସିସ୍ ମୁଡି – ପଶ୍ଚିମ ପଞ୍ଜାବ  
ଗୁଲାମ ହୁସେନ ହିଦାୟତୁଲ୍ଲା –ସିନ୍ଧ  
ସାର୍ ଜର୍ଜ କନିଙ୍ଗହାମ୍ – ଉତ୍ତର ପଶ୍ଚିମ ଫ୍ରଣ୍ଟିଅର ପଞ୍ଜାବ

ସରୋଜିନୀ ନାଇଡୁଙ୍କୁ ଉତ୍ତରପ୍ରଦେଶର ରାଜ୍ୟପାଳ ଭାବେ ମନୋନୀତ କରାଯାଇଥିଲା । ରାଜ୍ୟପାଳ ଦାୟିତ୍ୱ ଉପରେ ମତାମତ ଦେଇ ବଣର ପକ୍ଷୀକୁ ପଞ୍ଜୁରୀ ଭିତରେ ବନ୍ଦୀ କରି ରଖିବା ସହ ତୁଳନୀୟ ବୋଲି ପ୍ରତିକ୍ରିୟାରେ ସେ ସେତେବେଳେ କହିଥିଲେ । ତେବେ ରାଜ୍ୟପାଳ ଦାୟିତ୍ୱ ଗ୍ରହଣ କରିବା ପରେ ସେ ହୋଇଥିଲେ ଉତ୍ତରପ୍ରଦେଶ ତଥା ଭାରତର ସର୍ବପ୍ରଥମ ମହିଳା ରାଜ୍ୟପାଳ । ଏହାବ୍ୟତୀତ ଅଗଷ୍ଟ ୧୫ରୁ ରିଅଲ୍-ଆଡମିରାଲ ଭିସକାଉଣ୍ଟ ମାଉଣ୍ଟବ୍ୟାଟେନ୍ ଭାରତର ଗଭର୍ଣ୍ଣର ଜେନେରାଲ ତଥା ମହମ୍ମଦ ଅଲ୍ଲୀ ଜିନ୍ନା ପାକିସ୍ତାନର ଗଭର୍ଣ୍ଣର ଜେନେରାଲ ଦାୟିତ୍ୱ ଗ୍ରହଣ କରିବେ ବୋଲି ସରକାରୀ ଭାବେ ଘୋଷିତ ହୋଇଥିଲା ।

ଭାରତୀୟ ସ୍ୱାୟତ୍ତ ଶାସନର ମନ୍ତ୍ରିମଣ୍ଡଳରେ ମୁଖ୍ୟଥିଲେ ପଣ୍ଡିତ ଜବାହରଲାଲ ନେହେରୁ । ସେ ହେଲେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ । ମନ୍ତ୍ରିମଣ୍ଡଳର ଅନ୍ୟ ସଦସ୍ୟମାନେ ଥିଲେ –

ସର୍ଦ୍ଦାର ବଲ୍ଲଭଭାଇ ପଟେଲ – ସ୍ୱରାଷ୍ଟ୍ର, ରେଡିଓ, ତଥ୍ୟ ଓ ସୂଚନା  
ମୌଲାନା ଆବୁଲ କଲାମ ଆଜାଦ୍ – ଶିକ୍ଷା  
ଡଃ ମାଥାଇ – ରେଳବାଇ ଓ ପରିବହନ  
ସର୍ଦ୍ଦାର ବଳଦେବ ସିଂ – ପ୍ରତିରକ୍ଷା  
ଜଗଜୀବନ ରାମ – ଶ୍ରମ  
ସି. ଏଚ୍. ଭାବା – ବାଣିଜ୍ୟ  
ରଫି ଅହମ୍ମଦ୍ କିଦ୍‌ୱାଇ – ଯୋଗାଯୋଗ  
ରାଜକୁମାରୀ ଅମୃତା କୌର୍ – ସ୍ୱାସ୍ଥ୍ୟ  
ଡଃ ଭୀମରାଓ ଆମ୍ବେଦକର – ଆଇନ  
ସନମୁଖମ୍ ଚେଟ୍ଟୀ – ଅର୍ଥ  
ଡଃ ଶ୍ୟାମାପ୍ରସାଦ ମୁଖାର୍ଜୀ – ଶିଳ୍ପ ଓ ଯୋଗାଣ  
ଏନ୍. ଭି. ଗାଡଗିଲ – ଖଣି ଓ ଶକ୍ତି

ଶପଥ ଗ୍ରହଣ ପୂର୍ବରୁ ଭାରତୀୟ ସମ୍ବିଧାନ ପ୍ରଣୟନ ସଭାର ଏକ ଗୁରୁତ୍ୱପୂର୍ଣ୍ଣ ବୈଠକ ଅନୁଷ୍ଠିତ ହୋଇଥିଲା । ବୈଠକରେ ଶପଥ

ଗ୍ରହଣ ପ୍ରସ୍ତାବକୁ ଆଗତ କରିଥିଲେ ପଣ୍ଡିତ ନେହେରୁ। ତାଙ୍କୁ ସମର୍ଥନ କରିଥିଲେ ମୁସଲିମ୍ ଲିଗ୍‌ର ନେତା ଚୌଧୁରୀ ଖଲିକୁଜ ଜମାନ। ପ୍ରସ୍ତାବକୁ ସମର୍ଥନ ଦେବାକୁ ଯାଇ ସ୍ଲୋଗାନର ଯୁଗ ଶେଷ ହୋଇଛି ଏବଂ ସମସ୍ତେ ମିଳିମିଶି ଭାରତର ସମୃଦ୍ଧି ଓ ଶାନ୍ତି ଲାଗି କର୍ମ କରିବା ଉଚିତ୍ ବୋଲି ମୁସଲିମ୍ ଲିଗ୍‌ର ନେତା ପ୍ରକାଶ କରିଥିଲେ। ଡଃ ସର୍ବପଲ୍ଲୀ ରାଧାକ୍ରିଷ୍ଣନ ମଧ୍ୟ ନେହେରୁଙ୍କ ପ୍ରସ୍ତାବକୁ ଅକୁଣ୍ଠ ସମର୍ଥନ ଜଣାଇଥିଲେ । ଶପଥ ଗ୍ରହଣ ପ୍ରସ୍ତାବ ସମେତ ସ୍ୱାୟତ୍ତ ଶାସନ ଥିଲା ସମ୍ବିଧାନ ପ୍ରଣୟନ ସଭାର ମୁଖ୍ୟ ଆଲୋଚ୍ୟ ପ୍ରସଙ୍ଗ । ସର୍ବସମ୍ମତିକ୍ରମେ ପ୍ରସ୍ତାବଦ୍ୱୟ ଗୃହୀତ ହେଲା । ସମସ୍ତଙ୍କର ପ୍ରତୀକ୍ଷା ଥିଲା ଜିରୋ ଆୱାର (ରାତ୍ରି ୧୨ଘଣ୍ଟା)କୁ । ମହାତ୍ମା ଗାନ୍ଧୀଙ୍କ ଜୟ, କରତାଳି ଓ ଶଙ୍ଖଧ୍ୱନି ମଧ୍ୟରେ ସମସ୍ତେ ସେହି ପ୍ରତୀକ୍ଷିତ ଶୁଭ ମୁହୂର୍ତ୍ତକୁ ସ୍ୱାଗତ ଜଣାଇଥିଲେ। ରାଷ୍ଟ୍ରୀୟ ସଙ୍ଗୀତ 'ବନ୍ଦେ ମାତରମ୍'ର ସମୂହ ଗାନ ପରେ ସ୍ୱାଧୀନ ଭାରତର ପ୍ରଥମ ମନ୍ତ୍ରିମଣ୍ଡଳ ଗଠିତ ହେଲା ।

ସମ୍ବିଧାନ ପ୍ରଣୟନ ସଭାର ସଭାପତି ଡଃ ରାଜେନ୍ଦ୍ର ପ୍ରସାଦ ସେହି ଐତିହାସିକ ମୁହୂର୍ତ୍ତରେ ସମସ୍ତଙ୍କୁ ସ୍ୱାଗତ ଜଣାଇବା ସହ ସଂଖ୍ୟାଲଘୁମାନଙ୍କ ପ୍ରତି କୌଣସି ପାତରଅନ୍ତର ନୀତି ଅବଲମ୍ବନ କରାଯିବ ନାହିଁ ବୋଲି ଅଭିଭାଷଣରେ ଦୃଢ ପ୍ରତିଶ୍ରୁତି ଦେଇଥିଲେ। ଖୁସିର କଥା ଯେ ଡଃ ରାଜେନ୍ଦ୍ର ପ୍ରସାଦଙ୍କ ସେହି ପ୍ରତିଶ୍ରୁତି ଭାରତ ଅଦ୍ୟାବଧି ରକ୍ଷା କରି ଆସିଛି । ସର୍ବନିୟନ୍ତାଙ୍କୁ ସାଧୁବାଦ ଜଣାଇବା ସହ ସ୍ୱାଧୀନତା ସଂଗ୍ରାମୀଙ୍କ ଅବଦାନ ପ୍ରତି ଡଃ ପ୍ରସାଦ କୃତଜ୍ଞତା ଜଣାଇଥିଲେ । ବିଶେଷକରି ମହାତ୍ମା ଗାନ୍ଧୀଙ୍କୁ ଭକ୍ତିପୂତ ସମ୍ମାନ ଜଣାଇବାକୁ ସେ ଭୁଲି ନଥିଲେ ।

ସମ୍ବିଧାନ ପ୍ରଣୟନ ସଭାର ବୈଠକରେ ଭାଷଣ ଦେଇ ପଣ୍ଡିତ ନେହେରୁ କହିଥିଲେ, 'ସମଗ୍ର ପୃଥିବୀବାସୀ ଯେତେବେଳେ ନିଦ୍ରାମଗ୍ନ ଥିବେ, ଭାରତ ସେତେବେଳେ ସ୍ୱାଧୀନତାର ସ୍ୱାଦ ଆଘ୍ରାଣ କରିବ। ଭାରତ, ଭାରତବାସୀ ଓ ମାନବତାର ଉଦ୍ରେକ ଲାଗି ଉତ୍ସର୍ଗୀକୃତ ଉଦ୍ୟମ ଅବ୍ୟାହତ କରିବ ବୋଲି ସର୍ବାନ୍ତକରଣରେ ସେ ପ୍ରକାଶ କରିଥିଲେ।

ସ୍ୱାଧୀନ ଭାରତର ପ୍ରଥମ ସରକାର ଗଠନ ପ୍ରକ୍ରିୟା ଚାଲିଥିବା ବେଳେ ବାହାରେ ପଚାଶ ହଜାରରୁ ଊର୍ଦ୍ଧ୍ୱ ଜନତା ଚିର ଆକାଂକ୍ଷିତ ମୁକ୍ତିର ସ୍ୱାଦ ଆସ୍ୱାଦନରେ ମସ୍‌ଗୁଲ ଥିଲେ। ପରସ୍ପରକୁ ଆଲିଙ୍ଗନ, ସ୍ୱାଧୀନତା ସଂଗ୍ରାମୀଙ୍କ ଜୟକାର ଓ ଦେଶମାତୃକାର ଜୟଧ୍ୱନିରେ ରାତ୍ରିର ନିସ୍ତବ୍ଧତା କୁଆଡେ ହଜିଯାଇଥିଲା । ସ୍ୱାଧୀନ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ ପଦବୀ ଓ ଦାୟିତ୍ୱ ଗ୍ରହଣ କରିବା ଲାଗି ଲର୍ଡ ମାଉଣ୍ଟବ୍ୟାଟେନଙ୍କୁ ଅନୁରୋଧ କରିବା ଉଦ୍ଦେଶ୍ୟରେ ପଣ୍ଡିତ ନେହେରୁ ଓ ଡଃ ରାଜେନ୍ଦ୍ର ପ୍ରସାଦ ଏହି ସମୟରେ ସରକାରୀ ଭବନ ଅଭିମୁଖରେ ଯାତ୍ରା କରିଥିଲେ ।

ଭାରତ ସ୍ୱାଧୀନ ହେଲା ସତ, ମାତ୍ର ଦେଶ ବିଭାଜନକୁ ଭିତ୍ତିକରି ଏହା ଥିଲା, ଏକ କଳଙ୍କମୟ ଅଧ୍ୟାୟ । ବ୍ରିଟିଶ ଇଣ୍ଡିଆର ଶେଷ ଭାଇସରାୟ ଲର୍ଡ ମାଉଣ୍ଟବ୍ୟାଟେନ୍ ଯେଉଁଭଳି ତରବରିଆ ଭାବେ ସ୍ୱାଧୀନତା ଅଧ୍ୟାୟକୁ କାର୍ଯ୍ୟକାରୀ କରାଇଲେ, ତାହାଦ୍ୱାରା ଭାରତ ଓ ପାକିସ୍ତାନ ଉଭୟ ରାଷ୍ଟ୍ରରେ ସାମ୍ପ୍ରଦାୟିକତାର ନିଆଁ ଜଳି ଉଠିଲା। ଅଗଣିତ ହିନ୍ଦୁ – ମୁସଲିମ ନରନାରୀ ଏହାର ଶିକାର ହେଲେ । ଭାରତ ଇତିହାସରେ ଏହି କଳଙ୍କିତ ଅଧ୍ୟାୟ ଅପରିହାର୍ଯ୍ୟ ନଥିଲା। ଏହା ଥିଲା ମନୁଷ୍ୟକୃତ । ଭାରତୀୟ ଜାତୀୟ କଂଗ୍ରେସ ଓ ମୁସଲିମ ଲିଗ୍‌ର ନେତାଗଣ ଥିଲେ ଏଥିଲାଗି ଦାୟୀ ।

ଭାରତର ସ୍ୱାଧୀନତା ଆନ୍ଦୋଳନକୁ ଅହିଂସାତ୍ମକ ମୋଡ ଦେଇଥିବା ଗାନ୍ଧିଜୀ ପ୍ରଥମରୁ ଥିଲେ ବିଭାଜନର ବିରୋଧୀ । ପରିସ୍ଥିତିର ଚାପରେ ପଡି ପରବର୍ତ୍ତୀ ସମୟରେ ବିଭାଜନକୁ ସେ ଗ୍ରହଣ କରିନେଇଥିଲେ । ମାତ୍ର ରକ୍ତପ୍ଲାବିତ ସ୍ୱାଧୀନତାକୁ ଗ୍ରହଣ କରିବା ପାଇଁ ତାଙ୍କର କ୍ଷତାକ୍ତ ହୃଦୟ ଆଦୌ ପ୍ରସ୍ତୁତ ନଥିଲା । ତେଣୁ ସେ ଚବିଶ ଘଣ୍ଟା ଉପବାସ ସହିତ ସୂତାକଟା ଓ ସ୍ୱତନ୍ତ୍ର ପ୍ରାର୍ଥନାସଭା ମାଧ୍ୟମରେ ସ୍ୱାଧୀନତା ଉତ୍ସବକୁ ପାଳନ କରିଥିଲେ । କ୍ଷମତା ରାଜନୀତିଠାରୁ ଅନାସକ୍ତ ରହି ବୈରାଗ୍ୟପୂର୍ଣ୍ଣ ଜୀବନଯାପନ କରିବା ଥିଲା ଏହି ମହାମାନବଙ୍କ ଏକ ବିଶେଷତ୍ୱ ।

୧୯୪୭ ଅଗଷ୍ଟ ୧୫ରେ ଭାରତ ସ୍ୱାଧୀନ ହେଲା । ଏହି ଦିନଠାରୁ ଭାରତର ଜାତୀୟ ପତାକା ତ୍ରିରଙ୍ଗା ପତାକା ସଗୌରବେ ଉତ୍ତୋଳିତ ହେଲା । ଏଥିଲାଗି ଦେଶବିଦେଶରୁ ଅଭିନନ୍ଦନ ବାର୍ତ୍ତାମାନ ଆସି ପହଞ୍ଚିଥିଲା । ଭାରତ ସରକାରଙ୍କୁ ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଇଥିଲେ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ।

କାନାଡା ଓ ଅଷ୍ଟ୍ରେଲିଆ ଆଦି ରାଷ୍ଟ୍ରରୁ ମଧ୍ୟ ଅନୁରୂପ ଭାବେ ଶୁଭେଚ୍ଛା ବାର୍ତ୍ତାମାନ ଆସି ପହଞ୍ଚିଥିଲା। ପଡୋଶୀ ରାଷ୍ଟ୍ର ଚୀନ ପକ୍ଷରୁ ଅଭିନନ୍ଦନ ବାର୍ତ୍ତା ଆସିଥିଲା । ଅହିଂସାତ୍ମକ ଆନ୍ଦୋଳନର ପନ୍ଥା ଅନୁସରଣରେ ସ୍ୱାଧୀନତା ଭଳି ବିରାଟ ସାଫଲ୍ୟକୁ ଭାରତ ହାସଲ କରିବା କେବଳ ଚୀନ କାହିଁକି, ସମଗ୍ର ବିଶ୍ୱ ପାଇଁ ଥିଲା ଅପ୍ରତ୍ୟାଶିତ। ଚୀନ ସାଧାରଣତନ୍ତ୍ରର ରାଷ୍ଟ୍ରପତି ଚିଆଙ୍ଗ କାଇସେକ୍ ଶୁଭେଚ୍ଛା ବାର୍ତ୍ତା ସହ ଯେଉଁ ଇଂରାଜୀ କବିତା ପଠାଇଥିଲେ, ସେଥିରୁ ଚୀନ୍‌ର ମାନସିକତା ବେଶ୍ ବାରିହେଉଥିଲା । ରାଷ୍ଟ୍ରପତିଙ୍କ ପକ୍ଷରୁ ଚୀନ୍‌ର ରାଷ୍ଟ୍ରଦୂତ ଚିଆ ଲୁଏନ ଲୋ ଉକ୍ତ କବିତାଟିକୁ ଭାରତ ସରକାରଙ୍କୁ ଅର୍ପଣ କରିଥିଲେ ।

ରାମଚନ୍ଦ୍ରପୁର, ଡେଲାଙ୍ଗ
ପୁରୀ– ୭୫୨୦୧୫

# ଅଗଷ୍ଟ କ୍ରାନ୍ତି

କୃଷ୍ଣ ଚନ୍ଦ୍ର ସୁଆର

ଋଷ ବିପ୍ଳବ ଓ ଫରାସୀ ରାଷ୍ଟ୍ର ବିପ୍ଳବ ପରି ଭାରତର ୧୯୪୨ ଅଗଷ୍ଟ ବିପ୍ଳବ ବିଶ୍ୱ ଇତିହାସରେ ଏକ ଅବିସ୍ମରଣୀୟ ।

ଜାତିର ପୂଜ୍ୟପିତା ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ 'ଭାରତଛାଡ' ପ୍ରସ୍ତାବ ନିଖିଳ ଭାରତ କଂଗ୍ରେସ ଅଧିବେଶନ ୧୯୪୨ ଅଗଷ୍ଟ ୮ ତାରିଖରେ ବମ୍ବେଠାରେ ବିପୁଳ ଉତ୍ସାହ ଓ ଉଦ୍ଦୀପନା ସହିତ ଗୃହୀତ ହୋଇଥିଲା । ଏଥିରେ ସଭାପତିତ୍ୱ କରିଥିଲେ ତତ୍କାଳୀନ କଂଗ୍ରେସ ସଭାପତି ମୌଲାନା ଆବୁଲ କାଲାମ ଆଜାଦ । ପଣ୍ଡିତ ଜବାହରଲାଲ ଓ ସର୍ଦ୍ଦାର ପଟେଲ ପ୍ରସ୍ତାବକୁ ନିଜର ସମର୍ଥନ ଜଣାଇଥିଲେ ଏବଂ ସେହି ଐତିହାସିକ ବୈଠକରେ ମହାନ୍ ସଂଗ୍ରାମୀ ହରେକୃଷ୍ଣ ମହତାବ, ମାଳତୀ ଚୌଧୁରୀ, ସୁରେନ୍ଦ୍ର ଦ୍ୱିବେଦୀ, ଲକ୍ଷ୍ମୀ ନାରାୟଣ ମିଶ୍ର ଓ ପ୍ରହ୍ଲାଦ ରାୟଲାଠ ଉପସ୍ଥିତ ଥିଲେ ।

ଇଂରେଜ ସରକାରଙ୍କ ଅନ୍ୟାୟ ଅତ୍ୟାଚାର ଓ ମନମୁଖୀ କାର୍ଯ୍ୟରେ ସମଗ୍ର ଭାରତବାସୀ ଏତେ ଅତିଷ୍ଠ ହୋଇପଡିଥିଲେ ଯେ ଏକ ପଟରେ ଇଂରେଜ ଓ ଅନ୍ୟ ପଟରେ ଭାରତବାସୀ ମୁହାଁମୁହିଁ ହେବା ପରି ଅବସ୍ଥାକୁ ଆସିଯାଇଥିଲା । ସେଇଥିପାଇଁ ଗାନ୍ଧିଜୀ ତାଙ୍କ ଭାଷଣରେ କହିଥିଲେ – 'ଇଂରେଜ ତୁମେ ଚାଲିଯାଅ । ଏବେ ଯାଅ, ଆଉ ମୁହୂର୍ତ୍ତେ ତୁମକୁ ସହ୍ୟ କରାଯାଇ ପାରେନା । ଚୋର ଡକାୟତଙ୍କ ହାତରେ ପଛେ ପଡୁ, ଆଉ କିଛି ନକଲେ ଜିନ୍ନାଙ୍କ ହାତରେ ପଛକେ ସମର୍ପି ଦିଅ । ସେତ ଭାରତୀୟ । ମାତ୍ର ତୁମେ ଆଉ କାଳ ବିଳମ୍ବ ନକରି ବିଦାୟ ନିଅ ।' ଆନ୍ତର୍ଜାତିକ ସମ୍ପ୍ରଦାୟ ଆମେରିକା, ଚୀନ ଆଦି ମିତ୍ର ପକ୍ଷଙ୍କୁ ନିବେଦନ କଲେ ଇଂରେଜ ସାମ୍ରାଜ୍ୟବାଦ ଏକ ବୋଝ ହୋଇ ରହିଛି । ଦେଶର କୋଟି କୋଟି ଅପାର ସାମ୍ରାଜ୍ୟ ବିରୋଧୀ ଶକ୍ତିଙ୍କ ଗଳାରୋଧ କରି ବସିଛି । ସେମାନଙ୍କର ମୁକ୍ତିରେ ଏକ ଅପାରମେୟ ଲୋକଶକ୍ତି ସ୍ୱାଧୀନତା ଓ ଗଣତନ୍ତ୍ର ରକ୍ଷା ଲାଗି ଜୀବନ ଉତ୍ସର୍ଗ କରିବ ।

ଗାନ୍ଧିଜୀ ଆନ୍ଦୋଳନକୁ ବ୍ୟାପକ କରିବାକୁ ପ୍ରସ୍ତୁତ ହେଉଥିବା ବେଳେ ଅଗଷ୍ଟ ୯ତାରିଖ ଦିନ ତାଙ୍କ ସମେତ କଂଗ୍ରେସର ବରିଷ୍ଠ ଓ ତୁଙ୍ଗ ନେତାମାନଙ୍କୁ ବ୍ରିଟିଶ ପୋଲିସ ଗିରଫ କରି ନେଲେ । ଅଗଷ୍ଟ ବିପ୍ଳବକୁ ଦମନ ଓ ଭଣ୍ଡୁର କରିବାକୁ ବ୍ରିଟିଶ ଶକ୍ତି ଆପ୍ରାଣ ଚେଷ୍ଟା କରିଥିଲେ । ନେତାମାନଙ୍କୁ ଗିରଫ କରି ନେତୃତ୍ୱହୀନ କରିପକାଇ ଥିଲେ ମଧ୍ୟ ଏହି ଆନ୍ଦୋଳନ ଆପଣାଛାଏଁ ଏକ ଗଣ ଆନ୍ଦୋଳନ ଭାବେ ପ୍ରଜ୍ୱଳିତ ହୋଇଉଠିଥିଲା । ପୁରପଲ୍ଲୀଠାରୁ ସହର ବଜାର ଯାଏ ଲୋକେ ଏହି ବିପ୍ଳବରେ ନିର୍ଭୟରେ ଲମ୍ଫ ପ୍ରଦାନ କରିଥିଲେ। ସେଥିପାଇଁ ତାଙ୍କର ଲାଠିମାଡ, ଗୁଳିମାଡ କାରାବରଣ ଏପରିକି ଫାଶୀ ଖୁଣ୍ଟରେ ଚଢ଼ିବା ପାଇଁ ମଧ୍ୟ ଭୟ ନଥିଲା । ସ୍ୱାଧୀନତାର ସୁଆଦ ଚାଖିବା ପାଇଁ ବ୍ରିଟିଶ ଶାସନକୁ ଅଚଳ କରିଦେବା ଲାଗି ସାରା ଭାରତବାସୀ ବଜ୍ର ଶପଥ କରିଥିଲେ । ସ୍ୱାଧୀନତା ସଂଗ୍ରାମର ଇତିହାସରେ ସଂଗ୍ରାମୀମାନଙ୍କର ଏହି ତ୍ୟାଗ ଓ ଦୁଃଖବରଣ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଅଗଷ୍ଟ ୩୧ତାରିଖରେ ଭାରତରେ ତତ୍କାଳୀନ ବ୍ରିଟିଶ ବଡଲାଟ ସେଇଥିପାଇଁ ଭୟଭୀତ ହୋଇ ଚର୍ଚ୍ଚିଲଙ୍କୁ ଗୋପନରେ ଚିଠି ଦେଇଥିଲେ । ସିପାହୀ ବିଦ୍ରୋହ ପରେ ଏପରି ଭୟଙ୍କର ବିଦ୍ରୋହ ଆଉ ହୋଇନଥିଲା । ବାସ୍ତବରେ ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନ କଥା କେତେକ ସ୍ଥାନରେ ଲୋକେ ଭୁଲିଯାଇ ପୋଷ୍ଟ ଅଫିସ୍, ଥାନା, ତହସିଲ ଅଫିସ, କଲେଜ ପୋଡି ଦେବା ସାଙ୍ଗକୁ ରେଳପଥ ଓ ପୋଲ ଉଡାଇ ଦେଇଥିଲେ । କଟକ ରେଭେନ୍ସା କଲେଜରେ ଅଧ୍ୟୟନରତ ଛାତ୍ରମାନେ ଭାରତଛାଡ ଆନ୍ଦୋଳନକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରିବା ସହ କଲେଜ ଅଫିସରେ ଅଗ୍ନି ସଂଯୋଗ

କରିଦେଇଥିଲେ । ସେମାନଙ୍କ ମଧ୍ୟରୁ ସୁରଜମଲ ଶାହା ଓ ବିପ୍ଳବୀ ଛାତ୍ରନେତା ବିଭୁଦେନ୍ଦ୍ର ମିଶ୍ରଙ୍କୁ ପୋଲିସ ଗିରଫକରି ବ୍ରହ୍ମପୁର ଜେଲ୍‌କୁ ପଠାଇ ଦେଇଥିଲେ । ଏହାର ପ୍ରଭାବରେ ବ୍ରିଟିଶ ସୈନ୍ୟବାହିନୀରେ ଥିବା ଭାରତୀୟମାନେ ବିଦ୍ରୋହ ଆରମ୍ଭ କରି ଦେଇଥିଲେ । ସର୍ବ ଭାରତୀୟ ସ୍ତରରେ ବ୍ରିଟିଶ ପୋଲିସ ଓ ସୈନ୍ୟବାହିନୀ ଆଖିରେ ଧୂଳି ଦେଇ ଯେଉଁ ନେତାମାନେ ଗୋପନରେ ଏହି ଆନ୍ଦୋଳନକୁ ଚାଲୁ ରଖିଥିଲେ, ସେମାନଙ୍କ ମଧ୍ୟରେ ଥିଲେ ଜନନେତା ଓ ସଂଗ୍ରାମୀ ଜୟପ୍ରକାଶ ନାରାୟଣ, ରାମମନୋହର ଲୋହିଆ, ଅଚ୍ୟୁତ ପଟ୍ଟବର୍ଦ୍ଧନ ଓ ଅରୁଣା ଆସଫ୍ ଅଲ୍ଲୀ ପ୍ରମୁଖ । ଏମାନେ ପ୍ରତ୍ୟେକେ ଅତି ପରିଚିତ ଓ ଜଣାଶୁଣା ହେତୁ ଧରା ପଡିଯିବା ଭୟ ଓ ଟ୍ରେନ୍‌ରେ ଗନ୍ତବ୍ୟ ସ୍ଥଳକୁ ଗଲେ ଅଧିକ ବିଳମ୍ବ ହେତୁ ସେମାନଙ୍କୁ ସେତେବେଳେ ଡାଲମିଆଁ ଜୈନ କମ୍ପାନୀର ସୁଦକ୍ଷ ବିମାନ ଚାଳକ, ସାହସୀ ଓଡ଼ିଆ ବୀର ବିଜୁ ପଟ୍ଟନାୟକ ସାହାଯ୍ୟ କରୁଥିଲେ । ଶେଷରେ ସେ ବ୍ରିଟିଶ ପୋଲିସ ହାତରେ ଧରାପଡି ଗିରଫ ହେବା ସଙ୍ଗେ ସଙ୍ଗେ କଠୋର ଶାରୀରିକ ଯନ୍ତ୍ରଣା ସହ ଦୀର୍ଘ କାରାବାସ ଭୋଗ କରିଥିଲେ । ଭାରତରେ ଏହି ଆନ୍ଦୋଳନରେ ହଜାର ହଜାର ଲୋକ ପ୍ରାଣ ହରାଇଥିଲେ ।

ଭାରତର ଅନ୍ୟାନ୍ୟ ରାଜ୍ୟ ପରି ଓଡ଼ିଶାରେ ଭାରତଛାଡ ଆନ୍ଦୋଳନର ଅଭୁତପୂର୍ବ ପ୍ରଭାବ ପରିଲକ୍ଷିତ ହୋଇଥିଲା । ଓଡ଼ିଶାର ୭ଟି ସ୍ଥାନରେ ଗୁଳିକାଣ୍ଡ ଘଟି ୭୨ଜଣ ପ୍ରାଣ ହରାଇଥିଲେ । ଜେଲରେ ବହୁଲୋକ ମୃତାହତ ହେବା ସଙ୍ଗେ ଜୋରିମାନା ବାବଦରେ ମଧ ଟଙ୍କା ଆଦାୟ ହୋଇଥିଲା । ବିଶେଷକରି ବାଲେଶ୍ୱରର ଲୁଣିଆ, ଖଇରାଡିହି, କଳାମାଟିଆ, ତୁଡିଗଡିଆରେ ଲୋକ ମୃତାହତ ହେବା ସଙ୍ଗେ ଇରମଠାରେ ବ୍ରିଟିଶ ପୋଲିସ ଗୁଳିରେ ୨୯ଜଣ ବ୍ୟକ୍ତି ପ୍ରାଣ ହରାଇଥିଲେ ଓ ୧୫୦ରୁ ଊର୍ଦ୍ଧ୍ୱ କ୍ଷତବିକ୍ଷତ ହୋଇଥିଲେ । ଏକା ସାଙ୍ଗରେ ଏତେ ଲୋକ ପୋଲିସ ଗୁଳିରେ ନିହତ ହେବା ଯୋଗୁଁ ଏହାକୁ ଦ୍ୱିତୀୟ ଜାଲିଆନାୱାଲାବାଗ ବୋଲି କୁହାଯାଏ । କୋରାପୁଟ ଜିଲ୍ଲାର ମାଥିଲି ଓ ପାପଡାହାଣ୍ଡିରେ ପୋଲିସ୍ ୨୫ଜଣଙ୍କୁ ଗୁଳିକରି ମାରିଥିଲା । କଟକ ଜିଲ୍ଲାର କାଇପଦାଠାରେ ୪ଜଣ ପ୍ରାଣ ହରାଇଥିବା ବେଳେ ୧୭ଜଣ ଆହତ ହୋଇଥିଲେ । ପୁରୀ ଜିଲ୍ଲାର ନିମାପଡାରେ ଜଣେ ପୋଲିସ ଗୁଳିରେ ପ୍ରାଣ ହରାଇଥିଲେ । କୋରାପୁଟ ଓ ନବରଙ୍ଗପୁର ଜେଲରେ ଖାଦ୍ୟ, ପାନୀୟ ଓ ଅସ୍ୱାସ୍ଥ୍ୟକର ପରିବେଶ ଯୋଗୁଁ ୬୭ଜଣଙ୍କର ପ୍ରାଣହାନୀ ଘଟିଥିଲା । ସବୁଠାରୁ ବଡ ଉଲ୍ଲେଖନୀୟ ଓ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଉଛି ଅଗଷ୍ଟ ବିପ୍ଳବରେ ଶହୀଦ ଲକ୍ଷ୍ମଣ ନାୟକଙ୍କ ଫାଶୀ । ଜଣେ ଫରେଷ୍ଟଗାର୍ଡଙ୍କୁ ହତ୍ୟା କରିବା ନେଇ ତାଙ୍କ ନାମରେ ମିଥ୍ୟା ଅଭିଯୋଗ ଯୋଗୁଁ ୧୯୪୩ ମସିହା ମାର୍ଚ୍ଚ ୨୮ ତାରିଖରେ ବ୍ରହ୍ମପୁରର କେନ୍ଦ୍ରୀୟ ଜେଲ୍‌ରେ ନିର୍ମମ ଭାବେ ତାଙ୍କୁ ଫାଶୀ ଦିଆଯାଇଥିଲା । ସେ ଥିଲେ ଜଣେ ଓଡ଼ିଆ ଆଦିବାସୀ ନେତା, ମହାନ୍ ଦେଶପ୍ରେମୀ ଓ ମୁକ୍ତି ସଂଗ୍ରାମୀ । ନୟାଗଡର ନୂଆଗାଁଠାରେ ପୋଲିସ ଗୁଳିରେ ଆଦିବାସୀ ନେତା କାଷ୍ଠୀ ଡାକୁଆ ମୃତ୍ୟୁବରଣ କରିଥିଲେ । ଠାକୁର ଶ୍ରୀ ଅଭିରାମ ପରମହଂସ ଦେବ 'କଳି ଭାଗବତ' ନାମକ ଏକ କାବ୍ୟ ରଚନା କରି ରାଜଦ୍ରୋହ ଅପରାଧରେ ଗିରଫ ହୋଇଥିଲେ ।

ଓଡ଼ିଶାରେ ପୂର୍ବତନ ଗଡଜାତ ମଧ୍ୟରେ ତାଳଚେର, ଢେଙ୍କାନାଳ, ନୟାଗଡ, ଆଠଗଡ ଓ ନୀଳଗିରିର ଲୋକେ ପ୍ରଜାମଣ୍ଡଳ ନେତୃତ୍ୱରେ ଭାରତଛାଡ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିଥିଲେ । ତାଳଚେରରେ ପବିତ୍ର ମୋହନ ପ୍ରାଧନଙ୍କ ନେତୃତ୍ୱରେ ଏହି ସମୟରେ ଏପରି ତୀବ୍ର ଆନ୍ଦୋଳନ ଚାଲିଥିଲା ଯେ ସେଠାରେ ବ୍ରିଟିଶ ସାମରିକ ବାହିନୀ ପ୍ରବେଶ କରିନପାରି ବିମାନରୁ ଗୁଳି ବର୍ଷଣ କରିଥିଲେ । ଏହି ଆନ୍ଦୋଳନ ସମୟରେ ଭାରତର ଛଅଟି ସ୍ଥାନରେ ଏହିଭଳି ବ୍ରିଟିଶ ସରକାର ଗୁଳିବର୍ଷଣ କରିଥିଲେ । ବର୍ଷୀୟାନ୍ ନେତା ସୁରେନ୍ଦ୍ର ଦ୍ୱିବେଦୀଙ୍କ ନେତୃତ୍ୱରେ ଅଗଷ୍ଟ ବିପ୍ଳବ ବେଳେ ଏକ ସଂଗଠିତ ଗୋପନୀୟ ଆନ୍ଦୋଳନ ଚାଲିଥିଲା । ଏଥିରେ ବହୁ ମାନ୍ୟଗଣ୍ୟ ସଂଗ୍ରାମୀ ଜୀବନକୁ ପାଣି ଛଡାଇ ଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇ କାର୍ଯ୍ୟ କରିଥିଲେ ।

ଦେଶ ମାତୃକାର ମୁକ୍ତି ପାଇଁ କେତେ ସଂଗ୍ରାମ ଆଉ ବଳିଦାନ ଫଳରେ ଆମେ ଶେଷରେ ସ୍ୱାଧୀନ ହେଲେ । ବିଦେଶୀ କବଳରୁ ମାଟି ମା'କୁ ମୁକ୍ତି ନିମନ୍ତେ ଯେଉଁ କ୍ରାନ୍ତିକାରୀ ସଂଗ୍ରାମୀ ଓ ବିପ୍ଳବୀମାନେ ସ୍ୱାଧୀନତା ସଂଗ୍ରାମର ପବିତ୍ର ବହ୍ନିରେ ଝାସ ଦେଇଥିଲେ, ସେମାନେ ଆମର ଚିରନମସ୍ୟ । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଆମେ ପ୍ରତ୍ୟେକେ ଦେଶର ଅଖଣ୍ଡତାକୁ ବଜାୟ ରଖିବା ଉଚିତ ।

ଏମ୍.ଆଇ.ଜି.ୱାନ୍ ୪୨/୧
ଚନ୍ଦ୍ରଶେଖରପୁର ହାଉସିଂ ବୋର୍ଡ କଲୋନୀ,
ଭୁବନେଶ୍ୱର-୧୬

# ସ୍ୱାଧୀନତା ସଂଗ୍ରାମର କିଛି ସ୍ମୃତି – କିଛି ଅନୁଭୂତି

କିଶୋର ଚନ୍ଦ୍ର ମହାପାତ୍ର

ସେଦିନ କଥା ପ୍ରସଙ୍ଗରେ ଅତି ଆଗ୍ରହରେ ବଖାଣି ବସିଲେ କୃଷ୍ଣଚନ୍ଦ୍ର ଦାଶ ତାଙ୍କ ବୋଦାମୁଣ୍ଡାଇ (ସାଲେପୁର)ସ୍ଥିତ ବାସଭବନରେ, ସ୍ୱାଧୀନତା ସଂଗ୍ରାମରେ ସାଲେପୁର ମାଟିର ଅବଦାନ ବିଷୟରେ ବିଗତ ଦିନର କିଛି ସ୍ମୃତି କିଛି ଅନୁଭୂତି । ସ୍ୱାଧୀନତାର ପୃଷ୍ଠଭୂମିରେ କିଛି ଦେଶପ୍ରେମୀ ସଂଗ୍ରାମୀଙ୍କ କୃତି, ଦେଶମାତୃକା ପ୍ରତି ଚରମ ଅନୁରକ୍ତି ରଖିଥିବା ସଂଗ୍ରାମର ପ୍ରଚ୍ଛଦପଟରେ ଥିବା ଶ୍ରଦ୍ଧାଳୁ ଦେଶଭକ୍ତଙ୍କ କଥା । ସ୍ୱାଧୀନତା ଦିବସ ଅବସରରେ ଦେଶ ପାଇଁ ପ୍ରାଣବଳୀ ଦେଇଥିବା ସ୍ୱାଧୀନତା ସଂଗ୍ରାମୀର ମାନ୍ୟତା ପାଇଥିବା, ପରଦା ପଛର କୋଟି କୋଟି ଆଘୋଷିତ ଯୋଦ୍ଧା– ସଂଗ୍ରାମୀମାନଙ୍କୁ ଶ୍ରଦ୍ଧାସୁମନ ଅର୍ପଣ କରିବାରେ କୃପଣତା ପ୍ରକାଶ କଲେ ନିଜକୁ ଜଣେ ଭାରତୀୟ ବୋଲି ଗର୍ବକରି ହେବନାହିଁ ।

ଜାତିର ଜନକ ମହାତ୍ମା ଗାନ୍ଧୀ ସାରା ଦେଶରେ ଭାରତୀୟଙ୍କ ମନରେ ବୁଣି ଦେଇଥାନ୍ତି ଅହିଂସା ଓ ଦେଶପ୍ରୀତିର ମଞ୍ଜି । ତାହା ଦେଶର କୋଣ ଅନୁକୋଣରେ ଫୁଲ ହୋଇ ଫୁଟିଥିଲା । ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଦେଶର ବହୁ ଦେଶଭକ୍ତ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ଏହି ସଂଗ୍ରାମରେ ଯୋଗ ଦେଇଥିଲେ ସାଲେପୁର ଅଞ୍ଚଳର ବହୁ ମାନ୍ୟଗଣ୍ୟ ବ୍ୟକ୍ତିତ୍ୱମାନେ । ସହିଦ୍ ନିରଞ୍ଜନ ଘୋଷ, ଯାହାଙ୍କ ନାମରେ ସହିଦ୍ ନିରଞ୍ଜନ ତାଳଗୁଡ ଅନୁଷ୍ଠାନ ବହୁଗ୍ରାମଠାରେ ସ୍ଥାପିତ ହୋଇଅଛି । ତାଙ୍କ ସହିତ ତାଙ୍କ ଭାଇ ଅନିଲ ଘୋଷ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ସୁରେନ୍ଦ୍ରନାଥ ପଟ୍ଟନାୟକ, ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର, ଆକୁଳାନନ୍ଦ ବେହେରା, ବିରଜା ରାୟ, ଦେବେନ୍ଦ୍ରନାଥ ଜେନା ପ୍ରମୁଖ ଯୋଗ ଦେଇଥିଲେ । ସେତେବେଳର ସାଲେପୁର ଅଞ୍ଚଳ କହିଲେ ବର୍ତ୍ତମାନର ମାହାଙ୍ଗା, ସାଲେପୁର ଓ ନିଶ୍ଚିନ୍ତକୋଇଲି ବ୍ଲକ ତଥା ଏହାର ଆଖପାଖ ଅଞ୍ଚଳକୁ ହିଁ ବୁଝାଏ । ସଂଗ୍ରାମୀ ଚନ୍ଦ୍ରଶେଖର ମିଶ୍ର ସାଲେପୁରଠାରେ ଆବାସିକ ସଂସ୍କୃତ ବିଦ୍ୟାଳୟ ଚଳାଉଥାନ୍ତି । ସ୍ୱାଧୀନତା ସଂଗ୍ରାମୀମାନଙ୍କର ଏହାହିଁ ମିଳନ ସ୍ଥଳୀ ପାଲଟିଯାଇଥାଏ । ମଝିରେ ମଝିରେ ସ୍ୱାଧୀନତା ସଂଗ୍ରାମୀମାନଙ୍କର ବୈଠକ ମଧ୍ୟ ଏଠାରେ ବସେ । ସେହି ପବିତ୍ର ପୀଠକୁ ପରବର୍ତ୍ତୀ ଅବସ୍ଥାରେ ସେ ସାଲେପୁର ମହାବିଦ୍ୟାଳୟକୁ ଦାନ ସୂତ୍ରରେ ଦେଇଥିଲେ । ବର୍ତ୍ତମାନ ତାହା ସାଲେପୁର ମହାବିଦ୍ୟାଳୟର ଛାତ୍ରାବାସ ଭାବରେ ବ୍ୟବହୃତ ହେଉଅଛି । ଏମାନଙ୍କ ବ୍ୟତୀତ ଆଉଜଣେ ଅଘୋଷିତ ସଂଗ୍ରାମୀ ପରଦା ପଛର ନାୟକ ଥିଲେ ଶ୍ରୀଯୁକ୍ତ ବିକଳାନନ୍ଦ କର, ଯାହାଙ୍କୁ ଅତି ଶ୍ରଦ୍ଧାରେ ସମସ୍ତେ ବିକଳାନା ବୋଲି ଡାକନ୍ତି । ସମୟତ ନଇ ହୋଇ ବହି ଯାଇଛି ଅନେକ ସ୍ମୃତି ଓ ସ୍ମାରକୀକୁ ସାଙ୍ଗରେ ନେଇ । ସେଇ ଅସ୍ପଷ୍ଟ ସ୍ମୃତିକୁ ଜାଗରୁକ କରି ଆଜିର ଏହି ଆଲେଖ୍ୟ ।

ସେତେବେଳର ସାଲେପୁର ବଜାର କହିଲେ ଅଳ୍ପ କେତେକ ଦୋକାନରେ ସୀମିତ ଥିଲା । କଟକରୁ କେନ୍ଦ୍ରାପଡା ଯିବା ରାସ୍ତାରେ ପ୍ରାୟତଃ ମଧ୍ୟଭାଗରେ ପଡୁଥିବାରୁ ଏବଂ ସାଲେପୁରଠାରେ ବିକଳାନନ୍ଦ କରଙ୍କର ଜଳଖିଆ ରୁଚିକର ଥିବାରୁ ଏଠାରେ ବସ୍ କିଛି ସମୟ ରହେ । ସଂଗ୍ରାମୀମାନଙ୍କ ସହିତ ଅନ୍ତରଙ୍ଗ ହେବାକୁ ଏଇ ବୋଧେ ସଠିକ୍ ସମୟ ଓ ସୁଯୋଗ ଥିଲା ତାଙ୍କ ପାଇଁ । ଶ୍ରଦ୍ଧା ନଥିଲେ କାହିଁକି ଜଣେ ନିଜ ସ୍ୱାର୍ଥ ତ୍ୟାଗ କରି ସଂଗ୍ରାମୀ ହେବ ଯେ ? ଏହି ଦେଶପ୍ରେମୀ ବିକଳାନନ୍ଦ କରଙ୍କ ଜନ୍ମ ୧୯୦୨ ମସିହା କାର୍ତ୍ତିକ ଚତୁର୍ଦ୍ଦଶୀ ତିଥିରେ ଏବଂ ତିରୋଧାନ ୧୯୭୧ ମସିହା ଅଗଷ୍ଟ

୧୨ ତାରିଖ ଦିନ ହୋଇଥିଲା । ତାଙ୍କ ଜଳଖିଆ ଦୋକାନ- ଯେଉଁଠି ସଂଗ୍ରାମୀମାନଙ୍କର ପାଦଧୂଳି ପଡିଥିଲା, ତାହାକୁ ଐତିହାସିକ ସ୍ଥଳୀ କହିଲେ ଭୁଲ ହେବନାହିଁ । ତାଙ୍କର ଆବର୍ତ୍ତମାନରେ ତାଙ୍କ ନାମରେ ପ୍ରତିଷ୍ଠିତ ବିକଳାନନ୍ଦ କର ଫାଉଣ୍ଡେସନ୍ ବହୁ ଗରିବ ମେଧାବୀ ଛାତ୍ରଛାତ୍ରୀମାନଙ୍କୁ କଲେଜରେ ପଢିବା ପାଇଁ ବହିପତ୍ର ଓ ଅର୍ଥ ସାହାଯ୍ୟ କରି ଆସୁଛି ।

ସ୍ୱାଧୀନତା ସଂଗ୍ରାମ ସମୟର କଥା । ଦିନେ ଏକ ବିରଳ ସୁଯୋଗ ଆସି ପହଞ୍ଚିଲା ତାଙ୍କ ପାଇଁ । ୧୯୪୨-୪୩ ମସିହା, ଖରାଦିନ । କର ମହାଶୟଙ୍କର ଅତିଥି ହେଲେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପଢିହାରୀ । କିଛିଦିନ ପାଇଁ ପୋଲିସର ଆଖି ଆଢୁଆଳରେ ତାଙ୍କୁ ଲୁଚାଇ ରଖିଥିଲେ ଅତି ଆଗ୍ରହରେ । ସେଦିନ ସମୟ ପ୍ରାୟ ରାତି ୧୦.୦୦-୧୦.୩୦ ଘଟିକା ହେବ । ବିକଳାନନ୍ଦଙ୍କ ସାଙ୍ଗରେ ତାଙ୍କ ଘରକୁ ଆସିଲେ ପଢିହାରୀ ମହାଶୟ, ଯାହାଙ୍କ ନାମରେ ନାମିତ ପଢିହାରୀ ପାଠାଗାର ବିଦ୍ୟମାନ । କରବାବୁଙ୍କର ଏକ ବାହାରିଆ ଘର ଥାଏ। ସେଇ ଘରଟି ଥିଲା ଶାଳକ କୃଷ୍ଣଚନ୍ଦ୍ରଙ୍କ ପଢାଘର । ସେଇଠି ହେଲା ପଢିହାରୀ ମହାଶୟଙ୍କ ଗୁପ୍ତ ବିଶ୍ରାମସ୍ଥଳୀ । ବ୍ରିଟିଶ ପୋଲିସର ଭୟ । ତେଣୁ ଘର ଭିତରେ ଛଣଗଦା କରାଗଲା । ବାହାରୁ ଯେ ଦେଖିବ ଜାଣିବ ଏହା ଏକ ଛଣ ରହିବା ଘର । ତାଙ୍କ ରହଣୀ କାଳ ୧୫ଦିନ ଯାକ ସେତେବେଳର ସପ୍ତମ ଶ୍ରେଣୀରେ ପଢୁଥିବା କୃଷ୍ଣଚନ୍ଦ୍ରଙ୍କ ହେପାଜତରେ କଟିଲା । ସକାଳୁ ଦାନ୍ତକାଠି, ଚାହା, ପାନ, ଜଳଖିଆ ଓ ଭୋଜନର ଦେଖାଶୁଣା ଅତି ଆଗ୍ରହରେ କରନ୍ତି ବାଳକ କୃଷ୍ଣଚନ୍ଦ୍ର । ବେଳେବେଳେ କୌତୁକରେ ଗଣିତ ପଚାରନ୍ତି ପଢିହାରୀ ମହାଶୟ । ଯେମିତି ଆସିଥିଲେ ସେମିତି ଦିନେ ଅନ୍ଧାର ରାତିରେ ପଢିହାରୀ ମହାଶୟ ସେ ସ୍ଥାନ ଛାଡି ଚାଲିଯାଇଥିଲେ ।

ଜୀବନକୁ ବାଜି ଲଗେଇ ପୋଲିସ ଗୁଳି ଆଗରେ ଛାତି ପତେଇ ମୃତ୍ୟୁ ଭୟରେ ବଞ୍ଚି ଗାଁକୁ ଗାଁ ବୁଲି ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରୁଥିବା ଏହି ସଂଗ୍ରାମୀମାନଙ୍କର ନିଷ୍ପାପର ଉଦ୍ୟମ ଫଳରେ ଦେଶ ପରାଧୀନତାର ଅନ୍ଧାର ଭିତରୁ ସ୍ୱାଧୀନତାର ଆଲୋକ ଦେଖିଲା । ସେତେବେଳେ କିଶୋର କୃଷ୍ଣଚନ୍ଦ୍ର ପଢୁଥିଲେ ଖ୍ରୀଷ୍ଟ ମହାବିଦ୍ୟାଳୟରେ । ଖ୍ରୀଷ୍ଟ ମହାବିଦ୍ୟାଳୟର ସେସମୟର ନାମଥିଲା ଉତ୍କଳ ଖ୍ରୀଷ୍ଟିୟାନ୍ କଲେଜ । ଓଡ଼ିଶା ମିସନାରୀ ସ୍କୁଲରେ ଚାଲୁଥିଲା ଉକ୍ତ କଲେଜ । ସ୍ୱାଧୀନତାର ପୂର୍ବ ରାତିରେ କଟକ ସହର ସାରା ଆଲୋକ ମାଳାରେ ଝଲସୁ ଥିଲା । କିଶୋର କୃଷ୍ଣଚନ୍ଦ୍ର ସାଙ୍ଗମାନଙ୍କ ସାଙ୍ଗରେ ରାତିରେ ସହର ସାରା ବୁଲୁଥିଲେ ସ୍ୱାଧୀନତା ପ୍ରାପ୍ତିର ଆନନ୍ଦରେ ଆତ୍ମହରା ହୋଇ । ଯିଏ କି ପରବର୍ତ୍ତୀ ପର୍ଯ୍ୟାୟରେ ଜଣେ ଆଦର୍ଶ ଶିକ୍ଷକ ଭାବେ ନିଜକୁ ପ୍ରତିଷ୍ଠିତ କରିଥିଲେ । ଦେଶ ଗଢିବା ପାଇଁ ସୃଷ୍ଟି କରିପାରିଥିଲେ କିଛି ଆଦର୍ଶ ଛାତ୍ର- ଭବିଷ୍ୟତର ନାଗରିକ ।

କଲେଜ ରୋଡ୍, ସାଲେପୁର
ମୋ- ୯୩୩୮୫୪୫୪୪୦

## ଭିନ୍ନକ୍ଷମଙ୍କ ପାଇଁ ପରିବହନ ବିଭାଗର ତତ୍ପରତା

ଭିନ୍ନକ୍ଷମମାନଙ୍କ ସୁବିଧା ପାଇଁ ପରିବହନ ମନ୍ତ୍ରୀଙ୍କ ନିର୍ଦ୍ଦେଶକ୍ରମେ ରାଜ୍ୟ ସଡକ ପରିବହନ ନିଗମ ତରଫରୁ ଗୋଟିଏ ବସ୍ ଖୁବ୍‌ଶୀଘ୍ର ଭୁବନେଶ୍ୱର, ଫୁଲନଖରା ବାଟ ଦେଇ ଓଲଟପୁର ଚାଲିବ । ଏହି ବସ୍‌ଟି ଚାଲିବା ଫଳରେ ଯେଉଁ ଭିନ୍ନକ୍ଷମ ବ୍ୟକ୍ତିମାନେ ଚିକିତ୍ସା ପାଇଁ ଓଲଟପୁର ଯାଉଛନ୍ତି, ସେମାନେ ସୁବିଧାରେ ସେଠାରେ ପହଞ୍ଚି ପାରିବେ । ସରକାରୀ ନିୟମ ଅନୁଯାୟୀ ଶତକଡା ପଚାଶ ଭାଗରୁ ଅଧିକ ଅକ୍ଷମତା ଥିଲେ, ସମ୍ପୃକ୍ତ ବ୍ୟକ୍ତି ଶତପ୍ରତିଶତ ଗାଡିଭଡା ଛାଡ ପାଇବା ସଙ୍ଗେ ସଙ୍ଗେ ତାଙ୍କ ସହିତ ଯାଉଥିବା ଯାତ୍ରୀ ମଧ୍ୟ ପଚାଶ ପ୍ରତିଶତ ଭଡା ରିହାତି ପାଇପାରିବେ ।

ଏହି ନିଷ୍ପତ୍ତି ପାଇଁ ଭିନ୍ନକ୍ଷମ କମିଶନର ଶ୍ରୀମତୀ କସ୍ତୁରୀ ମହାପାତ୍ର ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀ ସଞ୍ଜୀବ କୁମାର ସାହୁଙ୍କୁ କୃତଜ୍ଞତା ଜ୍ଞାପନ କରିଛନ୍ତି ।

# ପାଇକ ବିଦ୍ରୋହର ଶେଷ ଝଲକ

ଡକ୍ଟର ହେମନ୍ତ କୁମାର ଛୋଟରାୟ

ଭାରତବର୍ଷରେ ସ୍ୱାଧୀନତା ସଂଗ୍ରାମ ଆରମ୍ଭର ବହୁ ପୂର୍ବରୁ ଓଡ଼ିଶାରେ ଇଂରେଜ ସରକାର ବିରୁଦ୍ଧରେ ଯେଉଁ ପାଇକ ବିଦ୍ରୋହର ସୂତ୍ରପାତ ଘଟିଥିଲା, ତାହା ଅତ୍ୟନ୍ତ ଲୋମହର୍ଷଣକାରୀ ଓ ରୋମାଞ୍ଚକର ମଧ୍ୟ । ଦୁର୍ଦ୍ଧର୍ଷ ଓଡ଼ିଆ ପାଇକବାହିନୀ ଦେହରେ ଶେଷ ରକ୍ତବିନ୍ଦୁ ଥିବା ଯାଏଁ ଲଢ଼େଇକୁ ଶ୍ରେୟ ମନେକରି କାଉଁରିଆ କାଠି ସଦୃଶ ମୃତ୍ୟୁକୁ ଆଦରି ନିଅନ୍ତି, ହେଲେ ମଥାନତ ଭଳି ଘୃଣ୍ୟ କାର୍ଯ୍ୟକୁ ପ୍ରଶ୍ରୟ ଦିଅନ୍ତି ନାହିଁ । ସେଥିପାଇଁ ଇଂରେଜମାନେ ଓଡ଼ିଶା ସଂପୂର୍ଣ୍ଣ ଅଧିକାର କରିବାକୁ ବହୁ କଷ୍ଟ ସ୍ୱୀକାର କରିଥିଲେ । ବିଶେଷ କରି ୧୮୧୭ ମସିହାରେ ଖୋରଧା ପାଇକ ବିଦ୍ରୋହ ତାଙ୍କ ପାଇଁ ପ୍ରତିବନ୍ଧକ ରୂପେ ଦଣ୍ଡାୟମାନ ହୋଇଥିଲା । ପରବର୍ତ୍ତୀ ସମୟରେ କଳେବଳେ କୌଶଳେ ପାଇକମାନଙ୍କ ବିରୋଧକୁ ପ୍ରତିହତ କରି ଶେଷରେ ଖୋରଧାକୁ ନିଜ ଅଧୀନକୁ ଆଣିବା ପାଇଁ ସକ୍ଷମ ହୋଇଥିଲେ ଇଂରେଜମାନେ ।

ପାଇକନେତା ସେନାପତି ବକ୍ସି ଜଗବନ୍ଧୁଙ୍କ ଆତ୍ମସମର୍ପଣ ଓ ଜୟୀ ରାଜଗୁରୁଙ୍କ ଫାଶୀ ପରେ ପାଇକ ବିଦ୍ରୋହ ପ୍ରାୟ ପ୍ରଶମିତ ହୋଇଯାଇଥିଲେ ହେଁ ଖୋରଧାର ତାପଙ୍ଗ ଗଡ଼ରେ ୧୮୨୭ ମସିହା ବେଳକୁ ପୁନଶ୍ଚ ଏକ ବିଦ୍ରୋହର ଅଗ୍ନି ସଂଯୋଗ କରିଥିଲେ ଗଡ଼ର ଦଳବେହେରା ସାମନ୍ତ ମାଧବଚନ୍ଦ୍ର ରାଉତରାୟ । ଯବନମାନଙ୍କ ଅତ୍ୟାଚାରରୁ ରାଜ୍ୟକୁ ରକ୍ଷା କରିବା ଓ ଶାନ୍ତିରେ ରାଜ୍ୟ ଶାସନ ପାଇଁ ରାଜା ଦିବ୍ୟସିଂହ ଦେବଙ୍କୁ ଯେଉଁ ପାଇକ ସେନାପତି ସାହାଯ୍ୟ କରିଥିଲେ, ସେମାନଙ୍କ ମଧ୍ୟରୁ ନରସିଂହ ରାଉତରାୟ ଅନ୍ୟତମ । ନରସିଂହଙ୍କ ବୀରତ୍ୱ ଓ କାର୍ଯ୍ୟଦକ୍ଷତା ଯୋଗୁଁ ଯବନମାନେ ପରାଜୟ ବରଣ କରି ଆକ୍ରମଣରୁ କ୍ଷାନ୍ତ ହୋଇଥିଲେ । ରାଜା ସନ୍ତୁଷ୍ଟ ହୋଇ ନରସିଂହଙ୍କ ମଥାରେ ପାଟଶିରପା ବାନ୍ଧି ତାପଙ୍ଗଗଡ଼ ସ୍ଥାପନ କରିଥିଲେ । ସେହି ବଂଶର ଉତ୍ତରାଧିକାରୀ ହେଉଛନ୍ତି ମାଧବଚନ୍ଦ୍ର ରାଉତରାୟ । ସେ ରୂପ-ଗୁଣ, ବୁଦ୍ଧି-ବିଦ୍ୟା, ଦାନ-ଧର୍ମ, ବୀରତ୍ୱ, ସାହସିକତା, ଦେଶପ୍ରେମ ଓ ଉଦାରତାରେ ଥିଲେ ସମସ୍ତଙ୍କଠାରୁ ଊର୍ଦ୍ଧ୍ୱରେ ।

ଇଂରେଜ ଶାସନ ପ୍ରତି ପାଇକମାନଙ୍କ ବିମୁଖତା ଓ ଉଗ୍ର ଦେଶପ୍ରେମ ଯୋଗୁଁ ଦୀର୍ଘବର୍ଷ ଧରି ତାପଙ୍ଗ ଗଡ଼ରୁ ଖଜଣା ପାଇବା ପାଇଁ ସକ୍ଷମ ହେଉନଥିଲେ ତତ୍କାଳୀନ ଖୋରଧା ସାହେବ । ପାଇକମାନେ ଗଡ଼ର ସାମନ୍ତ ଦଳବେହେରାଙ୍କୁ ଖଜଣା ଦେବା ଛଡ଼ା ଅନ୍ୟ କାହାକୁ କାଣି କଉଡ଼ିଟିଏ ଦେବେ ନାହିଁ ବୋଲି ଦୃଢ଼ଭାବେ ମତପ୍ରକାଶ କରି ଆସୁଥିଲେ । ହଠାତ୍ ଦିନେ ଦଳେ ଗୋରା ସୈନ୍ୟମାନଙ୍କ ସହ ଖଜଣା ଆଦାୟ ପାଇଁ ପିଆଦା ପହଞ୍ଚି ଚିନ୍ତାମଣି ରଣସିଂହଙ୍କ ଦ୍ୱାରରେ ଜୁଲମ ଆରମ୍ଭ କଲେ । ପାଇକନାରୀ ଚିନ୍ତାମଣିଙ୍କ ଧର୍ମପତ୍ନୀ ହାରାମଣି ଡରିନଯାଇ ପନିକି ଧରି ସେମାନଙ୍କୁ ଆକ୍ରମଣ କରିବା ସହ ଗ୍ରାମର ପାଇକମାନେ କାଳବିଳମ୍ବ ନକରି ଗୋରା ସିପାହୀଙ୍କୁ ବିତାଡ଼ିତ କରିବା ପାଇଁ ଆଗେଇ ଆସିବାକୁ ଆହ୍ୱାନ ଦେଇଥିଲେ । ତତ୍‌କ୍ଷଣାତ ସେହି ଗ୍ରାମର ଗୋବର୍ଦ୍ଧନ ବୈରିଗଞ୍ଜନ ଓ ଭାଗୀରଥି ଦଳସିଂହ ଗୋରା ଫଉଜଙ୍କୁ ଘଉଡ଼ାଇବା ପାଇଁ ବନ୍ଧୁକ, ବର୍ଛା, ପାଟ୍ଟଖଣ୍ଡା ଧରି ବୀରଦର୍ପରେ ଆକ୍ରମଣ କଲେ । ଗୋବର୍ଦ୍ଧନଙ୍କ ବନ୍ଧୁକ ଗୁଳିରେ ଦୁଇଜଣ ସିହାହୀଙ୍କର ମୃତ୍ୟୁ ହେଲା ଓ ଅନ୍ୟମାନେ ଭୟ, ଆତଙ୍କରେ ତାପଙ୍ଗଗଡ଼ରୁ ପଳାୟନ କରି ଖୋରଧା ଫେରିଗଲେ । ପାଇକମାନଙ୍କ ଦ୍ୱାରା ପରାଜିତ ଫଉଜଠାରୁ ସମସ୍ତ ବୃତ୍ତାନ୍ତ ଶୁଣି କ୍ରୋଧ ଜର୍ଜରିତ ଗୋରା ସାହେବ କଟକକୁ ବାର୍ତ୍ତା ଦେଇ ତାପଙ୍ଗଗଡ଼ର ବିଦ୍ରୋହ ଦମନ ଉଦ୍ଦେଶ୍ୟରେ କର୍ଣ୍ଣେଲ ହାର୍‌କୋଟ୍‌ଙ୍କୁ ଡକାଇ ଆଣିଲେ ।

କର୍ଣ୍ଣେଲ ହାରକୋଟ ଖୋରଧାରେ ପାଦଦେବା ମାତ୍ରେ ଏକ ପତ୍ର ମାଧ୍ୟମରେ ତାପଙ୍ଗଗଡ଼ ଦଳବେହେରା ମାଧବ ରାଉତରାୟଙ୍କୁ

ଜଣାଇ ଦେଲେ ଯେ, 'ଦଶ ବର୍ଷର ବକେୟା ଖଜଣା ପଇଠ କରିବା ସହ ଦୁଇଜଣ ଇଂରେଜ ସୈନ୍ୟ ହତ୍ୟା କରିଥିବା କାରଣରୁ ତୁରନ୍ତ ଆସି କ୍ଷମାପ୍ରାର୍ଥନା କର । ନଚେତ୍ ପ୍ରତିଫଳ ଭୋଗିବାକୁ ପ୍ରସ୍ତୁତ ହୋଇ ରହ ।' ପତ୍ରଟି ଦଳବେହେରାଙ୍କ ଚଉପାଢ଼ିରେ ସମସ୍ତଙ୍କ ଉପସ୍ଥିତିରେ ପାଠ କରାଯିବା ପରେ ପାଇକମାନେ ଉତ୍ତେଜିତ ହୋଇଉଠିଲେ । କର୍ଣ୍ଣେଲଙ୍କୁ ମୁକାବିଲା କରିବାପାଇଁ ଦେଇଥିଲେ ରଣ ହୁଙ୍କାର । ପାଇକମାନେ ଜନ୍ମଭୂମିର ସ୍ୱାଧୀନତା ରକ୍ଷା କରିବାପାଇଁ ପ୍ରାଣବଳି ଦେବେ ପଛେ ଗୋରାଙ୍କ ପାଦତଳେ ମଥାନତ କରିବେ ନାହିଁ ବୋଲି ନେଇଥିଲେ ବଜ୍ରଶପଥ । ସେଇ ଶପଥ ଓ ରଣହୁଙ୍କାର ସେଦିନ ତାପଙ୍ଗ ମାଟିର ଗଗନ ପବନକୁ ପ୍ରକମ୍ପିତ କରିଥିଲା । ମାଧବ ରାଉତରାୟ ଗଡ଼ର ଅଧିଷ୍ଠାତ୍ରୀ ଦେବୀ ମା' ହସ୍ତେଶ୍ୱରୀଙ୍କ ପୂଜାପାର୍ବଣ କରି ଯୁଦ୍ଧରେ ବିଜୟଲାଭ ନିମନ୍ତେ କରୁଣା ଭିକ୍ଷା କଲେ । ହସ୍ତେଶ୍ୱରୀ ଦେବୀ ଗଡ଼ର ସାମନ୍ତଙ୍କୁ ସ୍ୱପ୍ନରେ ଅଭୟ ପ୍ରଦାନ କରିବା ପରେ ଗୋରାମାନଙ୍କ ବିରୁଦ୍ଧରେ ଲଢ଼େଇ କରିବାପାଇଁ ଗଜପତିଙ୍କ ଅନୁମତି ଲୋଡ଼ିଲେ ଓ ସମସ୍ତ ଗଡ଼ର ଦଳବେହେରା, ଦଳେଇ, କୋଠ କରଣମାନଙ୍କୁ ଯୁଦ୍ଧରେ ସହାୟତା କରିବାକୁ ନିବେଦନ କଲେ । ଅନୁରୋଧ ରକ୍ଷା କରି ସମସ୍ତ ଗଡ଼ର ଦଳେଇ, ଦଳବେହେରା ପାରମ୍ପରିକ ଅସ୍ତ୍ରଶସ୍ତ୍ର ସହ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ଆସି ନିଜ ନିଜର ଦାୟିତ୍ୱ ବହନ କଲେ । ୧୮୨୭ ମସିହା ଜୁନ ମାସ ୨୬ ତାରିଖ ଦିନ ତାପଙ୍ଗ ସନ୍ନିକଟ କାଣ୍ଡଗୋଦା ପଡ଼ିଆରେ ଫିରିଙ୍ଗି ସୈନ୍ୟ ଓ ପାଇକବାହିନୀ ମଧ୍ୟରେ ଘୋର ଯୁଦ୍ଧ ସଂଗଠିତ ହୋଇଥିଲା । ଯୁଦ୍ଧରେ ପାଇକମାନଙ୍କ ପକ୍ଷରୁ ସେନାପତିତ୍ୱ କରୁଥିଲେ ବୀର ଧନୁର୍ଜ୍ଜୟ ଶ୍ରୀଚନ୍ଦନ । ଧନୁର୍ଜ୍ଜୟ ଓ ଗୋବର୍ଦ୍ଧନ ମିଶି ବହୁ ଗୋରା ସୈନ୍ୟଙ୍କୁ ମାରି ପକାଉଥିଲେ । ଯୁଦ୍ଧ ଚାଲିଥାଏ, କର୍ଣ୍ଣେଲ ହାରକୋଟଙ୍କ ଗୁଳିରେ ଧନୁର୍ଜ୍ଜୟ ନିହତ ହେଲେ । ଧନୁର୍ଜ୍ଜୟଙ୍କ ମୃତ୍ୟୁ ସମ୍ବାଦରେ ବ୍ୟଥିତ ଓ ମର୍ମାହତ ହୋଇ ମାଧବଚନ୍ଦ୍ର ଯୁଦ୍ଧ କ୍ଷେତ୍ରରେ ନିଜେ ଅବତୀର୍ଣ୍ଣ ହେଲେ ଓ ଶହ ଶହ ଗୋରା ସୈନ୍ୟଙ୍କ ମୁଣ୍ଡକାଟି ଚାଲିଲେ । ରକ୍ତ ରଞ୍ଜିତ ହୋଇଗଲା କାଣ୍ଡଗୋଦା ପଡ଼ିଆ । ଏହାଦେଖି କର୍ଣ୍ଣେଲ ହତୋତ୍ସାହିତ ହୋଇ ତାପଙ୍ଗଗଡ଼ ଜୟ କରିବା ଆଶା ଛାଡ଼ିଦେଲେ । ଏତିକିବେଳେ ଦଧିମାଛଗାଡ଼ିଆର ମଧୁ ପଟ୍ଟନାୟକ ଚାକିରି ଓ ନିଷ୍କର ସଂପତ୍ତି ଲୋଭରେ ବିଶ୍ୱାସଘାତକତା କରି କର୍ଣ୍ଣେଲଙ୍କୁ ମାଧବ ଚନ୍ଦ୍ରଙ୍କ ଗୁପ୍ତ ଅସ୍ତ୍ରାଗାରର ସନ୍ଧାନ ଦେଇଦେଲେ । ଗଡ଼ର ଅଧିଷ୍ଠାତ୍ରୀ ପ୍ରତ୍ୟକ୍ଷ ଦେବୀ ହସ୍ତେଶ୍ୱରୀ ସୈନିକ ବେଶରେ ଯୁଦ୍ଧ କରୁଥିଲେ । ଗୋରୁରକ୍ତରେ ପରମ ବୈଷ୍ଣବୀଙ୍କୁ ଅପବିତ୍ର କରାଗଲେ ସେ ଯୁଦ୍ଧ କ୍ଷେତ୍ରରୁ ଆଡ଼ ହୋଇଯିବେ । ମଧୁଙ୍କଠାରୁ ଏହି ସୂଚନା ପାଇ ଯୁଦ୍ଧର ସପ୍ତମ ଦିନ ଗୁପ୍ତ ଅସ୍ତ୍ରାଗାର ଦଖଲ କଲେ । ଗୋରାମାନେ ଓ ଗୋରକ୍ତବୋଳା ଗୁଳିଚାଳନା ହେବାରୁ ମା'ହସ୍ତେଶ୍ୱରୀ ଯୁଦ୍ଧରୁ ଦୂରେଇ ରହିଲେ । ଫଳରେ ପାଇକ ସେନାଙ୍କର ବିପର୍ଯ୍ୟୟ ଘଟିଲା । ମାଧବ ଓ ପାଇକସେନା ପଛଘୁଞ୍ଚା ଦେବାପାଇଁ ବାଧ୍ୟ ହୋଇଥିଲେ ।

ପରାଜୟବରଣ କରିଥିଲେ ହେଁ ମାଧବ ରାଉତରାୟ ଯାଇ ଶ୍ୱଶୁର ଘର ବଡ଼ପାରିରେ ଆତ୍ମଗୋପନ କରୁଥିଲା ବେଳେ ଚିଲିକା କୂଳର ଲୁଣମରାଳୀମାନଙ୍କ ଉପରେ ଇଂରେଜମାନଙ୍କ ଅତ୍ୟାଚାରକୁ ସହ୍ୟ କରିପାରିଲେ ନାହିଁ । ନିଜ ଆଖିରେ ଗରିବ ମହିଳାମାନଙ୍କ ଉପରେ ଛାଟ ପ୍ରହାର ଓ ସେମାନଙ୍କ ବିକଳ କ୍ରନ୍ଦନ ଦେଖି ତାଙ୍କ ବୀରରକ୍ତ ତାତି ଉଠିଲା । ତାଙ୍କ ବନ୍ଧୁକ ମୁନରୁ ଗୁଳି ଛୁଟି ଆସି ଇଂରେଜ ସୁବେଦାର ଓ ଜମାଦାରଙ୍କ ଶରୀରବିଦ୍ଧ କଲା । ଏମାନଙ୍କ ମୃତ୍ୟୁ ଖବର ପାଇ କ୍ରୋଧାନ୍ୱିତ ଖୋରଧା ସାହେବ ହତ୍ୟାକାରୀକୁ ତୁରନ୍ତ ବନ୍ଦୀ କରି ଆଣିବାପାଇଁ ଆଦେଶ ପ୍ରଦାନ କଲେ । ଅନୁସନ୍ଧାନ କରି ଗୋରାମାନେ ଜାଣିବାକୁ ପାଇଲେ ଯେ, ହତ୍ୟାକାରୀ ହେଉଛନ୍ତି ମାଧବଚନ୍ଦ୍ର । ଗୋପନରେ ସେ ପୁନଶ୍ଚ ପାଇକମାନଙ୍କ ମେଳି କରୁଛନ୍ତି । ମଧୁ ପଟ୍ଟନାୟକ ସାହେବଙ୍କୁ ମାଧବଙ୍କ ଶ୍ୱଶୁର ଘର ଠିକଣା ଦେବାରୁ ବଡ଼ପାରିରେ ଗୋରା ଫଉଜମାନଙ୍କର ଏକ ଛାଉଣୀ ହୋଇଥିଲା । ହେଲେ ମଧ୍ୟ ମାଧବଙ୍କୁ ବନ୍ଦୀ କରିବା ଇଂରେଜମାନଙ୍କ ପକ୍ଷେ ସମ୍ଭବ ହେଲା ନାହିଁ । ବାଧ୍ୟ ହୋଇ ସାହେବ ପ୍ରଲୋଭନ ସ୍ୱରୂପ ମାଧବଙ୍କ କଟାମୁଣ୍ଡ ଯିଏ ଆଣିଦେବ ତାହାକୁ ସୁବର୍ଣ୍ଣଥାଳି ପୁରସ୍କାର ଦେବାପାଇଁ ଘୋଷଣା କଲେ । ଏହି ପ୍ରଲୋଭନର କେହି ହେଲେ ବଶବର୍ତ୍ତୀ ହେଲେ ନାହିଁ । ପାଇକ ବୀର ମାଧବଙ୍କୁ ଧରାଇ ଦେବାକୁ କିଏ ବା କାହିଁକି ଆଗେଇ ଆସିବ ? ଇଂରେଜମାନଙ୍କ ଏହି ଯୋଜନା ମଧ୍ୟ ସଫଳ ହେଲା ନାହିଁ ।

ମାଧବଙ୍କ ବୀରତ୍ୱ ଓ ଦେଶପ୍ରେମଠାରୁ ତ୍ୟାଗ ଓ ଉଦାରତା ତାଙ୍କ କୃତିତ୍ୱକୁ ଦ୍ୱିଗୁଣିତ କରିଛି । ସୋରଣ ଗ୍ରାମର ଜଣେ ଗରିବ କୈବର୍ତ୍ତ ଚିନ୍ତାଜାଳିକୁ ସାହାଯ୍ୟ କରିବା ପାଇଁ ସେ ଖୋରଧା ମିସଲ ସାହେବ ନିକଟରେ ଆତ୍ମସମର୍ପଣ କରିଥିଲେ । କୈବର୍ତ୍ତ ଜଣକ ଝଡ଼ବର୍ଷାରେ ନିଜ ରୋଜଗାରର ଏକମାତ୍ର ସାହା ଭରସା ଡ଼ଙ୍ଗାଟିକୁ ହରାଇ ବାହାରିଥାଏ ମାଧବଙ୍କୁ ଦେଖା କରି ସାହାଯ୍ୟ ଭିକ୍ଷା କରିବାପାଇଁ, ହେଲେ ତାପଙ୍ଗଗଡ଼କୁ ଯିବା ପାଇଁ ବାଟ ତାକୁ

ଜଣାନଥାଏ । ନିଶ ଦାଢ଼ି ଛାଡ଼ି ମାଧବ ସେତେବେଳେ ଜଙ୍ଗଲରେ ଏକ ଅସହାୟ ଜୀବନ ବିତାଉଥା'ନ୍ତି । କୈବର୍ତ୍ତ ସହ ଆଳାପରୁ ଜାଣିପାରିଲେ, କୈବର୍ତ୍ତ ତାଙ୍କ ନିକଟରୁ ସାହାଯ୍ୟ ଉଦ୍ଦେଶ୍ୟରେ ତାପଙ୍ଗ ଯାତ୍ରା କରୁଛି । ଚିନ୍ତାଜାଲିର କରୁଣ ପରିସ୍ଥିତି ତାଙ୍କ ହୃଦୟରେ ଆଲୋଡ଼ନ ସୃଷ୍ଟି କଲା । ଜଣେ ନିସ୍ୱ କୈବର୍ତ୍ତ ମାଧବଙ୍କ ଉପରେ ଭରସା ରଖି ଆସିଛି ନିଜର ପରିବାର ବଞ୍ଚାଇବା ପାଇଁ । ଅନ୍ୟ ପକ୍ଷରେ ପରିସ୍ଥିତି, ବଣ ଜଙ୍ଗଲରେ ଲୁଚି ଛପି ରହିବାକୁ ତାଙ୍କୁ ବାଧ କରିଛି । ସେ ଭାବ ବିହ୍ୱଳ ହୋଇପଡ଼ିଲେ । କୈବର୍ତ୍ତକୁ ନିଜର ପରିଚୟ ଦେଲେ ନାହିଁ । ତାପଙ୍ଗ ଗଡ଼ରେ ପହଞ୍ଚାଇ ଡ଼ଙ୍ଗା କ୍ରୟ ନିମନ୍ତେ ଅର୍ଥ ଯୋଗାଡ଼ କରି ଦେବାର ପ୍ରତିଶ୍ରୁତି ଦେଲେ କୈବର୍ତ୍ତକୁ । ନେଇ ଚାଲିଲେ ଖୋରଧା ମିସଲ ସାହେବଙ୍କ ନିକଟକୁ । ସମସ୍ତଙ୍କ ଉପସ୍ଥିତିରେ ସାହେବଙ୍କୁ ଅନୁରୋଧ କଲେ, 'ସୁବର୍ଣ୍ଣ ଥାଳି ଏଇ ଲୋକକୁ ଦିଅ ଯିଏ ସଶରୀରେ ମାଧବ ରାଉତରାୟଙ୍କୁ ଧରି ଆଣି ହାଜର କରେଇଛି ।' ଆଶ୍ଚର୍ଯ୍ୟ ହେଲେ ସାହେବ, ତାଙ୍କ ହୃଦୟ ତରଳିଗଲା । ପରବର୍ତ୍ତୀ ସମୟରେ ସେ ମାଧବଙ୍କୁ ମୁକ୍ତ କରିଦେଇଥିଲେ ।

ପାଇକ ବିଦ୍ରୋହର ଶେଷ ଝଲକ ମାଧବ ରାଉତରାୟ ଥିଲେ ବୀର ଓ ଦେଶପ୍ରେମୀ । କିନ୍ତୁ ଗରିବ ଅସହାୟ କୈବର୍ତ୍ତର ଦୁଃଖପ୍ରତି ତାଙ୍କର ସମ୍ବେଦନଶୀଳତା ଓ ନିଜ ମୁଣ୍ଡ ବିନିମୟରେ କୈବର୍ତ୍ତକୁ ସାହାଯ୍ୟ କରିବା ଗୁଣ ଚିରକାଳ ପାଇଁ ଏକ ଅବିସ୍ମରଣୀୟ ଅଧ୍ୟାୟ ସୃଷ୍ଟି କରିଛି ।

ନାଗାବଗିଚା
ପ୍ରଥମଗଳି
ମଧୁବନ, ପୁରୀ-୨

## ଚଳିତବର୍ଷ ରାଜ୍ୟରେ ଖୋଲିବ ଅତିରିକ୍ତ ୩୦୦ ପ୍ରାଣୀଧନ ସହାୟକ କେନ୍ଦ୍ର

ଗ୍ରାମ ପଞ୍ଚାୟତ ସ୍ତରରେ ପ୍ରାଣୀ ଚିକିତ୍ସା ସେବାକୁ ଆହୁରି ବ୍ୟାପକ କରିବା ଉଦ୍ଦେଶ୍ୟରେ ଚଳିତବର୍ଷ ରାଜ୍ୟର ୩୦ଟି ଜିଲ୍ଲାରେ ଅତିରିକ୍ତ ୩୦୦ ପ୍ରାଣୀଧନ ସହାୟକ କେନ୍ଦ୍ର ଖୋଲିବାକୁ ସରକାର ନିଷ୍ପତ୍ତି ନେଇଛନ୍ତି । ଯେଉଁ ପଞ୍ଚାୟତଗୁଡ଼ିକରେ ଏଯାବତ୍ ପ୍ରାଣୀ ଚିକିତ୍ସା ପ୍ରତିଷ୍ଠାନ ଖୋଲା ଯାଇନାହିଁ, ଅଗ୍ରାଧିକାର ଭିତ୍ତିରେ ସେଠାରେ ଏହି କେନ୍ଦ୍ରମାନ ଖୋଲାଯିବ । ଏଥିପାଇଁ ପ୍ରତ୍ୟେକ ବର୍ଷ ୩୦୦ ପ୍ରାଣୀଧନ ନିରୀକ୍ଷକଙ୍କୁ ନିଯୁକ୍ତି ପ୍ରଦାନ କରାଯିବ । ପ୍ରତି ସହାୟକ କେନ୍ଦ୍ରପାଇଁ ୩ ଲକ୍ଷ ଟଙ୍କା ଖର୍ଚ୍ଚ ଅଟକଳ ଅନୁସାରେ ଏହି କେନ୍ଦ୍ର ଖୋଲିବାରେ ସମୁଦାୟ ୯ କୋଟି ଟଙ୍କା ବ୍ୟୟ ହେବ । କିନ୍ତୁ ଆବଶ୍ୟକୀୟ ଭିତ୍ତିଭୂମି ବିକାଶ ଦିଗରେ ଏହି ଅର୍ଥ ଯଥେଷ୍ଟ ହେଉ ନ'ଥିବାରୁ ଚଳିତବର୍ଷ ଅତିରିକ୍ତ ବଜେଟରେ ଏଥିପାଇଁ ଅଧିକ ଅର୍ଥ ବରାଦ କରାଯିବ ବୋଲି ମତ୍ସ୍ୟ ଓ ପଶୁସଂପଦ ମନ୍ତ୍ରୀ ଶ୍ରୀ ରମେଶ ଚନ୍ଦ୍ର ମାଝୀ ସୂଚନା ଦେଇଛନ୍ତି ।

ମନ୍ତ୍ରୀ ଶ୍ରୀ ମାଝୀଙ୍କ କାର୍ଯ୍ୟାଳୟ ସୂତ୍ରରୁ ପ୍ରକାଶ ଯେ, ରାଜ୍ୟରେ ବର୍ତ୍ତମାନ ସୁଦ୍ଧା ବିଭିନ୍ନ ପଞ୍ଚାୟତରେ ୨୯୩୯ ଟି ପ୍ରାଣୀଧନ ସହାୟକ କେନ୍ଦ୍ର ଖୋଲାଯାଇ ଗାଁ ଗହଳିର ଲୋକମାନଙ୍କୁ ପ୍ରାଣୀଧନ ଚିକିତ୍ସା ସହାୟତା ଯୋଗାଇ ଦିଆଯାଉଛି । ୨୦୧୫ ମସିହା ସୁଦ୍ଧା ରାଜ୍ୟର ସମସ୍ତ ପଞ୍ଚାୟତରେ ପ୍ରାଣୀ ଚିକିତ୍ସା କେନ୍ଦ୍ର ଖୋଲିବାପାଇଁ ଲକ୍ଷ୍ୟ ରଖାଯାଇଛି । ଏହି କ୍ରମରେ ୨୦୧୧-୧୨ ଆର୍ଥିକ ବର୍ଷରେ ରାଜ୍ୟର ୩୦ ଗୋଟି ଜିଲ୍ଲା ଯଥାକ୍ରମେ ଅନୁଗୁଳରେ ୧୨, ବଲେଶ୍ୱରରେ ୧୩, ବରଗଡରେ ୧୨, ଭଦ୍ରକରେ ୧୧, ବଲାଙ୍ଗିରରେ ୧୩, ବଉଦରେ ୪, କଟକରେ ୧୬, ଦେଓଗଡରେ ୪, ଢେଙ୍କାନାଳରେ ୯, ଗଜପତିରେ ୫, ଗଂଜାମରେ ୨୧, ଜଗତସିଂପୁରରେ ୮, ଯାଜପୁରରେ ୧୨, ଝାରସୁଗୁଡାରେ ୩, କଳାହାଣ୍ଡିରେ ୮, କେନ୍ଦ୍ରାପଡାରେ ୭, କେଉଁଝରରେ ୧୫, ଖୋର୍ଦ୍ଧାରେ ୮, କୋରାପୁଟରେ ୧୨, ମାଲକାନଗିରିରେ ୧୩, ମୟୁରଭଞ୍ଜରେ ୨୧, ନୟାଗଡରେ ୧୦, ନବରଙ୍ଗପୁରରେ ୬, ନୂଆପଡାରେ ୫, ଫୁଲବାଣୀରେ ୭, ପୁରୀରେ ୧୧, ରାୟଗଡାରେ ୬, ସମ୍ବଲପୁରରେ ୧୦, ସୋନପୁରରେ ୪ ଏବଂ ସୁନ୍ଦରଗଡରେ ୧୪ ଟି ପ୍ରାଣୀଧନ ସହାୟକ କେନ୍ଦ୍ର ଖୋଲାଯିବ ।

ଏହି କେନ୍ଦ୍ରଗୁଡିକରେ ଆବଶ୍ୟକ ସୁବିଧାସୁଯୋଗ ସୃଷ୍ଟି ଏବଂ ତୁରନ୍ତ କର୍ମଚାରୀ ନିୟୋଜନ ସହ ଗାଁ ଗହଳିର ଲୋକମାନଙ୍କୁ ପ୍ରାଣୀ ଚିକିତ୍ସା ସେବା ଯୋଗାଇଦେବାକୁ ମନ୍ତ୍ରୀ ଶ୍ରୀ ମାଝୀ ବିଭାଗୀୟ ଅଧିକାରୀମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ।

# ଦେଶର ମୁକ୍ତି ଆନ୍ଦୋଳନରେ ଓଡ଼ିଶାର ଭୂମିକା

ଅଧ୍ୟାପକ ବିକ୍ରମ କେଶରୀ ବର୍ମା

ଭାରତର ମୁକ୍ତି ଆନ୍ଦୋଳନରେ ଓଡ଼ିଶା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା, ଏଥିରେ ସନ୍ଦେହ ନାହିଁ ।

ଇଷ୍ଟ ଇଣ୍ଡିଆ କମ୍ପାନୀର କୁଶାସନ ଓ ଲୁଣ୍ଠନ ବିରୋଧରେ ଓଡ଼ିଶା ହିଁ ପ୍ରଥମ ସ୍ୱର ଉତ୍ତୋଳନ କରିଥିଲା ୧୮୧୭ ମସିହାରେ। ସିପାହୀ ବିଦ୍ରୋହର ୪୦ ବର୍ଷ ପୂର୍ବରୁ ଓଡ଼ିଶାର ପାଇକମାନେ ବିଦ୍ରୋହ କରିଥିଲେ। ପ୍ରଥମେ ଘୁମୁସରର କନ୍ଧମାନେ ବିଦ୍ରୋହ କରିଥିଲେ । ବକ୍ସି ଜଗବନ୍ଧୁ, ଜୟୀ ରାଜଗୁରୁ, ଡାପଙ୍ଗ ଦଳବେହେରା ପ୍ରମୁଖ ସେମାନଙ୍କ ସହଯୋଗୀ ପାଇକମାନଙ୍କ ସହ ଏହି ବିଦ୍ରୋହରେ ଯୋଗ ଦେଇ ନେତୃତ୍ୱ ନେଇଥିଲେ। ଘୁମୁସରଠାରୁ ପିପିଲି ପର୍ଯ୍ୟନ୍ତ ପାଇକ ବିଦ୍ରୋହ ବ୍ୟାପୀ ଯାଇଥିଲା। ବିଦ୍ରୋହୀମାନେ ପିପିଲି ଥାନା ଉପରେ ଆକ୍ରମଣ କରିଥିଲେ । ଖୋର୍ଦ୍ଧା ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ବିଦ୍ରୋହୀମାନେ ଖୋର୍ଦ୍ଧାର ପ୍ରକୃତ ଶାସକ ରୂପେ ଘୋଷଣା କରିଥିଲେ । ବ୍ରିଟିଶ ଫୋର୍ସ ପ୍ରଥମେ ବିଦ୍ରୋହୀମାନଙ୍କ ଦ୍ୱାରା ପିପିଲିଠାରେ ପରାଜିତ ହୋଇଥିଲେ । ପରେ ପରେ କଟକରୁ ଏକ ବଡଧରଣର ବ୍ରିଟିଶ ଫୋର୍ସ ପୁରୀ ଆଡକୁ ଅଗ୍ରସର ହୋଇଥିଲେ ଓ ପାଇକମାନଙ୍କୁ ପରାସ୍ତ କରିଥିଲେ । ପାଇକମାନେ ପରାସ୍ତ ହେବାପରେ ମଧ୍ୟ ବିଦ୍ରୋହ ଦବି ନଥିଲା । ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପାଇକମାନେ ଜଙ୍ଗଲରେ ଲୁଚି ରହି ଗରିଲା ଯୁଦ୍ଧ ଚଳାଇଥିଲେ । ଶେଷରେ ବକ୍ସିଙ୍କ ଜଣେ ନିମକହାରାମ ସହଯୋଗୀ ବକ୍ସି ଜଗବନ୍ଧୁ ଓ ତାଙ୍କ ବିଶ୍ୱସ୍ତ ସହଯୋଗୀମାନେ ଲୁଚି ରହିଥିବା ସ୍ଥାନ ବିଷୟରେ ଇଂରେଜ ଅଫିସରମାନଙ୍କୁ ଜଣାଇ ଦେବା ଫଳରେ ବ୍ରିଟିଶ ଫୋର୍ସ ବକ୍ସିଙ୍କ ସହ ଜୟୀ ରାଜଗୁରୁ ଓ ଡାପଙ୍ଗ ଦଳବେହେରା ଆଦିଙ୍କୁ ଗିରଫ କରିଥିଲେ । ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ଗିରଫ କରାଯାଇ ଆଣ୍ଡାମାନ ନିକୋବରକୁ ପଠାଇ ଦିଆଯାଇଥିଲା । ଜୟୀ ରାଜଗୁରୁ ଫାଶୀ ପାଇଥିଲେ । ବକ୍ସି ଜଗବନ୍ଧୁ ଓ ଡାପଙ୍ଗ ଦଳବେହେରାଙ୍କୁ ବନ୍ଦୀ କରି ରଖାଯାଇଥିଲା । କଟକର ବକ୍ସିବଜାରଠାରେ ବକ୍ସି ଜଗବନ୍ଧୁଙ୍କୁ ବନ୍ଦୀ କରି ରଖାଯାଇଥିଲା । ତାଙ୍କ ନାମ ଅନୁସାରେ ଏହାକୁ ବକ୍ସିବଜାର ନାମରେ ନାମିତ କରାଯାଇଛି ।

ସିପାହୀ ବିଦ୍ରୋହୀ

୧୮୫୭ ସିପାହୀ ବିଦ୍ରୋହ ଯାହାକୁ ପ୍ରଥମ ସଶସ୍ତ୍ର ସ୍ୱାଧୀନତା ଆନ୍ଦୋଳନ କୁହାଯାଏ, ସେଥିରେ ମଧ୍ୟ ଓଡ଼ିଶା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ପୁରୀର ଚାଖୀ ଖୁଣ୍ଟିଆ ସିପାହୀ ବିଦ୍ରୋହରେ ଯୋଗଦେଇ ଝାନ୍ସୀ ରାଣୀ ଲକ୍ଷ୍ମୀବାଇଙ୍କୁ ସାହାଯ୍ୟ କରିଥିଲେ । ଜଗନ୍ନାଥ ଧାମର ବ୍ୟକ୍ତି ହିସାବରେ ଚାଖୀ ଖୁଣ୍ଟିଆଙ୍କ ପ୍ରତି ଝାନ୍ସୀ ରାଣୀଙ୍କ ଭକ୍ତି ଓ ସମ୍ମାନ ରହିଥିଲା । ତେଣୁ ଚାଖୀ ଖୁଣ୍ଟିଆ ରାଣୀଙ୍କ ବିପଦ ବେଳେ ନିଜ ଜୀବନକୁ ବିପନ୍ନ କରି ରାଣୀଙ୍କୁ ସାହାଯ୍ୟ କରିଥିଲେ ।

ସମ୍ବଲପୁର ବୀରପୁତ୍ର ରାଜା ସୁରେନ୍ଦ୍ର ସାଏ ସିପାହୀ ବିଦ୍ରୋହରେ ଯୋଗଦେଇ ସମ୍ବଲପୁରକୁ ରଣକ୍ଷେତ୍ରରେ ପରିଣତ କରିଥିଲେ । ବ୍ରିଟିଶ ଫୋର୍ସ ସହିତ ସେ ଏକାଧିକ ବାର ନିଜ ପାଇକମାନଙ୍କ ସହ ଲଢେଇ କରିଥିଲେ । ସମ୍ବଲପୁରରେ ଥିବା ଇଂରେଜ ପ୍ରଶାସକ ଅସ୍ତବ୍ୟସ୍ତ ହୋଇପଡିଥିଲେ ଓ ସେମାନଙ୍କ ନିଦ ଭାଙ୍ଗିଯାଇଥିଲା । ସୁରେନ୍ଦ୍ର ସାଏଙ୍କ ବୀରତ୍ୱ କେବଳ ଝାନ୍ସୀ ରାଣୀ ଲକ୍ଷ୍ମୀବାଇଙ୍କ ବୀରତ୍ୱ ସହ ତୁଳନୀୟ ଅଟେ ।

୧୮୮୫ରେ ଭାରତୀୟ ଜାତୀୟ କଂଗ୍ରେସ ଗଠନ ହେବାପରେ କଂଗ୍ରେସ ଦଳର ଦୁଇଟି ଲକ୍ଷ୍ୟ ରଖାଯାଇଥିଲା । (୧) ଲୋକଙ୍କ ଅଭାବ ଓ ଅସୁବିଧା ସରକାରଙ୍କୁ ଜଣାଇବା, (୨) ସରକାରଙ୍କ କାର୍ଯ୍ୟାବଳୀ ଜନସାଧାରଣଙ୍କୁ ଜ୍ଞାତ କରାଇବା ।

୧୯୦୦ ମସିହା ବେଳକୁ ଓଡ଼ିଶାର ବରେଣ୍ୟ ନେତା ବାରିଷ୍ଟର ମଧୁସୂଦନ ଦାସ କଂଗ୍ରେସ ଦଳରେ ଯୋଗଦେଇ ସକ୍ରୀୟ ଭୂମିକା ଗ୍ରହଣ କରିଥିଲେ । ୧୯୦୧ ମସିହାରେ କଲିକତାରେ ଅନୁଷ୍ଠିତ ହୋଇଥିବା ଭାରତୀୟ ଜାତୀୟ କଂଗ୍ରେସର ସାଧାରଣ ଅଧିବେଶନରେ ମଧୁବାବୁ ଓଡ଼ିଶାରୁ ବହୁ ପ୍ରତିନିଧି ନେଇ ଅଧିବେଶନରେ ଯୋଗ ଦେଇଥିଲେ । ଭାଷାଭିତ୍ତିକ ପ୍ରଦେଶ ଗଠନ ପାଇଁ ମଧୁବାବୁ

ସାଧାରଣ ଅଧିବେଶନରେ ପ୍ରସ୍ତାବ ଦେଇଥିଲେ । କିନ୍ତୁ ଏ ପ୍ରସ୍ତାବ ବହୁ ଭୋଟରେ ଅଗ୍ରାହ୍ୟ ହୋଇଥିବାରୁ ମଧୁବାବୁ କ୍ରୋଧାନ୍ୱିତ ହୋଇ କଂଗ୍ରେସକୁ ଫେରିନଥିଲେ । ୧୯୦୩ ମସିହାରେ ମଧୁବାବୁ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା କରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ନିରବଚ୍ଛିନ୍ନ ଆନ୍ଦୋଳନ କରିଥିଲେ ଯାହା ଫଳରେ ୧୯୩୬ ମସିହା ଏପ୍ରିଲ ପହିଲାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇପାରିଥିଲା।

ଅସହଯୋଗ ଆନ୍ଦୋଳନ

ଅହିଂସା ଅସହଯୋଗ ଆନ୍ଦୋଳନର ଆହ୍ୱାନ ଦେଇଥିଲେ ମହାତ୍ମା ଗାନ୍ଧୀ । ଆକୁମାରୀ ହିମାଚଳ ଏହି ଆନ୍ଦୋଳନ ଦାବାଗ୍ନିପରି ବ୍ୟାପୀ ଯାଇଥିଲା । ଓଡ଼ିଶାରେ ମଧ୍ୟ ଗାଁ ଗଣ୍ଡାଠାରୁ ସହର ପର୍ଯ୍ୟନ୍ତ ଅହିଂସା ଅସହଯୋଗ ଆନ୍ଦୋଳନ ବ୍ୟାପୀ ଯାଇଥିଲା । ପ୍ରଦେଶ କଂଗ୍ରେସ କମିଟି ସଭାପତି ପଣ୍ଡିତ ଗୋପବନ୍ଧୁ ଦାସଙ୍କଠାରୁ ସାଧାରଣ କର୍ମୀ ପର୍ଯ୍ୟନ୍ତ ହଜାର ହଜାର ଦେଶପ୍ରେମୀ ଗିରଫ ହୋଇଥିଲେ । ମହାତ୍ମା ଗାନ୍ଧୀ ଯୁବକମାନଙ୍କୁ ଚାକିରି ଛାଡ଼ି, ସ୍କୁଲ କଲେଜ ଛାଡ଼ି ମୁକ୍ତି ଆନ୍ଦୋଳନରେ ଯୋଗ ଦେବାପାଇଁ ଆହ୍ୱାନ ଦେଇଥିଲେ । ଗୋପବନ୍ଧୁ ଚୌଧୁରୀ ସବକଲେକ୍ଟର ପଦ ଛାଡ଼ି, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଭୃତି କଲେଜପାଠ ପଢ଼ା ଛାଡ଼ି ଆନ୍ଦୋଳନରେ ଯୋଗ ଦେଇଥିଲେ । ଆନ୍ଦୋଳନ ପ୍ରବଳ ଆକାର ଧାରଣ କରିଥିବା ବେଳେ ବିହାରର ଚୌରିଚୌରାଠାରେ ଉତ୍ତ୍ୟକ୍ତ ଜନତା ଏକ ପୋଲିସ୍ କନେଷ୍ଟବଳଙ୍କୁ ଜୀବନ୍ତ ଦଗ୍ଧ କରିଥିବାର ସମ୍ବାଦ ପାଇ ଗାନ୍ଧିଜୀ ଜେଲ୍‌ରେ ଥାଇ ମଧ୍ୟ ଆନ୍ଦୋଳନ ପ୍ରତ୍ୟାହାର କରି ନେଇଥିଲେ । ଏହା ପରେ ଗାନ୍ଧିଜୀ ଗଠନାତ୍ମକ କାର୍ଯ୍ୟ ଆରମ୍ଭ କରିଥିଲେ ଓ ଦେଶସାରା ପଦଯାତ୍ରା କରିଥିଲେ । କଟକ କାଠଯୋଡ଼ି ବାଲିରେ ଓ ପୁରୀ ସିଂହଦ୍ୱାରଠାରେ ପଣ୍ଡିତ ଗୋପବନ୍ଧୁଙ୍କ ସଭାପତିତ୍ୱରେ ବିଶାଳ ଜନସଭାରେ ମହାତ୍ମା ଗାନ୍ଧୀ ଭାଷଣ ଦେଇଥିଲେ । ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ଆଚାର୍ଯ୍ୟ ହରିହର ଓ ପଣ୍ଡିତ କୃପାସିନ୍ଧୁ ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର ଆଦି ମୁକ୍ତି ଆନ୍ଦୋଳନରେ ସମ୍ପୂର୍ଣ୍ଣ ଭାଗ ନେଇଥିଲେ । ରାଧାନାଥ ରଥ ଚାକିରି ଛାଡ଼ି ସତ୍ୟବାଦୀ ପ୍ରେସ୍‌ରେ ଯୋଗଦେଇଥିଲେ । ଗୋପବନ୍ଧୁ ଚୌଧୁରୀ ପ୍ରଦେଶ କଂଗ୍ରେସ ସଭାପତି ହୋଇଥିଲେ ଓ ପରେ ପଣ୍ଡିତ ନୀଳକଣ୍ଠ ସଭାପତି ପଦ ଗ୍ରହଣ କରି ୧୯୩୭ ମସିହା ନିର୍ବାଚନ ଦାୟିତ୍ୱ ଗ୍ରହଣ କରିଥିଲେ ।

୧୯୩୦ ଗାନ୍ଧିଜୀଙ୍କ ଲବଣ ସତ୍ୟାଗ୍ରହ ଓ ଦାଣ୍ଡି ଅଭିଯାନ ଓଡ଼ିଶାରେ ମଧ୍ୟ ପ୍ରଭାବ ପକାଇଥିଲା । ବାଲେଶ୍ୱର ଇଚମ୍‌ଠାରେ ଲବଣ ସତ୍ୟାଗ୍ରହ ଚାଲିଥିବା ବେଳେ ପୋଲିସ ଗୁଳିରେ ସତ୍ୟାଗ୍ରହୀମାନେ ଗୋଟିଏ ପରେ ଗୋଟିଏ ଟଳିପଡ଼ିଥିଲେ ଓ ଇଚମ ରକ୍ତ ତୀର୍ଥରେ ପରିଣତ ହୋଇଥିଲା ।

ଭାରତଛାଡ଼ ଆନ୍ଦୋଳନ

୧୯୪୨ ଭାରତଛାଡ଼ ଆନ୍ଦୋଳନ ଓଡ଼ିଶାରେ ସମ୍ପୂର୍ଣ୍ଣ ସଫଳ ହୋଇଥିଲା । ଭାରତୀୟ ଜାତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟି ସଭ୍ୟ ହରେକୃଷ୍ଣ ମହତାବ ବମ୍ବେଠାରେ ଗିରଫ ହୋଇଥିଲେ । ଓଡ଼ିଶାରୁ ସମସ୍ତ କଂଗ୍ରେସ ନେତା ଗିରଫ ହୋଇଥିଲେ । କୋରାପୁଟର ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦିଆହୋଇଥିଲା । କୋରାପୁଟର ରାଧାକୃଷ୍ଣ ବିଶ୍ୱାସ ରାୟ, ସଦାଶିବ ତ୍ରିପାଠୀ, ଗଞ୍ଜାମର ବିଶ୍ୱନାଥ ଦାସ, ଉମାଚରଣ ପଟ୍ଟନାୟକ, ଖୋର୍ଦ୍ଧାର ପ୍ରାଣନାଥ ପଟ୍ଟନାୟକ, ବାଲେଶ୍ୱରର ରବୀନ୍ଦ୍ର ମୋହନ ଦାସ, କଟକର ରାଜକୃଷ୍ଣ ବୋଷ, ପ୍ରାଣକୃଷ୍ଣ ପଢ଼ିଆରୀ ପ୍ରମୁଖ ନେତୃତ୍ୱ ନେଇ କାରାବରଣ କରିଥିଲେ । ଚକ୍ରଧରପୁରର ବିଜୟ ପାଣି ଓଡ଼ିଶାରେ ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦେଇଥିଲେ । ନାରୀ ନେତ୍ରୀ ରମାଦେବୀ, ମୀନତୀ ଚୌଧୁରୀ, ସାରଳା ଦେବୀ, ରମାଦେବୀ ପ୍ରମୁଖ ମହିଳାମାନଙ୍କ ନେତୃତ୍ୱ ନେଇ ଗିରଫ ହୋଇଥିଲେ ।

ସୁରେନ୍ଦ୍ର ନାଥ ଦ୍ୱିବେଦୀ, ବାଙ୍କ ବିହାରୀ ଦାସ ଓ ନିଶାମଣି ଖୁଣ୍ଟିଆ ପ୍ରମୁଖ ଅଣ୍ଡର ଗ୍ରାଉଣ୍ଡରେ ଲୁଚି ରହି ଆନ୍ଦୋଳନ ପରିଚାଳନା କରୁଥିଲେ ଓ ପରେ ଗିରଫ ହୋଇଥିଲେ । ବିଶ୍ୱନାଥ ପଣ୍ଡିତ, ପ୍ରଦୀପ କିଶୋର ଦାସ, ସମ୍ବଲପୁରର ଶ୍ରଦ୍ଧାକର ସୂପକାର, ଢେଙ୍କାନାଳର ବୈଷ୍ଣବ ପଟ୍ଟନାୟକ, ତାଳଚେରର ପବିତ୍ର ମୋହନ ପ୍ରଧାନ, ଗୋବିନ୍ଦପୁରର ନୀଳମଣି ପ୍ରଧାନ, ସୁରେନ୍ଦ୍ର ନାଥ ପଟ୍ଟନାୟକ, ଜାତୀୟ କବି ବୀର କିଶୋର ଦାସ, ରାଧାନାଥ ରଥ ଓ ଆହୁରି ଅନେକ ଭାରତଛାଡ଼ ଆନ୍ଦୋଳନର ନେତୃତ୍ୱ ନେଇ ଗିରଫ ହୋଇ ଜେଲ୍ ଯାଇଥିଲେ । ବିଜୁବାବୁ ଇଂରେଜ ସରକାରଙ୍କ ପାଇଲଟ ଥାଇ ମଧ୍ୟ ଆନ୍ଦୋଳନକୁ ସମର୍ଥନ କରି ଗିରଫ ହୋଇଥିଲେ । ପ୍ରଜା ଆନ୍ଦୋଳନର ନେତୃତ୍ୱ ନେଇଥିଲେ ତାଳଚେରର ପବିତ୍ର ମୋହନ ପ୍ରଧାନ, ନୀଳଗିରିର ବନମାଳୀ ଦାସ ପ୍ରମୁଖ । ରଣପୁରର ରଘୁ ଦିବାକର ହତ୍ୟା ଚକ୍ରାନ୍ତରେ ସମ୍ପୃକ୍ତ ଥିବାରୁ ତାଙ୍କୁ ଫାଶୀ ଦିଆଯାଇଥିଲା ।

ଏହିପରି ଓଡ଼ିଶା ଭାରତୀୟ ମୁକ୍ତି ଆନ୍ଦୋଳନରେ ଭାଗନେଇ ନିଜର ଗୌରବ ରକ୍ଷା କରିପାରିଥିଲା ।

ଅଧକ୍ଷ, କାଜୁ ଉନ୍ନୟନ ନିଗମ
ଭୁବନେଶ୍ୱର

# ଶ୍ରୀଜଗନ୍ନାଥଙ୍କ ରଥର ଐତିହାସିକ ପୃଷ୍ଠଭୂମି

ଡାକ୍ତର ଦୀନବନ୍ଧୁ ମହାରଣା

ଜଗନ୍ନାଥ ରଥ ସମ୍ପ୍ରତି ଏକ ବିଶ୍ୱପ୍ରସିଦ୍ଧ ଜନଯାତ୍ରା ଭାବେ ବହୁ ମାନବିକ ତଥା ଆଧାତ୍ମିକ ପ୍ରସଙ୍ଗର ଅବତାରଣା କରେ । ଏ ବିଷୟକୁ ଆଧାର କରି ଯୁଗ ଯୁଗ ଧରି ବହୁ କଥା ଉପକଥା ତତ୍ତ୍ୱ- ତର୍ଜମା କରାଯାଇଛି । ଜଗନ୍ନାଥ ରଥ କହିଲେ ଏକ ବିଶ୍ୱ ମିଳନର ବାର୍ତ୍ତାକୁ ବୁଝାଏ । ଏହା ଓଡ଼ିଶାର ଶ୍ରୀକ୍ଷେତ୍ର ପୁରୀ ଧାମରେ ପ୍ରତିବର୍ଷ ଆଷାଢ ଶୁକ୍ଳ ଦ୍ୱିତୀୟା ତିଥିରେ ଶ୍ରୀମନ୍ଦିର ପ୍ରବର୍ତ୍ତିତ ବିଧି ବିଧାନ ଅନୁଯାୟୀ ଅନୁଷ୍ଠିତ ହୋଇଆସୁଛି ।

ଓଡ଼ିଶାର ସାଧାରଣ ଜୀବନରେ ଜଗନ୍ନାଥ ସଂସ୍କୃତିର ପ୍ରଭାବ ଅତ୍ୟନ୍ତ ଗଭୀର ଓ ବ୍ୟାପକ । ଓଡ଼ିଶାର ଇତିହାସ, ଧର୍ମ, ରାଜନୀତି, ସମାଜଚେତନା ଇତ୍ୟାଦିରେ ଜଗନ୍ନାଥଙ୍କ ସ୍ଥାନ ଏତେ ନିବିଡ ଯେ ଓଡ଼ିଆ ଜଗନ୍ନାଥଙ୍କୁ ଚାହିଁ ତାଙ୍କୁ ହିଁ ଆଶ୍ରୟ କରି ସମସ୍ତ ଦୁଃଖ, ଦୁର୍ଦ୍ଦିନରେ ନିଜର ବିଶ୍ୱାସକୁ ସୁଦୃଢ କରିଆସିଛି । ଓଡ଼ିଶା ବାହାର ଓଡ଼ିଆଙ୍କ ପରିଚୟ ହେଲା ଜଗନ୍ନାଥ ଦେଶର ଲୋକ ।

ଜଗନ୍ନାଥଙ୍କ ସେବା, ପୂଜା ଓ ପର୍ବପର୍ବାଣିମାନଙ୍କ ମଧ୍ୟରେ ରଥଯାତ୍ରା ହେଉଛି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଏହି ଅବକାଶରେ ଜଗନ୍ନାଥ ସମସ୍ତ ପ୍ରକାର ବିଧି ନିଷେଧକୁ ଅତିକ୍ରମ କରି ଏକ ସାର୍ବଜନୀନ ସମାରୋହରେ ଉଭା ହୁଅନ୍ତି ବଡଦାଣ୍ଡର ଶରଧାବାଲିରେ । ପୃଥିବୀର ବିଭିନ୍ନ ଦେଶରେ ଏପରି ଜଗନ୍ନାଥ ରଥଯାତ୍ରା କ୍ରମେ ପ୍ରସାର ଲାଭ କରିଥିବାର ଜଣାଯାଏ । ଭାରତବର୍ଷରେ ଅନ୍ୟ କେତେକ ଦେବଦେବୀଙ୍କର ମଧ ରଥଯାତ୍ରା ହୁଏ କିନ୍ତୁ ଓଡ଼ିଶାର ଜଗନ୍ନାଥ ରଥଯାତ୍ରାର ଅନୁକରଣରେ ଯେଉଁ ରଥଯାତ୍ରା ହୁଏ, ତାହା ସ୍ୱତନ୍ତ୍ର ଏବଂ ଅଧିକ ଲୋକମୁଖୀ ବୋଲି କୁହାଯାଇପାରେ । ପୁରୀରେ ତିନୋଟି ରଥରେ ତିନିଠାକୁର ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କୁ ଯଥାକ୍ରମେ ସଜ୍ଜିତ କରାଯାଇ ଶ୍ରୀମନ୍ଦିର ସିଂହଦ୍ୱାରରୁ ଶ୍ରୀଗୁଣ୍ଡିଚା ମନ୍ଦିର ଯାଏ ରଥଯାତ୍ରାର ବିପୁଳ ଆୟୋଜନ, ବାସ୍ତବିକ ଚିତ୍ତାକର୍ଷକ ଓ ଅନନ୍ୟ ।

ଏଠାରେ ତିନିଠାକୁରଙ୍କ ତିନି ରଥ ବିଷୟରେ ସାମାନ୍ୟ ସଙ୍କେତ ଦିଆଗଲା । ବଳଭଦ୍ରଙ୍କର ରଥର ନାମ ତାଳଧ୍ୱଜ । ଏହା ପ୍ରଥମେ ଆଗେ ଆଗେ ଯାତ୍ରା କରେ । ଏହି ରଥକୁ ଦେବତାମାନେ ତାଳବନରେ ପ୍ରଦାନ କରିଥିବାରୁ ଏହା ତାଳଧ୍ୱଜ ନାମରେ ଖ୍ୟାତ ।ଏହାର ଉଚ୍ଚତା ୩୨ ହାତ ୧୦ ଆଙ୍ଗୁଳି ଅଟେ । ରଥଚକ ୧୪ଟି । ରଥ ନିର୍ମାଣ ପାଇଁ ୭୬୩ଟି କାଠ ଖଞ୍ଜା ଯାଇଥାଏ । ସ୍ୱୟଂ ବାସୁଦେବ ଏହାର ପରିଚାଳକ । ଅସ୍ତ୍ର ହଳ ଓ ମୂଷଳ । ଭଦ୍ରପୀଠ ଅଷ୍ଟଦଳ ପଦ୍ମ ଶୋଭିତ । ରଥର ଘୋଡଣୀ ରକ୍ତ ନୀଳ ବର୍ଣ୍ଣର । ଏଥିରେ ପାର୍ଶ୍ୱଦେବତା ଭାବେ ପ୍ରଣମ୍ଭାରୀ, ଗଜାନ୍ତକାରୀ, ହରିହର, ତୈମୁନ୍ତକ, ବାସୁଦେବ, ନାଟାମ୍ବର, ଅଘୋର ଓ ତ୍ରିପୁରାରୀ ଶିବ । ଏହି ରଥର ସାରଥି ହେଲେ ମାତଳି । ରଥ ରକ୍ଷକ ଭାସ୍କର । ଅଶ୍ୱମାନଙ୍କ ନାମ ଯଥାକ୍ରମେ ତୀବ୍ର, ଘୋର, ଦୀର୍ଘ, ଶ୍ରମ ଓ ସ୍ୱର୍ଣ୍ଣନାଭ । ବାସୁକୀ ଏହି ରଥର ଦଉଡି । ରଥର ମୂର୍ତ୍ତି କେତୁଭଦ୍ରା । ଚରଦେବତା ବ୍ରହ୍ମା ଓ ଶିବ । ରଥର ଭୈରବ କ୍ଷେତ୍ରପାଳ । ଚାରଣ ଦ୍ୱୟ ମହାସିଦ୍ଧ ଓ ଉଲେମୀ, ଗନ୍ଧର୍ବଙ୍କୁ ହୁ ହୁ ଡାକ ଦେଇଥାନ୍ତି । ଗର୍ଭାଧିଶ୍ୱରୀ ଶକ୍ତି ଭାବରେ ତୁଙ୍ଗୀ, ତୁଙ୍ଗଭଦ୍ରା, ପ୍ରଭା, ସୁପ୍ରଭା, ଧାତ୍ରୀ, ବିଧାତ୍ରୀ, ନନ୍ଦା ଓ ସୁନନ୍ଦା । ଋଷିଙ୍କ ଲାଗି ଉଦ୍ଦିଷ୍ଟ ପଟା ଉପରେ ଅଙ୍ଗିରା, ପୌଲସ୍ତ୍ୟ, ପୁଲ, ଅଗସ୍ତି, କୃଷ୍ଣ, ମୁଦ୍‌ଗଲ, ଆତ୍ରେୟ ଓ କଶ୍ୟପ ଏପରି ଅଷ୍ଟଋଷି ବିରାଜିତ । ରଥକୁମ୍ଭର ନାମ ଭୁବନ, ବିମ୍ବ, ପୃଥିବୀ, ଚକ୍ରାୟୁଧ, ହୁଂ ବୀଜ । ରଥର ଦ୍ୱାରରକ୍ଷୀ ଭାବରେ ରହିଥାନ୍ତି ନନ୍ଦ ଓ ସୁନନ୍ଦ । ରଥର ପତାକା ନାମ ଉନ୍ନନୀ । ରଥର ଉପରି ଭାଗରେ ଅନନ୍ତନାଗ ବିରାଜିତ ।

ତାଳଧ୍ୱଜ ରଥ ପଛକୁ ସୁଭଦ୍ରାଙ୍କ ରଥ ଦର୍ପଦଳନ ଚାଲେ । ଉଚ୍ଚତା ୩୧ହାତ । ୧୨ଟି ଚକ । ୫୯୩ଖଣ୍ଡ କାଠରେ ନିର୍ମିତ ଏହି ରଥ । ରଥ ରକ୍ଷକ ସ୍ୱୟଂ ଜୟଦୁର୍ଗା । ଧ୍ୱଜାରେ ତ୍ରିପୁରା

ସୁନ୍ଦରୀ ବିଦ୍ୟମାନ । ରଥର ଆୟୁଧ ପଦ୍ମକହ୍ଲାର । ରଥର ଆବରଣ କୃଷ୍ଣ ଲୋହିତ ବର୍ଣ୍ଣ । ରଥ ଶିରର ଦେବତା ଭକ୍ତିର୍ସମେଧ । ଚାମର ସେବା ଦାୟିତ୍ୱରେ ଥାଆନ୍ତି ସୁମେଧା ଦେବୀ । ପାର୍ଶ୍ୱଦେବତା ଭାବେ ବିମଳା, ଚାମୁଣ୍ଡା, ଭଦ୍ରକାଳୀ, ହରଚଣ୍ଡିକା, ମଙ୍ଗଳା, ବାରାହୀ, କାତ୍ୟାୟିନୀ, ଜୟ ଦୁର୍ଗା ଓ କାଳୀ । ରଥର ସାରଥି ଅର୍ଜୁନ । ଉଗ୍ରଚଣ୍ଡା ରଥର ରକ୍ଷକ । ରଥର ଅଶ୍ୱ ହେଲେ ରୋଚିକା, ମୋଚିକା, ଜିତା ଓ ଅପରାଜିତା । ରଥ ଦଉଡି ଭାବରେ ସ୍ୱର୍ଣ୍ଣଚୂଡ ନାଗ । ରଥ ମୁଖ ବ୍ରହ୍ମବର୍ତ୍ତା । ଦେବୀ ଶ୍ରୀଭୂ । ରଥ ଗନ୍ଧର୍ବଙ୍କ ନାମ ହା ହା । ରଥ ଚାରଣଙ୍କ ନାମ ମହାକାର । ଯକ୍ଷ ରୂପେ କିଂ କ୍ୱଳିକା । ରଥ ଗର୍ଭର ଅଧୀଶ୍ୱରୀ ହେଲେ ଶକ୍ତିଶପ୍ତା, ଜୟା, ବିଜୟା, ଘୋରା, ଅଘୋରା, ସୂକ୍ଷ୍ମା ଓ ଜ୍ଞାନୀ। ଏହି ରଥରେ ଛଅଜଣ ଋଷି ଥାନ୍ତି । ଯଥା- ଭୃଗୁ, ସୁପ୍ରଭ, ବଜ୍ର, ଶୃଙ୍ଗୀ, ଧ୍ରୁବ ଓ ଭଲ୍ଲୁକନାମା । ରଥକୁମ୍ଭର ନାମ ଅମୃତା, ଜୀବା, କାୟା ଏବଂ ହ୍ରୀଂ ବୀଜ । ଦ୍ୱାଦଶ କରଣ ହେଲା ଭୁବନେଶ୍ୱରୀ, ଚକ୍ର ଗଙ୍ଗା, ଯମୁନା ଦ୍ୱାର ପାଳିକା । ରଥ ପତାକାର ନାମ ନାଦାମ୍ବିକା ।

ଶେଷରେ ଜଗନ୍ନାଥଙ୍କ ରଥ ଚାଲିଥାଏ । ବହୁ ଆକାଂକ୍ଷିତ ଏହି ରଥର ନାମ ନନ୍ଦିଘୋଷ । ଏହାକୁ ଇନ୍ଦ୍ର ଦେଇଥିଲେ । ଏହି ରଥର ଉଚ୍ଚତା ୩୩ ହାତ ୫ଆଙ୍ଗୁଳି । ୧୬ଟି ଚକ ଲାଗିଥାଏ । ୮୩୨ ଖଣ୍ଡ କାଠ ବିଶିଷ୍ଟ ଏହି ରଥ । ରଥ ରକ୍ଷକ ସ୍ୱୟଂ ଗରୁଡ । ପତାକାରେ ପବନପୁତ୍ର ହନୁମାନ ଥାଆନ୍ତି । ଆୟୁଧ ଶଙ୍ଖ ଓ ଚକ୍ର । ରଥର ଆବରଣ ଓ ଘୋଡଣୀ ରକ୍ତପୀତ ବର୍ଣ୍ଣ । ରଥ ଶିରର ଦେବତା କଲ୍ୟାଣ ସୁନ୍ଦର ଏବଂ ଶକ୍ତି ହେଲେ ବିମଳା ଓ ବିରଜା । ରଥର ଚାରିପାଖରେ ନଅଟି ଦେବତା ଥାଆନ୍ତି, ଯଥା ୧- ହନୁମାନ, ୨- ଶ୍ରୀରାମ, ୩- ଲକ୍ଷ୍ମଣ, ୪- ନାରାୟଣ, ୫- କୃଷ୍ଣ, ୬-ଗୋବର୍ଦ୍ଧନଧାରୀ, ୭- ଚିନ୍ତାମଣି, ୮-ରାଘବ, ୯-ନୃସିଂହ । ରଥର ଅଶ୍ୱମାନଙ୍କ ନାମ ଶଙ୍ଖ, ବଳାହକ, ଶ୍ୱେତ ଓ ହରିତାଶ୍ୱ । ସାରଥି ହେଲେ ଦାରୁକ । ରଥର ଦଉଡି ଭାବରେ ଶଙ୍ଖଚୂଡ ନାଗୁଣୀ, ରଥର ମୁଖ ନନ୍ଦୀମୁଖ । ରଥର ଦେବୀ ଯୋଗମାୟା । ରଥର ଭୈରବ ଏକପାଦ । ଚାରଣଭାବେ ନନ୍ଦ ଓ କୁବେର ରହିଥାନ୍ତି । ରଥର ଯକ୍ଷ ହେଲେ ହର୍ଯ୍ୟକ୍ଷ । ଗର୍ଭାଧୀଶ୍ୱର-ହିରଣ୍ୟଗର୍ଭ । ରଥର ଶକ୍ତି ବିମଳା ଉକ୍ରର୍ଷଣୀ ହେଉଛନ୍ତି କ୍ରିୟା, ଯୋଗା, ଆଜ୍ଞା, ଅନୁଜ୍ଞା, ପ୍ରଜ୍ଞା ଓ ମେଧା । ଋଷି ପଟାରେ ଅଛନ୍ତି ନାରଦ, ଦେବଳ, ବ୍ୟାସ, ଶୁକ, ପରାଶର, ବଶିଷ୍ଠ, ବିଶ୍ୱାମିତ୍ର ଓ ରୁଦ୍ର । ରଥକୁମ୍ଭର ନାମ ହିରଣ୍ମୟ । ଦ୍ୱାରପାଳ ହେଲେ ଜୟ ଓ ବିଜୟ । ରଥ ପତାକାର ନାମ ତ୍ରୈଲୋକ୍ୟମୋହିନୀ ।

ଉପରୋକ୍ତମତେ ଜଗନ୍ନାଥ ରଥଯାତ୍ରାରେ ତିନିରଥଙ୍କ ଶାସ୍ତ୍ରୀୟ ବର୍ଣ୍ଣନାରୁ ଅନୁମେୟ ଯେ ଏହି ରଥର ନିର୍ମାଣ କଳା ଏବଂ ରଥ ପରିପାଟୀ କେତେ ପୌରାଣିକ ତତ୍ତ୍ୱ ଆଧାରିତ । ତେଣୁ ଆମେ ଜଗନ୍ନାଥ ରଥ କହିବା ବେଳେ ଏସବୁ ତତ୍ତ୍ୱର ସାମାନ୍ୟ ସଂକେତ ବିଷୟରେ ଅବଗତ ହେଲେ ଜଗନ୍ନାଥ ରଥଯାତ୍ରାର ବିଶେଷତ୍ୱ କ'ଣ, ତାହା ଜାଣିପାରିବା ଏବଂ ଜଗନ୍ନାଥ ଯେ କେତେ ବ୍ୟାପକ ସଂସ୍କାର ଉପରେ ପ୍ରତିଷ୍ଠିତ ହୋଇ ଓଡ଼ିଶାରେ ଆମ୍ଭମାନଙ୍କୁ କୃତାର୍ଥ କରିବା ପାଇଁ ଆବିର୍ଭୂତ ହୋଇଛନ୍ତି ଏବଂ ସେଥିପାଇଁ ପ୍ରତ୍ୟେକ ଧର୍ମପ୍ରାଣ ହିନ୍ଦୁ, ସେ ଯେଉଁ ଜାତିର କି ଦେଶର ହେଉ ପଛକେ ତାହା ଅନୁଭବ କରି ନିଜକୁ ଗୌରବାନ୍ୱିତ ମନେକରିବା ।

ମୁଖ୍ୟ ଚିକିତ୍ସକ ଓଡ଼ିଶା ଆୟୁର୍ବେଦ ସେବାସଦନ
୧୧୧, ମ୍ୟୁନିସିପାଲିଟି ମାର୍କେଟ କମ୍ପ୍ଲେକ୍ସ
ଓ.ଏମ୍.ପି ଛକ, କଟକ-୩
ଫୋନ୍ : ୯୪୩୭୦୪୩୧୦୩

# ଅଗଷ୍ଟ ପନ୍ଦର ଓ ଭାରତର ସ୍ୱାଧୀନତା

ହୃଦାନନ୍ଦ ବେହେରା

ବିଲାତ ସରକାରଙ୍କର ଦୀର୍ଘ ଦିନର ଶାସନ ପରେ ୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖରେ ଆମର ପ୍ରିୟ ମାତୃଭୂମି ଭାରତବର୍ଷ ସ୍ୱାଧୀନ ହୋଇଥିଲା । କିନ୍ତୁ ଏହାର କିଛିଦିନ ପୂର୍ବରୁ ଇଂଲଣ୍ଡର ପାର୍ଲାମେଣ୍ଟରେ ଇଣ୍ଡିଆନ୍ ଇଣ୍ଡିପେଣ୍ଡେନ୍ସ ବିଲ୍ ଆଲୋଚନା ହୋଇ ଗୃହୀତ ହୋଇସାରିଥାଏ । ୧୯୪୭ ଫେବୃଆରୀ ୨୦ରେ ତତ୍କାଳୀନ ବ୍ରିଟିଶ ପ୍ରଧାନମନ୍ତ୍ରୀ ଆଟଲୀ ଘୋଷଣା କରିଥିଲେ ଯେ ୧୯୪୮ ଜୁନ୍ ମାସ ପୂର୍ବରୁ ଦାୟିତ୍ୱସଂପନ୍ନ ଭାରତୀୟମାନଙ୍କ ହସ୍ତକୁ କ୍ଷମତା ହସ୍ତାନ୍ତର ପାଇଁ ଆବଶ୍ୟକୀୟ ପଦକ୍ଷେପ ନିଆଯିବ । ସେଥି ସହିତ କ୍ଷମତା ହସ୍ତାନ୍ତର ପାଇଁ ଭାରତର ତତ୍କାଳୀନ ଇଂରେଜ ବଡ଼ଲାଟ ଲର୍ଡ଼ ଲୁଇ ମାଉଣ୍ଟବେଣ୍ଟେନଙ୍କୁ (ଶେଷ ଇଂରେଜ ବଡ଼ଲାଟ୍) ନିଯୁକ୍ତି ଦିଆଗଲା । ଫଳରେ ଭାରତରୁ ବ୍ରିଟିଶ ଶାସନର ଅବସାନ ଘଟିବା କଥା ସ୍ପଷ୍ଟ ହୋଇଯାଇଥିଲା ।

ମୁସ୍‌ଲିମ୍ ଲିଗ୍‌ର ନେତୃମଣ୍ଡଳୀ ଭାରତକୁ ବିଭାଜନ କରିବାକୁ ଚାହୁଁଥାଆନ୍ତି । ମୁସଲମାନ ବହୁଳ ଅଞ୍ଚଳକୁ ଏକତ୍ର କରି ଅଖଣ୍ଡ ଭାରତଠାରୁ ଅଲଗା ହୋଇ ଏକ ସ୍ୱତନ୍ତ୍ର ରାଷ୍ଟ୍ର ପାକିସ୍ଥାନ ଗଠନ କରିବାକୁ ମୁସ୍‌ଲିମ୍ ଲିଗ୍ ଜିଦ୍ ଧରି ବସିଥାଏ । କଂଗ୍ରେସ ମୁସଲମାନ ବିରୋଧୀ ବୋଲି ମୁସ୍‌ଲିମ୍ ଲିଗ୍ ସାଧାରଣରେ ପ୍ରଚାର କରୁଥାଏ । ଯଦିଓ ମୌଲାନା ଆବୁଲ୍ କାଲାମ୍ ଆଜାଦ୍‌ଙ୍କ ପରି କେତେକ ମୁସଲମାନ ନେତା ମୁସ୍‌ଲିମ୍ ଲିଗ୍‌ର ଏହି ହୀନମନ୍ୟତା ଚିନ୍ତାଧାରାକୁ ସହଜରେ ଗ୍ରହଣ କରିପାରୁନଥିଲେ । ମୁସ୍‌ଲିମ୍ ଲିଗ୍‌ର ନେତା ମହମ୍ମଦ ଅଲ୍ଲୀ ଜିନ୍ନା ଅଖଣ୍ଡ ଭାରତକୁ ବିଭାଜନ କରି ଏକ ଅଂଶର ଶାସନକର୍ତ୍ତା ହେବା ପାଇଁ ଇଂରେଜ ସରକାରଙ୍କ ନିକଟରେ ନିଜର ବିଭିନ୍ନ ଦାବି ଉତ୍ଥାପନ କରୁଥାନ୍ତି । ସମୟରେ ଜାତିର ଜନକ ମହାତ୍ମା ଗାନ୍ଧୀ ଅଖଣ୍ଡ ଭାରତର ସ୍ୱପ୍ନ ଦେଖୁଥାନ୍ତି । ସେ ନୂଆଖାଲିରେ ହିନ୍ଦୁ ମୁସଲମାନ ପରସ୍ପର ଭାଇ ଭାଇ ବୋଲି ବୁଲି ବୁଲି ଲୋକମାନଙ୍କୁ ବୁଝାଉଥାନ୍ତି । ଭାରତର ଶେଷ ଇଂରେଜ ଭାଇସ୍‌ରାୟ ଲର୍ଡ଼ ମାଉଣ୍ଟବେଟେନ୍ ଭାରତୀୟ ନେତାମାନଙ୍କ ସହିତ ଭାରତର ସ୍ୱାଧୀନତା ସଂପର୍କରେ ବିଲାତ ସରକାରଙ୍କର ଭାରତର ବିଭାଜନ ସମ୍ବନ୍ଧରେ ଆଲୋଚନା ଜାରି ରଖିଥାନ୍ତି ଏବଂ ଭାରତର ସବିଶେଷ ଖବର ବିଲାତ ସରକାରଙ୍କୁ ଜଣାଉଥାନ୍ତି ।

ମହମ୍ମଦ ଅଲ୍ଲୀ ଜିନ୍ନାଙ୍କୁ ବିରୋଧ କରି ପଣ୍ଡିତ ଜବାହରଲାଲ ନେହେରୁ ଓ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ମହାତ୍ମା ଗାନ୍ଧୀଙ୍କ ଅଗୋଚରରେ ଦେଶ ବିଭାଜନ ନିମନ୍ତେ ଲର୍ଡ଼ ମାଉଣ୍ଟ୍‌ବେଟେନ୍‌ଙ୍କ ନିକଟରେ ରାଜି ହୋଇଯାଇଥିଲେ । ଏହାଥିଲା ଦେଶ ବିଭାଜନର ପ୍ରଥମ ପର୍ଯ୍ୟାୟ । ଯଦିଓ ମହାତ୍ମା ଗାନ୍ଧୀଙ୍କୁ ଏହି ରାଜିନାମା ପରମୁହୂର୍ତ୍ତରେ ବହୁତ ଆଘାତ ଦେଇଥିଲା, ତତ୍କାଳୀନ ଭାଇସ୍‌ରାୟ ମର୍ମେ ମର୍ମେ ଅନୁଭବ କରିପାରିଥିଲେ ଭାରତୀୟମାନଙ୍କର ସ୍ୱାଧୀନତା ପାଇଁ ପାଗଳାମୀ । ବ୍ରିଟିଶ୍ ସରକାରଙ୍କଠାରୁ ନିଜର ମାତୃଭୂମିକୁ ମୁକ୍ତ କରିବା ନିମନ୍ତେ ଭାରତର ଜନସାଧାରଣ 'କର ବା ମର' ସ୍ଥିତିକୁ ଚାଲି ଆସିଥାନ୍ତି । ମାଉଣ୍ଟ୍‌ବେଟେନ ଅନୁଭବ କରିସାରିଥିଲେ ଭାରତରେ ବ୍ରିଟିଶ୍ ଶାସନ ଆଉ ବେଶୀ ଦିନ ନୁହେଁ । ସେ ବିଲାତ ସରକାରଙ୍କୁ ଜଣାଇ ଦେଇଥିଲେ, କଂଗ୍ରେସର ମୁଖ୍ୟ ନେତୃମଣ୍ଡଳୀ ଦେଶ ବିଭାଜନ ନିମନ୍ତେ ରାଜି ହୋଇସାରିଛନ୍ତି ।

ଭାରତକୁ ସ୍ୱାଧୀନତା ଦେବା ନିମନ୍ତେ ନିଜେ ଭାଇସ୍‌ରାୟ ଲର୍ଡ଼ ମାଉଣ୍ଟ୍‌ବେଟେନ୍ ଏକ ତାରିଖ ଧାର୍ଯ୍ୟ କରିସାରିଥିଲେ । ସେ ଜାଣିଥିଲେ ଅଗଷ୍ଟ ପନ୍ଦର ତାଙ୍କ ପାଇଁ ଏକ ଶୁଭ ଦିବସ । ସେ ଭାଇସ୍‌ରାୟ ହୋଇ ଭାରତକୁ ଆସିବା ପୂର୍ବରୁ ଇଂଲଣ୍ଡର ନୌବାହିନୀର ରିଏର୍ ଆଡ୍‌ମିରାଲ୍ ଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସେ ଦକ୍ଷିଣ-ପୂର୍ବ ଏସିଆରେ ସେନାପତି ରୂପେ ମିତ୍ରପକ୍ଷ ତରଫରୁ ଯୁଦ୍ଧ କରୁଥିଲେ । ୧୯୪୫ ମସିହା ଅଗଷ୍ଟ ମାସ ୭ ତାରିଖ ଓ ୯ ତାରିଖ ଦିନ ଆମେରିକା ଜାପାନର ହିରୋସୀମା ଓ ନାଗାସାକି ସହର ଉପରେ କ୍ରମାନ୍ୱୟରେ ଦୁଇଟି

ପରମାଣୁ ବୋମା ନିକ୍ଷେପ କରିଥିଲା । ପରମାଣୁ ବୋମାର ପ୍ରକୋପରେ ଜାପାନର ଅନେକ ଧନ ଜୀବନ ନଷ୍ଟହେବା ସଂଗେସଂଗେ ଜାପାନର ଶକ୍ତି ଧ୍ୱଂସ ପାଇଥିଲା । ଫଳରେ ଜାପାନ ବିନା ସର୍ତ୍ତରେ ମିତ୍ରବାହିନୀ ନିକଟରେ ଆତ୍ମସମର୍ପଣ କରିଥିଲା ଓ ଦ୍ୱିତୀୟ ବିଶ୍ୱଯୁଦ୍ଧର ପରିସମାପ୍ତି ଘଟିଥିଲା । ସେହି ଦିନଟି ଥିଲା ୧୯୪୫ ମସିହା ଅଗଷ୍ଟ ମାସ ୧୫ ତାରିଖ । ସେହିଦିନ ଇଂଲଣ୍ଡର ସର୍ବୋଚ୍ଚ ସେନାପତି ଲର୍ଡ଼ ମାଉଣ୍ଟବେଟେନ୍ ବର୍ମାର ଜଙ୍ଗଲରେ ନିଜର ବିଜୟ ଉଲ୍ଲାସ ମନେଇଥିଲେ । ତେଣୁ ଲର୍ଡ଼ ମାଉଣ୍ଟବେଟେନ୍ ଅଗଷ୍ଟ ପନ୍ଦର ତାରିଖକୁ ଏକ ଶୁଭ ଦିବସ ରୂପେ ଧରି ନେଇଥିଲେ ।

୧୯୪୭ ଜୁନ୍ ୨ ତାରିଖରେ ମାଉଣ୍ଟବ୍ୟାଟେନ ଭାରତ ବିଭାଜନର ଯୋଜନା ଭାରତୀୟ ସାତ ଜଣ ନେତାଙ୍କ ସମ୍ମୁଖରେ ଦାଖଲ କରିଥିଲେ । କଂଗ୍ରେସ ଦଳପକ୍ଷରୁ ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓ ଆଚାର୍ଯ୍ୟ ଜେ.ବି. କୃପାଳନୀ, ମୁସଲିମ୍ ଲିଗ୍ ପକ୍ଷରୁ ମହମଦ ଅଲ୍ଲୀ ଜିନ୍ନା, ଲିଆକତ ଅଲ୍ଲି ଖାଁ ଓ ଆବଦୁର ରବ୍ ନିସ୍ତାର ଓ ଶିଖ୍‌ମାନଙ୍କ ପକ୍ଷରୁ ସର୍ଦ୍ଦାର ବଳଦେବ ସିଂ ଏହି ସାତ ଜଣ ନେତା ଉପସ୍ଥିତ ଥିଲେ । ତହିଁ ପରଦିନ ଜୁନ୍ ୩ ତାରିଖରେ ସେହି ସାତ ଜଣ ନେତା ଯୋଜନାର ଶାସନଗତ ଫଳାଫଳ ଉପରେ ଆଲୋଚନା କରିଥିଲେ । ମାଉଣ୍ଟବେଟେନ୍ ସେଦିନ ସନ୍ଧ୍ୟାରେ ମଧ ବେତାର ଭାଷଣରେ ତାଙ୍କର ଯୋଜନା ଜଣାଇ ଦେଇଥିଲେ ଏବଂ ଠିକ୍ ପରଦିନ ଜୁନ୍ ୪ ତାରିଖରେ ୧୯୪୭ ଅଗଷ୍ଟ ୧୫ରେ ଭାରତ ସ୍ୱାଧୀନତା ଲାଭ କରିବା କଥା ଘୋଷଣା କରିଥିଲେ ।

ଭାରତର ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଇଂରେଜ ସରକାରଙ୍କର ଇଚ୍ଛାକୁ ଗଣମାଧ୍ୟମରେ ପ୍ରକାଶ କରିବା ନିମନ୍ତେ ଲର୍ଡ଼ ମାଉଣ୍ଟବେଟେନ୍ ୧୯୪୭ ମସିହା ଜୁନ୍ ମାସ ତିନି ତାରିଖରେ ଏକ ସାମ୍ବାଦିକ ସମ୍ମିଳନୀ ଡାକିଥିଲେ । ଦେଶ ଓ ଦେଶ ବାହାରୁ ଅନେକ ସାମ୍ବାଦିକ ଉକ୍ତ ସମ୍ମିଳନୀରେ ଉପସ୍ଥିତ ଥିଲେ । ସାମ୍ବାଦିକମାନଙ୍କର ବିଭିନ୍ନ ପ୍ରଶ୍ନର ଉତ୍ତର ଭାଇସ୍‌ରାୟ ଦେଇ ଚାଲିଥିଲେ । ହଠାତ୍ ଜଣେ ଭାରତୀୟ ସାମ୍ବାଦିକ ଭାଇସ୍‌ରାୟଙ୍କୁ ପଚାରିଥିଲେ । ସାର୍ ! ଭାରତର ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଆପଣ କୌଣସି ଏକ ତାରିଖ ସ୍ଥିର କରିଛନ୍ତି କି ? ଲର୍ଡ଼ ମାଉଣ୍ଟବେଟେନ୍‌ଙ୍କ ଉତ୍ତର ଥିଲା ହଁ, ପୁନଶ୍ଚ ସେହି ସାମ୍ବାଦିକଙ୍କର ପ୍ରଶ୍ନ ଥିଲା, ତେବେ କେଉଁ ତାରିଖ ସାର୍ ? ସାମ୍ବାଦିକଙ୍କର ଉକ୍ତ ପ୍ରଶ୍ନ ଯୋଗୁଁ ସେହିଦିନ ସେହିଠାରେ ହିଁ ଭାରତର ସ୍ୱାଧୀନତାର ତାରିଖ ଘୋଷଣା ହୋଇଯାଇଥିଲା । ଲର୍ଡ଼ ମାଉଣ୍ଟବେଟେନ୍ ଦୃଢ଼ ସ୍ୱରରେ କହିଥିଲେ ସେହି ଦିବସ ଆସନ୍ତା ଅଗଷ୍ଟ ୧୫ ତାରିଖ । ଭାଇସ୍‌ରାୟଙ୍କର ଉକ୍ତି ଶୁଣି ସେଦିନର ସାମ୍ବାଦିକ ସମ୍ମିଳନୀରେ ଉପସ୍ଥିତ ସମସ୍ତ ବ୍ୟକ୍ତି ହତଚକିତ ହୋଇଯାଇଥିଲେ । ଏତେ ଶୀଘ୍ର ଯେ ସ୍ୱାଧୀନତା ମିଳିଯିବ ବୋଲି କେହି ଆଶା କରିନଥିଲେ । ଯଦିଓ ବ୍ରିଟିଶ୍ ସରକାର ଭାରତୀୟଙ୍କୁ ଏତେଶୀଘ୍ର ଭାରତର ଶାସନଭାର ଦେବାକୁ ପ୍ରସ୍ତୁତ ହୋଇନଥିଲା । ମାଉଣ୍ଟବେଟେନ୍‌ଙ୍କର ନିଷ୍ପତ୍ତିରେ ବିଲାତ ସରକାର ୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖରେ ଭାରତକୁ ସ୍ୱାଧୀନତା ପ୍ରଦାନ କରିଥିଲେ ।

ତେଣୁ ଭାରତର ସ୍ୱାଧୀନତା ଦିବସ ଅଗଷ୍ଟ ପନ୍ଦର ଲର୍ଡ଼ ମାଉଣ୍ଟବେଟେନ୍‌ଙ୍କର ମାନସ ସନ୍ତାନ କହିଲେ ଅତ୍ୟୁକ୍ତି ହେବନାହିଁ । ସେ ନିଜେ ହିଁ ଥିଲେ ଅଗଷ୍ଟ ପନ୍ଦରର ସ୍ରଷ୍ଟା । ସେହିବର୍ଷ ଅର୍ଥାତ୍ ୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖରେ ଆମର ଭାରତବର୍ଷ ପରାଧୀନତାରୁ ମୁକ୍ତ ହୋଇ ସ୍ୱାଧୀନତାର ସ୍ୱାଦ ଚାଖିଥିଲା । ସେହିଦିନଠାରୁ ପ୍ରତିବର୍ଷ ଅଗଷ୍ଟ ମାସ ୧୫ ତାରିଖକୁ ଭାରତବର୍ଷର ନରନାରୀ ସ୍ୱାଧୀନତା ଦିବସ ରୂପେ ପାଳନ କରିଆସୁଛନ୍ତି ।

କ୍ୱାଟର୍ ନଂ-୪/୨୩
ଓଡ଼ିଶା ସରକାରୀ ମୁଦ୍ରଣାଳୟ
ଅଫିସର୍ସ କଲୋନୀ
କଟକ